

# ଦୁର୍ଗତିନାଶିନୀ ମା' ଦୁର୍ଗା

ରବୀନ୍ଦ୍ର କୁମାର ବେହୁରିଆ

**ବା**ର ମାସରେ ଯେଉଁଠି ତେର ପୂଜା ହୁଏ, ସେ ରାଜ୍ୟ ଆମ ଓଡ଼ିଶା । ବାର ମାସର ତେର ପର୍ବ ଓଡ଼ିଶାର ଜାତି, ଐତିହ୍ୟ, ପରମ୍ପରା ଓ ସଂସ୍କୃତିର ଛାୟାଚିତ୍ର ବହନ କରି ସାରା ଭାରତରେ କାହିଁକି, ଆନ୍ତର୍ଜାତିକ କ୍ଷେତ୍ରରେ ତା'ର ମୌଳିକତା ଜାହିର କରିଛି । ଓଡ଼ିଶାର ପର୍ବପର୍ବାଣି ମଧ୍ୟରୁ ଶାରଦୀୟ ଦୁର୍ଗୋତ୍ସବ ଅନ୍ୟତମ ।

ଭାରତୀୟ ଶକ୍ତି ଉପାସନାର ପରମ୍ପରାରେ ବିଭିନ୍ନ ଦେବୀପୂଜା ସ୍ୱୀକୃତ ହୋଇଥିଲେ ହେଁ ସର୍ବତୋଭାବେ ଦୁର୍ଗାପୂଜାର ସ୍ୱାତନ୍ତ୍ର୍ୟ ଅନୁଭୂତ ହୁଏ । ତୈତ୍ତିରୀୟ ଆରଣକ୍ୟରେ ବର୍ଣ୍ଣିତ ଦୁର୍ଗା ଗାୟତ୍ରୀରୁ ଦୁର୍ଗା ନାମରେ ସର୍ବପ୍ରଥମ ଉଲ୍ଲେଖ ଦୃଷ୍ଟିଗତ ହୁଏ । ଅଧିକନ୍ତୁ ସେଥିରେ ଦୁର୍ଗାଙ୍କୁ ତପଃ ପ୍ରଜ୍ୱଳିତ ରୂପା ଶକ୍ତି ରୂପେ ବର୍ଣ୍ଣନା କରାଯାଇ କୁହାଯାଇଛି -

'ତାମଗ୍ନିବର୍ଣ୍ଣାଂ ତପସା ଜ୍ୱଳନ୍ତାଂ<br>ବୈରୋଚନାଂ କର୍ମଫଳେଷୁ ଜୁଷ୍ଟାମ୍ ।<br>ଦୁର୍ଗା ଦେବୀଂ ଶରଣମହଂ ପ୍ରପଦ୍ୟେ<br>ସୁତରସି ତରସେ ନମଃ ।'

ଦୁର୍ଗା ଶବ୍ଦର ବ୍ୟୁତ୍ପତ୍ତି ପୁରାଣ ଶାସ୍ତ୍ରମାନଙ୍କରେ ବିଭିନ୍ନ ଅର୍ଥରେ ଅବତାରଣା କରାଯାଇଛି । ଶକ୍ତି ସ୍ୱରୂପିଣୀ ତଥା ଶକ୍ତିର ଅଧିଷ୍ଠାତ୍ରୀ ମା' ଦୁର୍ଗାଙ୍କ ଉଦ୍ଦେଶ୍ୟରେ କୁହାଯାଇଛି ଯେ- 'ଯା ଦେବୀ ସର୍ବଭୂତେଷୁ ଶକ୍ତି ରୂପେଣ ସଂସ୍ଥିତା ।' ମହାଭାରତର ବିରାଟ ପର୍ବରେ ଦେବୀଙ୍କୁ ଦୁର୍ଗତିନାଶିନୀ ରୂପେ ଅବତାରଣା କରାଯାଇଛି ।

'ଦୁର୍ଗାତ୍ ତାରୟସେ ଦୁର୍ଗେ ତସ୍ମାତ୍ ଦୁର୍ଗାସ୍ମୃତା ଜନୈଃ ।'

ସ୍କନ୍ଦ ପୁରାଣରେ ଉଲ୍ଲେଖ ଅଛି ଯେ, ଦୁର୍ଗାସୁରର ନିଧନ ପରେ ଦେବୀ ନିଜର ଦୁର୍ଗା ନାମକରଣର ତାତ୍ପର୍ଯ୍ୟ ବ୍ୟାଖ୍ୟାନ କରି କହିଛନ୍ତି -

ଅହ୍ୟ ପ୍ରଭୃତି ମେ ନାମ ଦୁର୍ଗେତି ଖ୍ୟାତିମେଷ୍ୟତି ।<br>ଦୁର୍ଗଦୈତସ୍ୟ ସମରେ ପାତନାବତି ଦୁର୍ଗମାତ୍<br>ଯେ ମାଂ ଦୁର୍ଗାଂ ଶରଣାଃ ନ ତେଷାଂ ଦୁର୍ଗତିଃ କ୍ୱଚିତ୍ ।

ମାର୍କଣ୍ଡେୟ ପୁରାଣରେ ଦେବୀ ଚଣ୍ଡିକା ଭବିଷ୍ୟତରେ ଦୁର୍ଗମାସୁରକୁ ମାରି ଦୁର୍ଗା ନାମରେ ପୂଜିତ ହେବାର ପ୍ରତିଶ୍ରୁତି ଦେଇ କହିଛନ୍ତି -

'ତତ୍ରୈବ ଚ ବଧିଷ୍ୟାମି ଦୁର୍ଗମାଖ୍ୟଂ ମହାସୁରମ୍ ।<br>ଦୁର୍ଗାଦେବୀତି ବିଖ୍ୟାତଂ ତନ୍ମେନାମ ଭବିଷ୍ୟତି ॥'

ସେ ପୁଣି ସର୍ବଭୂତରେ ମାତୃ, ଦୟା, କ୍ଷମା, ଶାନ୍ତ, ମୁକ୍ତି, ବିଦ୍ୟା, ଅବିଦ୍ୟା, ପରା ଓ ଅପରା ଇତ୍ୟାଦି ସର୍ବ ରୂପରେ ପର୍ଯ୍ୟବସିତା । ସେ ପ୍ରକୃତ ସ୍ୱରୂପିଣୀ, ସର୍ବମନ୍ତ୍ରରେ ଜନନୀ, ସର୍ବଜ୍ଞାନର ଜ୍ଞାନ, ସର୍ବଶୂନ୍ୟର ସାକ୍ଷୀ । ତାଙ୍କ ସ୍ଥିତିବିନା ପୁରୁଷ ଅଚଳ ହୋଇଯାଏ । ଶିବ ଶବରେ ପରିଣତ ହୁଅନ୍ତି । ଏଣୁ ପୁରୁଷ ଓ ପ୍ରକୃତି ପରି, ଶିବ ଓ ଶକ୍ତି ଏକାନ୍ତଭାବେ ପରସ୍ପରର ପରିପୂରକ । ଶିବ ଶକ୍ତି ସଂଯୁକ୍ତ ହେଲେହେଁ, ଆ, ଉ ଏବଂ ମ ର ମିଶ୍ରଣରେ ଓଁକାର ଧ୍ୱନି ଉତ୍ପନ୍ନ ହୁଏ । ସେଇ ଧ୍ୱନିରୁ ପଞ୍ଚଭୂତ, ପଞ୍ଚେନ୍ଦ୍ରିୟ, ପଞ୍ଚତନ୍ମାତ୍ର ଏବଂ ପଞ୍ଚବର୍ଣ୍ଣର ସୃଷ୍ଟି ହୁଏ । ଶକ୍ତି ହିଁ ବ୍ରହ୍ମର ଅବ୍ୟକ୍ତ ରୂପକୁ ବ୍ୟକ୍ତ କରି ସଚରାଚର ବିଶ୍ୱକୁ ପ୍ରକାଶିତ କରେ । ଏଣୁ ଗୀତାରେ କୁହାଯାଇଛି -

'ମାୟାଧକ୍ଷେଣ ପ୍ରକୃତଃ ସୂୟତେ ସରୋଚରମ୍ ।'<br>(ଗୀତା-୧୦/୯)

ଶକ୍ତି ରୂପିଣୀ ମା' ଦୁର୍ଗା ଅସଂଖ୍ୟ ନାମରେ ନାମିତା ଓ ପୂଜିତା । ମା' ଦୁର୍ଗତିନାଶିନୀ, ସର୍ବଶକ୍ତି ପ୍ରଦାୟିନୀ ଓ ଧରାପୃଷ୍ଠରେ ବିଭିନ୍ନ ନାମରେ ପୂଜିତା ଓ ଆବିର୍ଭୂତା - ଦୁର୍ଗତିନାଶିନୀ ମା' ଦୁର୍ଗା, ଧନ ଅନ୍ନଦାୟିନୀ ମା' ଲକ୍ଷ୍ମୀ, ବିଦ୍ୟାଦାୟିନୀ ମା' ସରସ୍ୱତୀ, ଝଙ୍କଡ଼ବାସିନୀ ବାକ୍‌ଦେବୀ ମା' ଶାରଳା, ନୃମୁଣ୍ଡମାଳିନୀ ମା' କାଳୀ, ଚଣ୍ଡୀ, ମଙ୍ଗଳ ପ୍ରଦାୟିନୀ ମା' ମଙ୍ଗଳା, ସର୍ବତାରଣକାରିଣୀ ମା' ତାରିଣୀ, ଦେବୀ ବିରଜା, ମା' ଧାମରାଇ, ମା' ନାଆକାଣୀ, ମା' ବରୁଣେଇ, ମା' ସମଲେଇ, ମା' ଭଗବତୀ, କଟକ ଚଣ୍ଡୀ, ଉଗ୍ରତାରା, ଚର୍ଚ୍ଚିକା,

ନାରାୟଣୀ, ଯାଗୁଳେଇ, ଗୌରୀ, କାତ୍ୟାୟିନୀ ବା ଲକ୍ଷ୍ମୀ, ସରସ୍ୱତୀ, ପାର୍ବତୀ, ଉମା ଓ ଚଉଷଠି ଯୋଗିନୀ ପ୍ରଭୃତି ଅନେକ ବିଚିତ୍ର ନାମ ଓ ରୂପର ସମନ୍ୱୟ ହୋଇଛି ତାଙ୍କ ପାଖରେ । ସେ ବହୁ ରୂପା । ଅଦ୍ୱୈତ, ଦ୍ୱୈତ, ତ୍ରୈତ ଓ ଅନେକତ୍ୱ । ଅଦ୍ୱୈତ ବା ଐକ୍ୟ ରୂପରେ ସେ ପରମାଶକ୍ତି ସନାତନୀ । ଦୁର୍ଗା ବା ଭବାନୀ ହୋଇ ପରମେଶ୍ୱରଙ୍କ ଅନନ୍ତ ଲୀଳାକୁ ପରିପୂର୍ଣ୍ଣ କରିବାରେ ସେ ସଫଳ ହୋଇଯାନ୍ତି । ସେ ଏକାକ୍ଷର 'ହ୍ରୁଁ'କାର ବିଜ ସଂଭୂତା ଏବଂ 'ଓଁ'କାରର ସର୍ବମୟ କର୍ତ୍ତୀ । ସେ ଦ୍ୱୈତ ରୂପରେ ଦ୍ୱିବର୍ଣ୍ଣା ଏବଂ ଦ୍ୱୈତଗୁଣଯୁକ୍ତା । ସେ କାଳୀ ଏବଂ ସେ ହିଁ ଗୌରୀ । ନିର୍ମଳ ଶରୀରା, ଗୌରବର୍ଣ୍ଣ କାନିଯୁକ୍ତା ଜଗତଜନନୀ ଉମା, ଗୌରୀ, ପାର୍ବତୀ, ନାରାୟଣୀ ଭାବରେ ଜଗତର ପାଳନ କର୍ତ୍ତା ଏବଂ କାଳୀ ରୂପରେ କୃଷ୍ଣବର୍ଣ୍ଣ ଧାରଣ କରି ପ୍ରଳୟ ରଚନା କରନ୍ତି । ପୁଣ୍ୟାତ୍ମାମାନଙ୍କ ହୃଦୟରେ ଲକ୍ଷ୍ମୀ ରୂପେ, ପାପାତ୍ମାମାନଙ୍କ ହୃଦୟରେ ଅଲକ୍ଷ୍ମୀ ରୂପେ ବିରାଜମାନ କରନ୍ତି ଏବଂ ଶତ୍ରୁ ସମ୍ମୁଖରେ ଭୟଙ୍କର ରୂପ ହେବାବେଳେ ଭକ୍ତ ସମ୍ମୁଖରେ ବରଦା ରୂପେ ଦୃଶ୍ୟ ହୁଅନ୍ତି । ତ୍ରୈତ ଭାବରେ ମା' ତ୍ରିନୟନୀ ତ୍ର୍ୟମ୍ବକେ ତ୍ରିଶକ୍ତି ସଂପନ୍ନା । ସୃଜନକାଳରେ ସେ ମହାସରସ୍ୱତୀ, ପାଳନ କାଳରେ ମହାଲକ୍ଷ୍ମୀ ଓ ବିନାଶକାଳରେ ମହାକାଳୀ ଭାବେ ପ୍ରକଟିତ ହୁଅନ୍ତି । ସତ୍ତ୍ୱ, ରଜ, ତମ - ତ୍ରିଗୁଣ ବିକାଶ କରି, ସୃଷ୍ଟି-ସ୍ଥିତି-ପ୍ରଳୟର ରଚନା କରିଥାନ୍ତି ।

ଶାକ୍ତ ଉପନିଷଦରେ କୁହାଯାଇଛି - 'ଶକ୍ତି ହିଁ ପ୍ରକୃତି' ଓ ପୁରୁଷର ଜନନୀ ଓ ବ୍ରହ୍ମା ସ୍ୱୟଂ ଭଗବାନ କୃଷ୍ଣ, ମର୍ଯ୍ୟାଦା ପୁରୁଷ ପ୍ରଭୁ ରାମଚନ୍ଦ୍ର ଆଦ୍ୟାଶକ୍ତିଙ୍କୁ ଆରାଧନା କରୁଥିବା ପ୍ରମାଣ ପୁରାଣମାନଙ୍କରେ ବିଦ୍ୟମାନ । ପ୍ରଭୁ ଶ୍ରୀରାମଚନ୍ଦ୍ର ଦେବୀଙ୍କୁ ଜାଗ୍ରତ କରାଇ ୧୦୮ ନୀଳପଦ୍ମରେ ପୂଜା କରି ସଫଳ କାମ ହୋଇଥିବାରୁ ଏହା ଅକାଳବୋଧନ ପୂଜା ରୂପେ ପ୍ରସିଦ୍ଧ । ନାରଦଙ୍କ ପରାମର୍ଶରେ ରାମଚନ୍ଦ୍ର ଦେବୀଙ୍କୁ ବୋଧନ କରି କିଷ୍କିନ୍ଧ୍ୟା ପର୍ବତରେ ପ୍ରଥମେ ଆରାଧନା କରି ଅଷ୍ଟମୀ ତିଥିରେ ଦେବୀଙ୍କ ଦର୍ଶନ ଲାଭ କରିଥିଲେ । ଏହି ପବିତ୍ର ସ୍ମୃତିକୁ ଉଜ୍ଜୀବିତ କରି ରଖିବା ପାଇଁ ସମଗ୍ର ଭାରତରେ ଆଶ୍ୱିନ ଶୁକ୍ଳ ପ୍ରତିପଦଠାରୁ ନବମୀ ପର୍ଯ୍ୟନ୍ତ ନବରାତ୍ର ଦୁର୍ଗାପୂଜାର ପରମ୍ପରା ଅଦ୍ୟାବଧି ପ୍ରଚଳିତ ହୋଇଆସୁଅଛି ।

ସୃଜନକାଳରେ ସେ ମହାସରସ୍ୱତୀ, ପାଳନ କାଳରେ ମହାଲକ୍ଷ୍ମୀ ଓ ବିନାଶକାଳରେ ମହାକାଳୀ ଭାବେ ପ୍ରକଟିତ ହୁଅନ୍ତି । ସତ୍ତ୍ୱ, ରଜ, ତମ - ତ୍ରିଗୁଣ ବିକାଶ କରି, ସୃଷ୍ଟି-ସ୍ଥିତି-ପ୍ରଳୟର ରଚନା କରିଥାନ୍ତି ।

ସେ ଯୋଗମାୟା, ମହାମାୟା, ମହାକାଳୀ । ଦେବୀ ଦୁର୍ଗାଙ୍କ 'ମହିଷାସୁର ବଧ' ଆଖ୍ୟାନ ପୁରାଣରେ ଲିପିବଦ୍ଧ ହୋଇ ରହିଛି । ମାର୍କଣ୍ଡେୟ ପୁରାଣ ଅନ୍ତର୍ଗତ ଦେବୀ ମହାତ୍ମ୍ୟ ବର୍ଣ୍ଣନାନୁସାରେ ସୁପାର୍ଶ୍ୱ ଋଷିଙ୍କ ପୁତ୍ର ସିନ୍ଧୁଦ୍ୱୀପଙ୍କ ଔରସରୁ ଏବଂ ଅସୁରରାଜ ବିପ୍ରଚିତ୍ତିର କନ୍ୟା ମହିଷ୍ମତିର ଗର୍ଭରୁ ଜନ୍ମ ନେଇଥିଲା ଦୁର୍ଦ୍ଦାନ୍ତ ମହିଷାସୁର । ସମୟକ୍ରମେ ମହିଷାସୁର ଯୌବନରେ ପଦାର୍ପଣ କଲା । କଠୋର ତପସ୍ୟାପୂର୍ବକ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କୁ ସନ୍ତୁଷ୍ଟ କରି ଅଭୂତପୂର୍ବ ବର ଯାଚଞ୍ଜା କଲା ମହିଷାସୁର । ପରବର୍ତ୍ତୀ ପ୍ରଳୟ ପର୍ଯ୍ୟନ୍ତ ଅମର ରହିବାକୁ ନିଜର ଇଚ୍ଛା ଉପସ୍ଥାପନା କଲା ସେ । 'ତଥାସ୍ତୁ' କହି ବ୍ରହ୍ମା ବର ପ୍ରଦାନ କଲେ ସତ, ମାତ୍ର ତାଙ୍କ ମୁଖରେ ଈଷତ ହାସ୍ୟ ଆବିଷ୍କାର କରିବା ପରେ ସଂଶୟାବିଷ୍ଟ ହୋଇପଡ଼ିଲା ମହିଷାସୁର । ମୃଦୁହାସର କାରଣ ଜିଜ୍ଞାସା କରନ୍ତେ ମହାକବି ସାରଳା ଦାସଙ୍କ ଲେଖନୀରେ ବ୍ରହ୍ମା ଉତ୍ତର ଦେଲେ -

'କିନ୍ତୁ ମର୍ତ୍ତ୍ୟରେ ଜନ୍ମିଣ ଅମର କେ ନାହିଁ
ଦେବତା ବୋଇଲେ ମଧ୍ୟ ଅବଶ୍ୟ ମରଇ ।
ଏହିକଥା ଗୋଟି ତୁହି ରଖିଥାଅ ମନେ
ରମଣୀ ହସ୍ତରେ ବଧ ହୋଇବୁ ତୁ ଦିନେ ॥'
(ଚଣ୍ଡୀ ପୁରାଣ)

ଏକ ଅବଳା ନାରୀ ଯେ ତା'ର ମୃତ୍ୟୁର କାରଣ ହେବ, ସେଥିପ୍ରତି ଆଦୌ ଗୁରୁତ୍ୱ ନଦେଇ ସେ ପୁନଶ୍ଚ ବ୍ରହ୍ମାଙ୍କୁ ନିବେଦନ କଲା -

'ଯେବେ ସ୍ତିରୀ ହାତରେ ନିଧନ
ହୋଇବି ଚାହିଁଥିବି ତା' ସ୍ତନ ଯଉବନ ।'

ତପସ୍ୟାରେ ସିଦ୍ଧିଲାଭ ତଥା ବ୍ରହ୍ମାବରରେ ବଳୀୟାନ ହୋଇ ମହିଷାସୁର ତ୍ରିଭୁବନରେ ଉତ୍ପାତ ଆରମ୍ଭ କଲା । ସେ ଚଣ୍ଡ, ମୁଣ୍ଡ, ଅନ୍ଧକ, ଅସିଲୋମା, ଉଗ୍ରବୀର୍ଯ୍ୟ, ଉବାୟୁଧ, ଉଗ୍ରାସ୍ୟ, ଉଦଗ୍ର, କାଳମୋଚନ, ରକ୍ତବୀର୍ଯ୍ୟ, ଶୁମ୍ଭ, ନିଶୁମ୍ଭ, ଧୂମ୍ରଲୋଚନ ଓ ଅଗଣିତ ଆସୁରିକ ପ୍ରକୃତିର ସେନାପତିମାନଙ୍କ ସହାୟତାରେ ତ୍ରିପୁର ବିଜୟ ପାଇଁ ଯୁଦ୍ଧ ଅଭିଯାନ କଲା । ମହିଷାସୁର ବଧ ନିମନ୍ତେ ସଂକଳ୍ପବଦ୍ଧ ଦେବଗଣଙ୍କ ଶରୀରରୁ ଉଜ୍ଜ୍ୱଳ ତେଜ ନିର୍ଗତ ହୋଇ ଗଗନ ପବନ ପରିବ୍ୟାପ୍ତ ହେବାକୁ ଲାଗିଲା । ପୂର୍ବରୁ ଦେବଦେବ ମହାଦେବଙ୍କୁ ଦେଇଥିବା ପ୍ରତିଶ୍ରୁତି ରକ୍ଷା କରି ଦେବତାମାନଙ୍କ ସମ୍ମିଳିତ ଜ୍ୟୋତିପୁଞ୍ଜରୁ ଦେବୀ ଆତ୍ମପ୍ରକାଶ କଲେ । ମହାମାୟାଙ୍କ ନିତମ୍ବରେ ବୃହସ୍ପତି, ଜାନୁରେ ପ୍ରଜାପତି, ପାଦରେ ଅନନ୍ତବାସୁକୀ, ସ୍ତନ ଯୁଗଳରେ କାମଦେବ, କଟିରେ ମେଘମାଳା, ଲୋମାବଳୀରେ ନକ୍ଷତ୍ରପୁଞ୍ଜ, ଭୁଜରେ ଅଣଚାଶ ପବନ, ଓଷ୍ଠରେ କାର୍ତ୍ତିକେୟ, ଭ୍ରୁ-ଯୁଗଳରେ ପ୍ରଦୋଷ ଓ ପ୍ରତ୍ୟୁଷ ବିରାଜମାନ କରିବାରୁ ମହାଦେବୀ ବ୍ରହ୍ମାଙ୍କ ସଦୃଶ ଜ୍ଞାନୀ, କାମଦେବଙ୍କ ପରି ଭୁବନମୋହିନୀ, ବୃହସ୍ପତିଙ୍କ ପରି ବୁଦ୍ଧିମତୀ, ଇନ୍ଦ୍ରଙ୍କ ପରି ସ୍ୱାଭିମାନୀ, ଚନ୍ଦ୍ରଙ୍କ ସଦୃଶ ମହିମାଦୀପ୍ତା, ଆଦିତ୍ୟବତ୍ ତେଜୋଦୀପ୍ତା, ବସୁନ୍ଧରା ସଦୃଶ ସହନଶୀଳା, ବାୟୁ ସଦୃଶ ଚଞ୍ଚଳା ଓ ମେରୁ ସଦୃଶ ଅଚଳା ହେଲେ । ପରିଶେଷରେ

ଦେବୀଙ୍କ ବାହନ ସ୍ୱରୂପ ବ୍ୟବହାର ପାଇଁ ହିମାଚଳ ଯୋଗାଇ ଦେଲେ ପ୍ରବଳ ପରାକ୍ରାନ୍ତ ପଶୁ ରାଜ ସିଂହ । ଦେବଗଣଙ୍କ ପ୍ରଦତ୍ତ ଦିବ୍ୟବସ୍ତ୍ର ଭୂଷଣ ଅଳଙ୍କାର ତଥା ଦିବ୍ୟାୟୁଧ - ଦିବ୍ୟାସ୍ତ୍ର ଯୋଗରେ ଦେବୀ ହେଲେ ସ୍ୱୟଂ ସଂପୂର୍ଣ୍ଣା । ଦୁର୍ଦ୍ଦିନକାଳରେ ଆବିର୍ଭୂତା ଦେବୀଙ୍କୁ ଦୁର୍ଗା ନାମରେ ନାମିତ କଲେ ଦେବପତି ବ୍ରହ୍ମା । ମହିଷାସୁରକୁ ନିଧନ କରିବା ପାଇଁ ଦେବୀ ଶିବଙ୍କଠାରୁ ତ୍ରିଶୁଳ, ବିଷ୍ଣୁଙ୍କଠାରୁ ଚକ୍ର, ଅଗ୍ନି ଦେବତାଙ୍କଠାରୁ ଶକ୍ତି, ପବନଙ୍କଠାରୁ ବାୟବ୍ୟ ଅସ୍ତ୍ର, ସୂର୍ଯ୍ୟଙ୍କଠାରୁ ତେଜ, ଇନ୍ଦ୍ରଙ୍କଠାରୁ ବଜ୍ର, ଯମଙ୍କଠାରୁ ଦଣ୍ଡାସ୍ତ୍ର, କାଳ ଦେବତାଙ୍କଠାରୁ ଖଡ୍‌ଗ, ବିଶ୍ୱକର୍ମାଙ୍କଠାରୁ ପରଶୁ ଅସ୍ତ୍ର, ପ୍ରଜାପତିଙ୍କଠାରୁ ରୁଦ୍ରାକ୍ଷମାଳ, ବାରିଧିପତିଙ୍କଠାରୁ ଅମଳିନ ପଦ୍ମ, ଶହଶାକ୍ଷ ତ୍ରିପୁର ନିଦାବଳୀ ଘଣ୍ଟା, ଏମିତି ବିଭିନ୍ନ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ସେ ସିଂହବାହନରେ ବସି ଆସୁରିକ ପ୍ରବୃତ୍ତିର ଦୃଢ଼ ମୁକାବିଲା କରି, ବିନାଶ କରି ସଂସାରରେ ସତ୍ୟ, ଶାନ୍ତି, ଦୟା ଓ ଆନନ୍ଦ ପ୍ରତିଷ୍ଠା କରିଥିଲେ । ମହିଷାମର୍ଦ୍ଦିନୀଙ୍କ ସଫଳତାରେ ସମଗ୍ର ବିଶ୍ୱରେ ବିଜୟୋଲ୍ଲାସର ମହାପ୍ଲାବନ ସୃଷ୍ଟି ହେଲା । ଭକ୍ତି ନୈବେଦ୍ୟ ଦେଇ କୋଟି କୋଟି କଣ୍ଠରୁ ଝଙ୍କୃତ ହେଲା ।

'ସର୍ବ ମଙ୍ଗଳ ମାଙ୍ଗଲ୍ୟେ ଶିବ ସର୍ବାର୍ଥ ସାଧିକେ
ଶରଣେ ତ୍ର୍ୟମ୍ବିକେ ଗୌରୀ ନାରାୟଣୀ ନମସ୍ତୁତେ ।'

ଦେବ, ମାନବ ସମାଜର ସ୍ତୁତିରେ ସନ୍ତୁଷ୍ଟା ଦେବୀ ସମସ୍ତଙ୍କୁ ଶରଣ ଦେଇ କହିଲେ -

'ଇତଥଂ ଯଦାଯଦା ବାଧା ଦାନବୋତ୍ଥା ଭବିଷ୍ୟତି,
ତଦା ତଦା - ବତୀର୍ଯାହଂ କରିଷ୍ୟାମରିସଂକ୍ଷୟମ୍ ।'

ଅର୍ଥାତ୍ ବିଶ୍ୱରେ ଯେତେବେଳେ ମହାବାଧା ଉପଗତ ହୋଇ ଦାନବମାନଙ୍କର ପ୍ରାଦୁର୍ଭାବ ବୃଦ୍ଧି ପାଇବ ତତ୍କାଳରେ ମୁଁ ଅବତୀର୍ଣ୍ଣା ହୋଇ ଶତ୍ରୁ ସଂହାର ପୂର୍ବକ ଜଗତରେ ଶାନ୍ତି ପ୍ରତିଷ୍ଠା କରିବି ।

ଯାହାଙ୍କ ଶକ୍ତି ଓ ଗୁଣ ବର୍ଣ୍ଣନା କରିବାରେ ବ୍ରହ୍ମବୈବର୍ତ୍ତ ପୁରାଣର ପ୍ରକୃତି ଖଣ୍ଡ, ବିଷ୍ଣୁ ପୁରାଣର ଉମା ସଂହିତା, ବ୍ରହ୍ମାଣ୍ଡ ପୁରାଣର ଲଳିତୋପାକ୍ଷାନ, ମାର୍କଣ୍ଡେୟ ପୁରାଣରେ ସପ୍ତସତୀ ଚଣ୍ଡୀ, ଦେବୀ ଭାଗବତ, ଚଣ୍ଡୀ ପୁରାଣ, ଭଗବତ ଗୀତା ଇତ୍ୟାଦି ଅସମର୍ଥ, ସେ ହିଁ-

'ତେଜଃ ସ୍ୱରୂପା ପରମା, ଭକ୍ତନା ଗ୍ରହ ବିଗ୍ରହା
ସର୍ବସ୍ୱରୂପା ସର୍ବେଶା ସର୍ବଧାରା ପରାପ୍ରା
ସର୍ବଜୀବ ସ୍ୱରୂପାଚ ସର୍ବପୂଜ୍ୟା ନିରାଶ୍ରୟା
ସର୍ବଜ୍ଞା ସର୍ବତୋ ଭଦ୍ରା ମଙ୍ଗଳ ମଙ୍ଗଳା ।'

(ବ୍ରହ୍ମ ବୈବର୍ତ୍ତ ପୁରାଣ)

ମୃଣ୍ମୟୀ ମୂର୍ତ୍ତିରେ ଦିବ୍ୟ ଅନୁଭବରେ ଦେବୀ ବିଦ୍ୟମାନ । ସେହି ସାକାର ରୂପକୁ ମନ ମଧ୍ୟରେ ଆନନ୍ଦ ଯୋଗରେ, ତପସ୍ୟାରେ ଦର୍ଶନ କରିହୁଏ । ପ୍ରକୃତିର ସତ୍ୱ, ରଜୋ ଓ ତମୋ ଗୁଣାଶ୍ରୟୀ ହେଉଛନ୍ତି ମହା ସରସ୍ୱତୀ, ମହାଲକ୍ଷ୍ମୀ ଓ ମହାକାଳୀ, ପରମାତ୍ମା ବିଶ୍ୱବ୍ରହ୍ମାଣ୍ଡ ସୃଷ୍ଟି କରି ପୂର୍ବରୁ ସ୍ୱୀୟ ଇଚ୍ଛାନୁସାରେ ଏକ ଶକ୍ତି ସୃଷ୍ଟି କରି ତତ୍‌ସହ କ୍ରୀୟାଶୀଳ ହୋଇ ଥିଲେ । ଦେବତାମାନଙ୍କର ଅଗ୍ରପୂଜ୍ୟ ଶ୍ରୀଗଣେଶଙ୍କ ଜନ୍ମତିଥି ଗଣେଶ ଚତୁର୍ଥୀଠାରୁ ବାର୍ଷିକ ମୃଣ୍ମୟ ମୂର୍ତ୍ତିର ପୂଜା ପରମ୍ପରା ଶୁଭାରମ୍ଭ ହୋଇଥାଏ । ଓଡ଼ିଶାର ପ୍ରତ୍ୟେକ କୋଣରେ ବିଭିନ୍ନ ନାମରେ ମା' ଆଦ୍ୟାଶକ୍ତି ପୀଠ ଦେବୀ ଭାବେ ପୂଜା ପାଉଛନ୍ତି । ତଥାପି ଭକ୍ତ ମା'ଙ୍କୁ ଆବାହନ କରି ଶରତ ଅବକାଶରେ ବିଭିନ୍ନ ପୂଜା ମଣ୍ଡପରେ ମୃଣ୍ମୟୀ ମୂର୍ତ୍ତି କରି ପୂଜା କରାଯାଏ । ତେଣୁ ଦେବୀ ଦୁର୍ଗା ଏହି ଦିବ୍ୟ ମୂର୍ତ୍ତି ଧରାଧାମରେ ବିରାଜମାନ କରନ୍ତି । ଶ୍ରୀସପ୍ତଚଣ୍ଡୀରୁ ଜଣାଯାଏ ଯେ ଦୁର୍ଗା ବା ଶକ୍ତି ପ୍ରକୃତରେ ଯୁଦ୍ଧର ଦେବୀ । ଯେତେବେଳେ ଏ ଦେଶ, ଜାତି, ଦାନବ ରାକ୍ଷସ ସନ୍ତ୍ରାସଦ୍ୱାରା ନିପୀଡ଼ିତ ସେତେବେଳେ ଦେବୀ ରଣଚଣ୍ଡୀ ରୂପେ ଆବିର୍ଭୂତା ।

**ଶାରଦୀୟ ଦୁର୍ଗାପୂଜାରେ ଓଡ଼ିଶାର ବିଭିନ୍ନ ପୂଜାପୀଠମାନଙ୍କରେ ଆଶ୍ୱିନ ଶୁକ୍ଳ ଷଷ୍ଠୀଠାରୁ ଦଶମୀ ପର୍ଯ୍ୟନ୍ତ ମୃଣ୍ମୟୀ ଦେବୀଙ୍କଠାରେ ବିଲ୍ୱାଧିବାସ, ନବ ପତ୍ରିକା, ସନ୍ଧି, ଅପରାଜିତା ଓ କୁମାରୀ ପୂଜା ଆଦି ବିଶେଷ ପୂଜାନୁଷ୍ଠାନ କରାଯାଏ ।** ଆଶ୍ୱିନ ଶୁକ୍ଳ ଷଷ୍ଠୀର ରାତ୍ରିକାଳରେ ଦେବୀଙ୍କ ଅକାଳବୋଧନ ବା ଆମନ୍ତ୍ରଣାଧିବାସ ବିଲ୍ୱବୃକ୍ଷ ସମୀପରେ ସମ୍ପନ୍ନ ହୁଏ । ବିଲ୍ୱବୃକ୍ଷରେ ଦେବୀଙ୍କ ବୋଧନ କାଳରେ 'ଶ୍ରୀବୃକ୍ଷେ ବୋଧୟାମି ତ୍ୱାଂ ଯାବତ୍ ପୂଜାଂ କରୋମ୍ୟହମ୍', ଏହି ମନ୍ତ୍ରରେ ବିଲ୍ୱାଧିବାସ କାଳରେ ଦେବୀଙ୍କୁ ଆବାହନ କରାଯାଏ । ନବ ପତ୍ରିକା ପୂଜାରେ ନଅ ପ୍ରକାର ଉଦ୍ଭିଦ ମଧ୍ୟରେ ବିଲ୍ୱ ଶାଖା ଅନ୍ୟତମ । ଯୁଗଳ ବିଲ୍ୱଫଳ ନବ ପତ୍ରିକା ମଧ୍ୟରେ ସଂଯୁକ୍ତ କରି 'ଓଁ ବିଲ୍ୱାଧିଷ୍ଠାତ୍ର୍ୟୈ ଶିବାୟୈ ନମଃ - ଏହି ମନ୍ତ୍ରରେ ବିଲ୍ୱ ଶାଖାକୁ ପୂଜା କରାଯାଏ ।

ଦୁର୍ଗାପୂଜା ସହ ନବ ପତ୍ରିକାର ସଂଯୋଗ ପରବର୍ତ୍ତୀ କାଳରେ ହୋଇଅଛି ବୋଲି ପଣ୍ଡିତମାନେ ମତ ଦିଅନ୍ତି । କାଳିକା ପୁରାଣରେ ନବ ପତ୍ରିକା ପୂଜାର ପ୍ରଶସ୍ତ ବର୍ଣ୍ଣନା ରହିଛି । ନବ ପତ୍ରିକାର ଅର୍ଥ - କଦଳୀ, ସାରୁ, ହରିଦ୍ରା, ଜୟନ୍ତୀ, ବିଲ୍ୱ, ଡାଳିମ୍ବ, ଅଶୋକ, ମାନ ଓ ଧାନ୍ୟ ଆଦି ନଅଟି ଗଛକୁ ବୁଝାଏ । ସପତ୍ର ଶାଖାଯୁକ୍ତ ଏହି ନଅଗୋଟି ଗଛକୁ ଜୋଡ଼ା ବେଲ ସହ ଅପରାଜିତା ଲତାରେ ବାନ୍ଧି ଲାଲ୍ ଶାଢ଼ୀ ଦ୍ୱାରା ଏକ ବଧୂ କଳ୍ପନାରେ ଆବୃତ କରି ପୂଜା କରିବାର ବିଧି ରହିଛି । ନଅଟି ଉଦ୍ଭିଦର ଏକତ୍ର ସହାବସ୍ଥାନ ନବ ପତ୍ରିକାକୁ ନବ ଦୁର୍ଗା ଭାବରେ - 'ଓଁ ନବପତ୍ରିକା ବାସିନ୍ୟୈ ନବ ଦୁର୍ଗାୟୈ ନମଃ' - ଏହି ମନ୍ତ୍ରରେ ଆବାହନ ପୂର୍ବକ ପୂଜା କରାଯାଏ । ଦୁର୍ଗାପୂଜା ସହ ନବ ପତ୍ରିକାର ସଂପର୍କରୁ ପଣ୍ଡିତଗଣ ମତ ଦିଅନ୍ତି ଯେ ନବ ପତ୍ରିକା ପୂଜାଦ୍ୱାରା ଶସ୍ୟଦେବୀ ପୃଥିବୀ ମାତାଙ୍କୁ ପୂଜା କରିବାର ଏଥିରେ ଏକ ପ୍ରଚ୍ଛନ୍ନ ତତ୍ତ୍ୱ ନିହିତ ଅଛି ।

ନବ ପତ୍ରିକା ପୂଜା ପରି ସନ୍ଧିପୂଜା ଦୁର୍ଗାପୂଜାର ଏକ ବିଶେଷ ଅନୁଷ୍ଠାନ । **ଅଷ୍ଟମୀ ଓ ନବମୀ ତିଥିରେ ସଂଯୋଗ କାଳରେ ଅନୁଷ୍ଠିତ**

**ବିଶେଷ ପୂଜା ସନ୍ଧିପୂଜା ନାମରେ ଖ୍ୟାତ । ଲୌକିକ ବିଶ୍ୱାସ ଅଛି ଯେ ଏହି ସମୟରେ ଦେବୀଙ୍କ ସାକ୍ଷାତ୍ ଆବିର୍ଭାବ ହୁଏ ।** ବୃହଦ୍ଧର୍ମ ପୁରାଣରେ ବର୍ଣ୍ଣିତ ଅଛି ରାବଣ ବଧ ନିମନ୍ତେ ବ୍ରହ୍ମା ସନ୍ଧି ପୂଜା କରି ଆଶ୍ୱିନ କୃଷ୍ଣ ନବମୀରେ ଦେବୀଙ୍କୁ ଆବାହନ କରିଥିଲେ । ଏହି କାରଣରୁ ସନ୍ଧିପୂଜାର ସ୍ୱାତନ୍ତ୍ର୍ୟ ରହିଅଛି ।

କୁମାରୀ ପୂଜା ଦୁର୍ଗାପୂଜାର ଏକ ବୈଶିଷ୍ଟ୍ୟ ପୂର୍ଣ୍ଣ ଦିଗ । ସପ୍ତମୀ, ଅଷ୍ଟମୀ ଓ ନବମୀ ପୂଜା ଶେଷରେ କୁମାରୀ କନ୍ୟାଙ୍କୁ ନବ ବସ୍ତ୍ର ପରିଧାନ କରାଇ ଦେବୀ ଜ୍ଞାନରେ ପୂଜା କରିବାର ରୀତି ପ୍ରଚଳିତ ଅଛି । ବୃହଦ୍ଧର୍ମ ପୁରାଣରେ କୁହାଯାଇଛି ଯେ ଦେବତାମାନଙ୍କ ସ୍ତୁତିରେ ସନ୍ତୁଷ୍ଟ ହୋଇ ଦୁର୍ଗା ଦେବଗଣଙ୍କ ସମ୍ମୁଖରେ କନ୍ୟା ରୂପରେ ଆବିର୍ଭୂତ ହୋଇଥିଲେ । ଦେବୀ ପୁରାଣରେ ନିର୍ଦ୍ଦେଶ ଅଛି ଯେ ଦେବୀଙ୍କ ପୂଜା ଶେଷରେ କୁମାରୀମାନଙ୍କୁ ଯଥୋକ୍ତ ପୂଜାକରି ସୁମିଷ୍ଟ ଭୋଜନଦ୍ୱାରା ଆପ୍ୟାୟିତ କରାଇବା ଉଚିତ୍ । ଦୁର୍ଗାପୂଜା ସହ କୁମାରୀ ପୂଜାର ସଂପର୍କ ତାନ୍ତ୍ରିକ ସାଧନାର ନିଚ୍ଛକ ପ୍ରତିଫଳନ ଅଟେ । ପ୍ରଥମେ ପଶ୍ଚିମ ବଙ୍ଗରେ କୁମାରୀ ପୂଜାର ସୂତ୍ର ଘଟି ପରବର୍ତ୍ତୀ କାଳରେ ଅନ୍ୟତ୍ର ଏହାର ପ୍ରସାର ଘଟିଅଛି ବୋଲି ମନେହୁଏ ।

ତନ୍ତ୍ର ମତବାଦର ଛାୟା ରୂପେ କୁମାରୀ ପୂଜା ପରି ଅପରାଜିତା ପୂଜା ଦୁର୍ଗାପୂଜାର ଅନ୍ୟ ଏକ ତାତ୍ପର୍ଯ୍ୟପୂର୍ଣ୍ଣ ଦିଗ ଅଟେ । ଦୁର୍ଗାପୂଜାର ଦଶମୀ ଦିନ ଘଟ ବିସର୍ଜନ ପରେ ଅପରାଜିତା ପୂଜାବିଧି ପ୍ରଚଳିତ । ଚତୁର୍ଭୁଜା ଅପରାଜିତା ବୈଷ୍ଣବୀ ଶକ୍ତି ଲକ୍ଷ୍ମୀ ଓ ଶିବଶକ୍ତି ଶିବାନୀଙ୍କ ମିଶ୍ରିତ ଶକ୍ତି ରୂପେ କଳ୍ପିତା । ଦୁର୍ଗାଙ୍କ ନାମାନ୍ତର ମଧ୍ୟ ଅପରାଜିତା । କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ ଦୁର୍ଗେ ନିବେଶିତା ଦେବୀ ଅପରାଜିତା ନାମରେ ପୂଜା ହେବା ବିଷୟ ବର୍ଣ୍ଣିତ ହୋଇଅଛି । ସମ୍ଭବତଃ ନାମ ସାଦୃଶ୍ୟ ହେତୁ ଏହି ଦଶମୀରେ ଅପରାଜିତା ପୁଷ୍ପ ସମର୍ପଣ ପୂର୍ବକ ଅପରାଜିତା ସ୍ତୋତ୍ର ପାଠ କରାଯିବାର ବିଧି ଅଛି ।

ଦୁର୍ଗୋତ୍ସବ ଦଶହରା ପର୍ବ ରୂପେ ସମଗ୍ର ଭାରତରେ ପ୍ରସିଦ୍ଧି ଲାଭ କରିଅଛି । ଆଶ୍ୱିନ ଶୁକ୍ଳ ଶ୍ରବଣାଯୁକ୍ତ ଦଶମୀ ବିଜୟା ଦଶମୀ ନାମରେ ଖ୍ୟାତ ଅଟେ । ଏ ସଂପର୍କୀୟ ଶାସ୍ତ୍ରୀୟ ପ୍ରମାଣ ପ୍ରଣିଧାନଯୋଗ୍ୟ ।

'ଆଶ୍ୱିନ ଦଶମୀଯୁକ୍ତା ଶ୍ରବଣେନ ସମନ୍ୱିତା
ବିଜୟା ଦଶମୀ ପ୍ରୋକ୍ତା ସାଚୈବାତ୍ୟନତ ଦୁର୍ଲଭା ।'

ଦୁର୍ଗାପୂଜା ଏକ ସାର୍ବଜନୀନ ଉତ୍ସବ । ଶାନ୍ତି, ମୈତ୍ରୀ, ଓ ସଂପ୍ରୀତିର ପ୍ରତୀକ ଏ ଶାରଦୀୟ ଉତ୍ସବ । ବୈଦିକ, ପୌରାଣିକ ଓ ଲୌକିକ ଆଦି ରୀତି ପଦ୍ଧତି ସମ୍ମିଳିତ ହୋଇ ଦୁର୍ଗାପୂଜାକୁ ସାର୍ବଜନୀନ ଉତ୍ସବରେ ପରିଣତ କରିଅଛି ।

କିନ୍ତୁ ସମୟ ଚକ୍ରରେ ଆଜି ଏକ ପ୍ରକାର ସ୍ଥାଣୁତ୍ୱ ଓ ଅବକ୍ଷୟ ଏହି ଐତିହାସିକ ଐକ୍ୟରେ ଘୋର ଅନ୍ତରାୟ ସୃଷ୍ଟି କରିଛି । ଆଜି ସ୍ୱାର୍ଥ, ଦ୍ୱେଷ, ଶୋଷଣ ଓ ଲାଭଖୋର ମନୋବୃତ୍ତିଦ୍ୱାରା ସମାଜ କଳୁଷିତ ହୋଇପଡ଼ିଛି । ପୂଜାପାର୍ବଣର ଅନ୍ତରାଳରେ ବିଦ୍ୟମାନ ଧର୍ମପ୍ରାଣତା ଆଜି ସୁଦୂର ପରାହତ । କେତେକ କ୍ଷେତ୍ରରେ ଗୋଷ୍ଠୀ କନ୍ଦଳ ଓ ପ୍ରତିଦ୍ୱନ୍ଦ୍ୱିତା କେତେକ ନିରୀହ ଲୋକଙ୍କ ନିର୍ମମ ହତ୍ୟାର କାରଣ ହୋଇ ପଡ଼ିଛି । ଦାରିଦ୍ର୍ୟ, ଧାର୍ମିକ ସଂଘର୍ଷ ଯୋଗୁଁ ସାମାଜିକ ବୈଷମ୍ୟ ସୃଷ୍ଟି ହେଉଥିବାରୁ ଦେଶର ପ୍ରଗତି ବାଧାପ୍ରାପ୍ତ ହେଉଛି । ରାଜନୈତିକ ଅସ୍ଥିରତା ଦେଶ ପ୍ରଗତିର ପରିପନ୍ଥୀ । ବିଚ୍ଛିନ୍ନତାବାଦ ଭାରତର ସାର୍ବଭୌମତ୍ୱ କ୍ଷେତ୍ରରେ ଅନ୍ୟ ଏକ ସମସ୍ୟାର ରୂପ ନେଇ ମୁଣ୍ଡ ଟେକିଛି । ସଂପ୍ରତି ଦେଶର ଆର୍ଥିକ ଦୁର୍ଗତି ସଂଗେସଂଗେ ଜାତୀୟ ଚରିତ୍ର ନଷ୍ଟ ହେଲାଣି ।

ଏ ରାଜ୍ୟକୁ ଅପସଂସ୍କୃତିରୁ ରକ୍ଷା କରିବା ପାଇଁ ସମୟ ଆସିଛି । ନିଜର ସଂସ୍କୃତି, ଐତିହ୍ୟ ଓ ପରମ୍ପରାର ପୁନରୁଦ୍ଧାରଦ୍ୱାରା ଏ ରାଜ୍ୟକୁ ସୁଫଳା ଶସ୍ୟଶ୍ୟାମଳା କରିବାକୁ ପଡ଼ିବ । ମାତୃ ସ୍ୱରୂପିଣୀ କରୁଣାମୟୀ ଜନନୀର ଆବାହନରେ ସମସ୍ତେ ଆଜି ବ୍ୟଗ୍ର । ଶକ୍ତି ରୂପିଣୀ ମାତା ଦୁର୍ଗା ଆମକୁ ଏହି ଶକ୍ତି ଦିଅନ୍ତୁ । ଏହି **ରାଜ୍ୟକୁ ପ୍ରଗତିର ଶୀର୍ଷ ସ୍ଥାନକୁ ନେବାକୁ ଆମ ଶରୀରରେ ଉତ୍ସାହ ଓ ମନରେ ସଂବିତ୍ ଦିଅନ୍ତୁ । କରୁଣାମୟୀ ମା' ସମସ୍ତ ଦୁର୍ଗତିରୁ ଏ ଜାତିକୁ, ଏ ଦେଶକୁ ରକ୍ଷା କରନ୍ତୁ ଏତିକି ପ୍ରାର୍ଥନା ।**

**ସହାୟକ ଗ୍ରନ୍ଥସୂଚୀ :**


୧. ପଙ୍କଜ ସାହୁ - ମହିଷାସୁର ଓ ମହିଷାମର୍ଦ୍ଦିନୀ : ଚିହ୍ନା ମୁହଁ, ଭଦ୍ରକ, ୨୦୦୪, ପୃ.୬-୮

୨. କୃପାସାଗର ସାହୁ - ସଂପାଦକୀୟ : ପ୍ରତିବେଶୀ, କଲିକତା, ୧୯୯୭

୩. ରଶ୍ମିରଞ୍ଜନ ମହାନ୍ତି - ପୁରାଣ ପ୍ରସିଦ୍ଧ ଦେବୀ ମା' ଦୁର୍ଗା : ସୁଶାସନ, ସଂଖ୍ୟା-୯, ଇସ୍ୟୁ-୪୮, ଅକ୍ଟୋବର ୭-୧୩, ୨୦୦୫

୪. ଜ୍ଞାନ ରଞ୍ଜନ ପତି - ଶକ୍ତି ପରମ୍ପରାରେ ଶାରଦୀୟ ଦୁର୍ଗୋତ୍ସବ : ଦିଗଶ୍ରୀ, ଯାଜପୁର, ୨୦୦୬, ପୃ.୧୦-୧୬

୫. ଚନ୍ଦ୍ରମଣି ସ୍ୱାଇଁ - ଏକୈବ ଶକ୍ତିଃ ଶତଧାବିଭକ୍ତା : ଅଦ୍ୱିତୀୟା, ଗଞ୍ଜାମ, ହିଞ୍ଜିଳିକାଟୁ, ତୃତୀୟ ସଂଖ୍ୟା, ଅକ୍ଟୋବର-ଡିସେମ୍ବର, ୨୦୦୬, ପୃ.୪୭-୪୮



ଗ୍ରନ୍ଥାଗାର ଓ ସୂଚନା ବିଜ୍ଞାନ ବିଭାଗ
ଚାନ୍ଦବାଲି କଲେଜ, ଜି. ଭଦ୍ରକ-୭୫୬୧୩୩

# ଶାକ୍ତ ମତରେ ମହାବିଦ୍ୟା ଉପାସନା

ଡକ୍ଟର ତ୍ରିନାଥ ପଟ୍ଟନାୟକ



**ଭା**ରତୀୟ ସୃଷ୍ଟି ବିଦ୍ୟା ତଥା ବାଙ୍ମୟରେ 'ବ୍ରହ୍ମ'ର ସ୍ଥାନ ସର୍ବୋପରି ଅଟେ । ବ୍ରହ୍ମ ସର୍ବବ୍ୟାପୀ ଓ ସର୍ବଶକ୍ତିମାନ । ସଂପୂର୍ଣ୍ଣ ସୃଷ୍ଟି ବ୍ରହ୍ମ ମଧ୍ୟରେ ସ୍ଥିତ ଓ ବ୍ରହ୍ମ ସର୍ବତ୍ର ବିଦ୍ୟମାନ । ତନ୍ତ୍ର ସାହିତ୍ୟରେ ବ୍ରହ୍ମକୁ 'ବିଦ୍ୟା' ବୋଲି କୁହାଯାଏ । ଶାକ୍ତ ସଂପ୍ରଦାୟରେ ଯେଉଁ ଦଶ ପ୍ରଧାନ ରୂପକୁ ଉପାସନା କରାଯାଏ ତାହା ହେଉଛି ବ୍ରହ୍ମ ଉପାସନା । ସେହି ଉପାସନାକୁ 'ମହାବିଦ୍ୟା' ଉପାସନା ବୋଲି କୁହାଯାଏ । ବ୍ରହ୍ମ ବିଦ୍ୟାର ଦଶ ପ୍ରଧାନ ରୂପ ଦଶ ମହାବିଦ୍ୟା ରୂପେ ପରିଚିତ ।

ଦଶମହାବିଦ୍ୟାର କ୍ରମ ହେଉଛି, ୧-କାଳୀ, ୨-ତାରା, ୩-ଷୋଡ଼ଶୀ, ୪-ଭୁବନେଶ୍ୱରୀ, ୫-ଭୈରବୀ, ୬-ଛିନ୍ନମସ୍ତା, ୭-ଧୂମାବତୀ, ୮-ବଗଳାମୁଖୀ, ୯-ମାତଙ୍ଗୀ, ୧୦-କମଳା ।

**ଶ୍ରୀ ଶ୍ରୀ କାଳୀ**

ଦଶ ମହାବିଦ୍ୟାମାନଙ୍କ ମଧ୍ୟରେ ଶ୍ରୀକାଳୀ ହେଉଛନ୍ତି ପ୍ରଥମ ମହାବିଦ୍ୟା । ଏହାଙ୍କୁ ବ୍ରହ୍ମଙ୍କର ଇଚ୍ଛା ଶକ୍ତି ରୂପେ ଗ୍ରହଣ କରାଯାଏ । ସେ ପ୍ରଥମାଶକ୍ତି ଓ ଆଦିଶକ୍ତି । ସେ ସର୍ବପ୍ରଥମେ ମହାକାଳକୁ କଳନା କରିଥିବା ଯୋଗୁଁ ତାଙ୍କୁ 'କାଳୀ' କୁହାଯାଏ । ଅନ୍ୟ ଶବ୍ଦରେ ବ୍ରହ୍ମର ନିତ୍ୟ କ୍ରିୟାଶକ୍ତି ରୂପା ପରା ଶକ୍ତିର ନାମ ହିଁ 'କାଳୀ' ଅଟେ । ଏଣୁ କୁହାଯାଇଛି ବର୍ହିଭାଗକୁ ଉନ୍ମୁଖ ହୋଇ ସୁଦ୍ଧା ଏହି କ୍ରିୟାଶକ୍ତି ରୂପା କାଳୀ ଗୋଟିଏ ତତ୍ତ୍ୱର ଦୁଇଟି ନାମ ଅଟେ ।

**ଧ୍ୟାନ -**

'ଶବାରୂଢ଼ା ମହାଭୀମାଂ, ଘୋର-ଦ୍ରଂଷ୍ଟା ବର-ପ୍ରଦାମ
ହାସ୍ୟ-ଯୁକ୍ତାଂ ତ୍ରିନେତ୍ରାଂ ଚ, କପାଳ-କର୍ତ୍ତୃକା-କରାମ୍ ।
ମୁକ୍ତଂ-କେଶୀଂ ଲଳଜ୍ଜିହ୍ୱାଂ, ପିବନ୍ତୀଂ ରୁଧିରଂ ମୁହୁଃ
ଚତୁର୍ବାହୁ-ଯୁତାଂ ଦେବୀଂ ବରାଭୟ-କରାଂ ସ୍ମରେ ।'

**ଶ୍ରୀ ଶ୍ରୀ ତାରା**

ଦ୍ୱିତୀୟ ମହାବିଦ୍ୟା ହେଉଛନ୍ତି ଶ୍ରୀ ତାରା । ଏ ହେଉଛନ୍ତି ବ୍ରହ୍ମଙ୍କର ଜ୍ଞାନଶକ୍ତି । ନାରଦ ପଞ୍ଚରାତ୍ରରେ କୁହାଯାଇଛି ଦକ୍ଷ ଗୃହରେ ଯିଏ ସତୀ ନାମରେ ଜନ୍ମଲାଭ କରିଥିଲେ ସେ କେବଳ ବ୍ରହ୍ମତ୍ୱ । ଏକତ୍ୱ ପ୍ରଦାନକାରିଣୀ ହୋଇଥିବା ଯୋଗୁଁ ତାହାଙ୍କୁ 'ଏକଜଟା' ବୋଲି କୁହାଯାଏ । 'ତାରକ' (ମୋକ୍ଷକାରିଣୀ) ହୋଇଥିବା ଯୋଗୁଁ ତାହାଙ୍କୁ 'ତାରା' ବୋଲି କୁହାଯାଏ । ସାଧକକୁ ଅନାୟାସରେ ସେ ବାକ୍‌ଶକ୍ତି ପ୍ରଦାନ କରିଥାନ୍ତି । ସେଥିପାଇଁ ସେ 'ନୀଳ ସରସ୍ୱତୀ' । ଉଗ୍ର ହୋଇଥିବା ଯୋଗୁଁ ଉଗ୍ରତାରିଣୀ । ଭୟଙ୍କର ବିପତ୍ତିରୁ ରକ୍ଷା କରୁଥିବା ଯୋଗୁଁ 'ଉଗ୍ରତାରା' ନାମରେ ଖ୍ୟାତ ।

**ଧ୍ୟାନ-**

'ପ୍ରତ୍ୟଲୀଢ଼-ପଦାଂ ଘୋରାଂ, ମୁଣ୍ଡମାଳା-ବିଭୂଷିତାମ୍
ଖର୍ବା ଲମ୍ବୋଦରୀଂ ଭୀମାଂ, ବ୍ୟାଘ୍ର-ଚର୍ମାବୃତାଂକଟୌ ।
ନବଯୌବନ-ସମ୍ପନ୍ନ, ପଞ୍ଚ-ମୁଦ୍ର-ବିଭୂଷିତାମ୍
ଚତୁର୍ଭୁଜଂ ଲୋଲଜିହ୍ୱାଂ ମଲାଭୀମାଂ ବର ପ୍ରଦାମ୍ ।
ଖଡ୍ଗ-କର୍ତ୍ରି-ସମାଯୁକ୍ତ-ସବୋତର-ଭୁଜ-ଦ୍ୱୟାମ୍
କପାଳୋତ୍ପଳ-ସଂଯୁକ୍ତ-ସବ୍ୟ-ପାଣି-ଯୁଗାନ୍ୱିତାମ୍ ।
ପିଙ୍ଗୋଗ୍ରୈକ-ଜଟାଂ ଧାୟେନ୍ମୌଳା ବକ୍ଷୋଭ୍ୟ-ଭୂଷିତାମ୍
ବାଳାର୍କ-ମଣ୍ଡଳାକାର-ଲୋଚନ-ତ୍ରୟ-ଭୂଷିତାମ୍ ।
ଜ୍ୱଳବିତା-ମଧ୍ୟ-ଗତାଂ, ଘୋର ଦ୍ରଷ୍ଟଂ କରାଳିନୀମ୍
ସ୍ୱାବେଶ-ସ୍ମେର-ବଦନା, ରୂୟଲଙ୍କାର-ବିଭୂଷିତାଂ ।।'

**ଶ୍ରୀ ଶ୍ରୀ ଷୋଡ଼ଶୀ**

ତୃତୀୟ ମହାବିଦ୍ୟା ହେଉଛନ୍ତି ଶ୍ରୀ ଶ୍ରୀ ଷୋଡ଼ଶୀ । ସେ ବାଳା, ତ୍ରିପୁର ସୁନ୍ଦରୀ, ଲଳିତା, ଶ୍ରୀବିଦ୍ୟା ଆଦି ନାମରେ ପ୍ରସିଦ୍ଧ । ତ୍ରିପୁରା

ଦେବୀଙ୍କର ପରିଚୟ ଭିନ୍ନ ଭିନ୍ନ ପ୍ରକାର ଉଲ୍ଲେଖ ଅଛି । ଯଥା- ପରାଶକ୍ତିରୁ ପ୍ରକଟ ହୋଇ ତ୍ରିମୂର୍ତ୍ତିଙ୍କୁ ସୃଷ୍ଟି କରିଥିବା ଯୋଗୁଁ, ପରାଦେବୀଙ୍କର ତ୍ରୟିମୟୀ ହୋଇଥିବା ଯୋଗୁଁ, ପ୍ରଳୟ ପରେ ତ୍ରିଲୋକକିକୁ ପୁନଃ ପୂର୍ଣ୍ଣ କରି ଦେଇଥିବା ଯୋଗୁଁ - ସେ ତ୍ରିପୁରା ନାମରେ ପରିଚିତ ।

ପୂର୍ବକାଳରେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱରାଦି ଦେବଗଣ ତ୍ରିପୁରାଙ୍କର ଅର୍ଚ୍ଚନା କରିଥିଲେ । ଏଣୁ ଦେବଗଣ ସର୍ବଦା ତ୍ରିପୁରା ନାମରେ ସ୍ମରଣ କରନ୍ତି ।

**ଧ୍ୟାନ-**

ବାଳାର୍କାୟୁତ-ତେଜସଂତ୍ରି-ନୟନାଂ ରକ୍ତାମ୍ବରୋଲ୍ଲାସିନୀମ୍
ନାନାଳଂକୃତି-ରାଜମାନ-ବପୁଷଂ ବାଲୋଡୁରାଟ୍-ଶେଖରାମ୍ ।
ହସ୍ତୈରିକ୍ଷୁ-ଧନୁଃ ସ୍ୱଣିଂ ସୁମଶରଂ ପାଶଂମୁଦା ବିଭ୍ରତୀମ୍
ଶ୍ରୀଚକ୍ର-ସ୍ଥିତ-ସୁନ୍ଦରୀଂ ତ୍ରି-ଜଗତାମାଧାର-ଭୂତାଂ ସ୍ମରେତ୍ ।
ବାଳାର୍କ ମଣ୍ଡଳାଭାସାଂ, ଚତୁର୍ବାହାଂ ତ୍ରିଲୋଚନାମ୍
ପାଶାକୁଶ-ଶରାଂଷ୍ଟାପ, ଧାରୟନ୍ତୀଂ ଶିବାଂ ଭଜେ ॥

**ଶ୍ରୀ ଶ୍ରୀ ଭୁବନେଶ୍ୱରୀ**

ଚତୁର୍ଥ ବ୍ରହ୍ମମୟୀ ମହାବିଦ୍ୟା ହେଉଛନ୍ତି ଶ୍ରୀ ଶ୍ରୀ ଭୁବନେଶ୍ୱରୀ । ସେ ସଂପୂର୍ଣ୍ଣ ଭୁବନର ଅଧିଷ୍ଠାତ୍ରୀ । ସୃଷ୍ଟି କାର୍ଯ୍ୟର ଶୁଭାରମ୍ଭ ଏହି ଦେବୀଙ୍କ ଦ୍ୱାରା ସମ୍ଭବ ହୋଇଥିଲା । ଦେବୀ ହେଉଛନ୍ତି ତ୍ରିପୁରା ମହାବିଦ୍ୟାଙ୍କର ସରଳ ରୂପ । ଦେବୀଙ୍କର ରକ୍ତ ପ୍ରଭାବ ବିମର୍ଷବୋଧକ ଅଟେ । ଶିରରେ ଥିବା ଚନ୍ଦ୍ରମା ବ୍ରହ୍ମାନନ୍ଦର ଦ୍ୟୋତକ । ଦୁଇ ତୁଙ୍ଗ କୁଚ ଜ୍ଞାନ ଓ କର୍ମ ରୂପକ ସୋମରସ ରୂପୀ ଅମୃତଘଟ । ଯାହାକି ଜଗତକୁ ଜୀବନ ପ୍ରଦାନ କରିଥାଏ । ଏହି ସ୍ୱରୂପ ଜଗନ୍ମାତୃତ୍ୱର ପରିଚାୟକ ଅଟେ । ପଦ୍ମଯୋନି ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କର ଆଦି ଜନନୀ ହେବା ସହିତ ସେ ତ୍ରିଜଗତର ସୃଷ୍ଟି, ସ୍ଥିତି ଓ କ୍ଷୟର କାରଣ ଅଟନ୍ତି । ତାଙ୍କୁ ଅଶେଷ ଜନନୀ ବିଦ୍ୟା ଅର୍ଥାତ୍ ଅଶେଷ କାରଣ ବ୍ରହ୍ମ ବୋଲି କୁହାଯାଏ ।

**ଧ୍ୟାନ-**

ଉଦ୍ୟଦ୍-ଦିନ-ଦ୍ୟୁତିମିନ୍ଦୁ-କିରୀଟାଂ ତୁଙ୍ଗ-କୁଚାଂ ନୟନ-ତ୍ରୟ-ଯୁକ୍ତାମ୍
ସ୍ମେର-ମୁଖୀଂ ବରଦାଂ କୁଶ-ପାଶାଭୀତି-କରାଂ ପ୍ରଭଦେ ଭୁବନେଶ୍ୱରୀମ୍ ।

**ଶ୍ରୀ ଶ୍ରୀ ଭୈରବୀ**

ପଞ୍ଚମ ବ୍ରହ୍ମମୟୀ ମହାବିଦ୍ୟା ହେଉଛନ୍ତି ଶ୍ରୀ ଭୈରବୀ । ଏକ ପକ୍ଷରେ ସୂକ୍ଷ୍ମ ରୂପରେ ଜଗତର ମୂଳ, ସକଳ ବାଙ୍ମୟର ଜନନୀ ତ ଦ୍ୱିତୀୟ ପକ୍ଷରେ ସ୍ଥୂଳ ରୂପରେ କରୁଣା ସାଗର ଅଭୟ ଓ ବରଦହସ୍ତା, ଜପମାଳା, ପୁସ୍ତକ (ବିଦ୍ୟା) ଧାରଣ କରିଥାନ୍ତି । ଜପତପ, ଜ୍ଞାନ ଧ୍ୟାନ ଆଦି ସୌମ୍ୟ କର୍ମରେ ଦେବୀ ସିଦ୍ଧି ପ୍ରଦାନ କରିଥାନ୍ତି । ଦେବୀଙ୍କର ଅରୁଣବର୍ଣ୍ଣ ବ୍ରହ୍ମମୟୀ ସାକାର ରୂପର ବିମର୍ଷ ରୂପର ଦ୍ୟୋତକ ଅଟେ । ଦେବୀଙ୍କର ରକ୍ତାଲିପ୍ତ ପୟୋଧର ସୃଷ୍ଟି ସ୍ଥିତିର ଦ୍ୟୋତକ ଅଟେ । ଦେବୀଙ୍କ ହାତରେ ଥିବା ଜପ ବାଟିକା-ବାକ୍‌ର ମୋକ୍ଷ ଦାୟକ ସ୍ୱରୂପ । ପୁସ୍ତକ ବ୍ରହ୍ମଜ୍ଞାନର ବୋଧକ । ମୁକୁଟରେ ଥିବା ଚନ୍ଦ୍ର ଆନନ୍ଦ ଓ ଅମୃତତ୍ୱର ପରିଚାୟକ ଅଟେ ।

**ଧ୍ୟାନ-**

ଉଦ୍ୟଦ୍-ଭାନୁ-ସହସ୍ର-କାନ୍ତିମରୁଣ-କ୍ଷୌମାଂ ଶିରୋ-ମାଳିକାମ୍
ରକ୍ତାଲିପ୍ତ-ପୟୋଧରାଂ ଜପପରାଂ ବିଦ୍ୟାମଭୀତିଂ ବରମ୍
ହସ୍ତା ଦ୍ୱୈର୍ଦଧତୀଂ ତ୍ରିନେତ୍ର-ବିଲସଦ୍-ବକ୍ତାରବିନ୍ଦ-ଶ୍ରିୟମ୍
ଦେବୀ ବଦ୍ଧ-ହିମାଂଶୁ-ରତ୍ନ-ମୁକୁଟାଂ ବନ୍ଦେ ସୁମଳ-ସ୍ମିତ୍ୟମ୍ ॥

**ଶ୍ରୀ ଶ୍ରୀ ଛିନ୍ନମସ୍ତା**

ଷଷ୍ଠ ମହାବିଦ୍ୟା ହେଉଛନ୍ତି ଶ୍ରୀ ଶ୍ରୀ ଛିନ୍ନମସ୍ତା । ସେ ହେଉଛନ୍ତି ବ୍ରହ୍ମମୟୀଙ୍କର ଇଚ୍ଛା ଓ କ୍ରିୟା ଶକ୍ତି । ଏଣୁ ହସ୍ତପଦର ଆବଶ୍ୟକତା ପଡ଼େ ନାହିଁ । କିମ୍ବା ମସ୍ତକର ଆବଶ୍ୟକତା ପଡ଼େ ନାହିଁ । ଅନ୍ୟ ଅର୍ଥରେ ଶବ ମଧ୍ୟରେ ବ୍ରହ୍ମମୟୀ ମହାଶକ୍ତି ନିଜେ ନିଜର ଅବଲମ୍ବନ ହୋଇଥାନ୍ତି । ନିଜ ଶକ୍ତିଦ୍ୱାରା ନିଜର ରୂପାନ୍ତରକୁ ଅନୁପ୍ରାଣିତ ରଖିଥାନ୍ତି ।

**ଧ୍ୟାନ-**

ଭାସ୍ୱନ୍ମଣ୍ଡଳ-ମଧ୍ୟଗାଂ ନିଜ ଶିରଶ୍ଛିନ୍ନଂ ବିକିର୍ଣ୍ଣାଲକମ୍
ସ୍ଫାରାସ୍ୟଂ ପ୍ରପିବଦ୍ ଗଲାଦ୍ ସ୍ୱରୁଧିରଂ ବାମ କରେ ବିଭ୍ରତିମ୍
ଯାଭାସକ୍ତ-ରତି-ସ୍ମରୋପରି-ଗତ୍ୟଂ ସଖୌ ନିବଦି ଡାକିନୀ-
ବର୍ଣ୍ଣନ୍ୟୌ ପରି-ଦୃଶ୍ୟ-ମୋଦ-କଳିତାଂ ଶ୍ରୀଛିନ୍ନ-ମସ୍ତା ଭଜେ ॥

**ଶ୍ରୀ ଶ୍ରୀ ଧୂମାବତୀ**

ସପ୍ତମ ମହାବିଦ୍ୟା ହେଉଛନ୍ତି ଶ୍ରୀ ଶ୍ରୀ ଧୂମାବତୀ । ଦେବୀ ହେଉଛନ୍ତି ଭୋଗ ଓ ମୋକ୍ଷ ଦାତ୍ରୀ । ଜୀବ ସକଳକୁ ପରିତ୍ରାଣ କରିବାର ଶକ୍ତି ଦେବୀଙ୍କ ନିକଟରେ ଅଛି । ଯେପରି ଶୂପ (କୁଲା) ଶସ୍ୟରେ ମିଶିଥିବା ସମସ୍ତ ଯାବତୀୟ ଦୂଷିତ ପଦାର୍ଥକୁ ଅଲଗା କରିଦିଏ ସେହିଭଳି ଧୂମାବତୀ ଉପାସନାଦ୍ୱାରା ସାଧକର ଅନ୍ତଃକରଣରେ ଥିବା ସମସ୍ତ ମନୋବିକାର ନଷ୍ଟ ହୋଇଯାଏ ଓ ସାଧକକୁ କର୍ମ ସଂସ୍କାରରୁ ନିବୃତ୍ତି ମିଳି ଯାଇଥାଏ । ସେଥିନିମନ୍ତେ ଭଗବତୀ ଧୂମାବତୀ ହସ୍ତ ଶୂପକୁ ପ୍ରତୀକ ରୂପେ ଧାରଣ କରିଛନ୍ତି ।

**ଧ୍ୟାନ-**

ବିବର୍ଣ୍ଣା ଚଞ୍ଚଳା ରୁଷ୍ଟା ଦୀର୍ଘା ଚ ମଳିନାମ୍ବର ।
ବିମୁକ୍ତ କୁନ୍ତଳା ରୁକ୍ଷା ବିଧବା ବିରଳ ଦ୍ୱିଜା ।
କାକ ଧ୍ୱଜ ରଥାରୂଢ଼ା ବିଲମ୍ବିତ ପୟୋଧରା ।
ସ୍ୱର୍ପ ହସ୍ତାତିରୁକ୍ଷାକ୍ଷୀ ଧୂତହସ୍ତା ବରାନ୍ୱିତା ।

ପ୍ରବୃଦ୍ଧ ଘୋଣା ତୁଭୃଶଂ କୁଟିଳା କୁଟିଳେକ୍ଷଣା ।
କ୍ଷୁତ୍ପିପାମାର୍ଦ୍ଦିତା ନିତ୍ୟଂ ଭୟଦା କଳହ ପ୍ରିୟ ।।

**ଶ୍ରୀ ଶ୍ରୀ ବଗଳାମୁଖୀ**

ଅଷ୍ଟମ ବିଦ୍ୟା ହେଉଛନ୍ତି ଶ୍ରୀ ଶ୍ରୀ ବଗଳାମୁଖୀ । ଦେବୀ ସୁଧା ସାଗର ମଧ୍ୟରେ ରତ୍ନବେଦୀ ଉପରେ ସିଂହାସନରେ ବସିଛନ୍ତି । ଦେବୀ ପୀତବସ୍ତ୍ର, ଆଭରଣମାଳା, ମୁଦ୍‌ଗର ତଥା ବୈରୀ ଜିହ୍ୱାକୁ ଧାରଣ କରିଛନ୍ତି । ସୁଧାସାଗର-ଚିଦାନନ୍ଦ ସ୍ୱରୂପ ଆନନ୍ଦସାଗର । ମଣିମଣ୍ଡପ, ରତ୍ନବେଦୀ-ସୃଷ୍ଟି-ସିଂହାସନ ବିନ୍ଦୁ । ଦେବୀଙ୍କର ଭୂଷଣ ଓ ବସ୍ତ୍ର ସବୁ ପୀତବର୍ଣ୍ଣ । ପୀତବର୍ଣ୍ଣ ପୃଥିବୀ ତତ୍ତ୍ୱ । ଅତଃ ପୃଥିବୀ ଉପରେ ବ୍ରହ୍ମର ପ୍ରପଞ୍ଚ ସିଦ୍ଧି ମଧ୍ୟରେ ବିରୋଧୀ ଶକ୍ତିକୁ ରୋକିବା ପାଇଁ ଦେବୀଙ୍କର ଉପାସନା କରାଯାଇଥାଏ ।

**ଧ୍ୟାନ-**

ମଧ୍ୟେ ସୁଧାବ୍ଧି ମଣିମଣ୍ଡପ ରତ୍ନବେଦୀ-
ସିଂହାସନୋ ପରିଗତାଂ ପରିପୀତବର୍ଣ୍ଣାଂ ।
ପୀତାମ୍ବରା ଭରଣମାଲ୍ୟ ବିଭୂଷିତାଙ୍ଗୀଂ
ଦେବୀଂ ସ୍ମରାମି ଧୃତ ମୁଦ୍‌ଗର ବୈରି ଜିହ୍ୱାମ୍ ।
ଜିହ୍ୱାଗ୍ରମାଦାୟ କରେଣଂ ଦେବୀ
ବାମେନ ଶତ୍ରୁନ ପରିପୀଡ଼ୟନ୍ତୀଂ
ଗଦାଭିଘାତେନଚ ଦକ୍ଷିଣେନ
ପୀତାମ୍ବରାଢ୍ୟାଂ ବଗଳାଂ ନମାମି ।।

**ଶ୍ରୀ ଶ୍ରୀ ମାତଙ୍ଗୀ**

ନବମ ମହାବିଦ୍ୟା ଶ୍ରୀ ଶ୍ରୀ ମାତଙ୍ଗୀ । ଶ୍ୟାମବର୍ଣ୍ଣା, ଶିରଦେଶରେ ଚନ୍ଦ୍ରମା, ତ୍ରିନୟନା, ରତ୍ନସିଂହାସନାସ୍ଥ, ଚାରିହାତରେ ଦଣ୍ଡ, କୃପାଣ, ପାଶ ଓ ଅଙ୍କୁଶ ଧାରଣ କରିଛନ୍ତି । କୁହାଯାଏ, ପ୍ରାଚୀନ କାଳରେ ମାତଙ୍ଗମୁନି କଦମ୍ବ ବନରେ ଶହ ଶହ ବର୍ଷଧରି ତପସ୍ୟା କରିଥିଲେ । ଉଦ୍ଦେଶ୍ୟ ଥିଲା ସେ କିପରି ସମସ୍ତ ଜୀବଜଗତକୁ ବଶ କରିବେ । ଫଳରେ ତ୍ରିପୁର-ସୁନ୍ଦରୀଙ୍କର ନେତ୍ରରୁ ତେଜ ଉତ୍ପନ୍ନ ହେଲା । ସେହି ତେଜରାଶି ସ୍ୱୟଂ ଶ୍ୟାମଳ ବର୍ଣ୍ଣ ଧାରଣ କରି ରାଜ ମାତଙ୍ଗିନୀ ସୃଷ୍ଟି ହେଲେ । ଏଥିରୁ ସ୍ପଷ୍ଟ ହୋଇଛି ଯେ ବ୍ରହ୍ମଙ୍କର ଇଚ୍ଛା-ଜ୍ଞାନ-କ୍ରିୟା ରୂପ ସୃଷ୍ଟିର ସମସ୍ତ ବିରୋଧକୁ ଦୂର କରିବା ପାଇଁ, ବିବିଧ କଳାରେ ପୂର୍ଣ୍ଣ କରିବା ନିମନ୍ତେ ମାତଙ୍ଗୀ ଦେବୀଙ୍କର ଉପାସନା ବିଧାନ ଓ ସୃଷ୍ଟି ହୋଇଅଛି ।

**ଧ୍ୟାନ-**

ଶ୍ୟାମାଙ୍ଗୀ ଶଶିଶେଖରାଂ ତ୍ରିନୟନାଂ ସିଂହାସନସ୍ଥାଂଶିବାଂ
ବେଦୈର୍ବାହୁଭିରଙ୍କୁଶଂ ଚ ଦଧଣଂ ପାଶଂ ତ୍ୱସି ଖେଟକମ୍
ନାନାରତ୍ନ ବିଭୂଷିତାଂ ତ୍ରିଜଗତାଂ ଧାତ୍ରୀଂ ସ୍ଫୁରଲୋଚନାଂ
ବନ୍ଦେ ସୁନ୍ଦର ପଦ୍ମ ପାଦଯୁଗଳାଂ ମାତଙ୍ଗୀମବ୍‌ଜାନନାମ୍ ।।

**ଶ୍ରୀ ଶ୍ରୀ କମଳା**

ଦଶମ ମହାବିଦ୍ୟା ଶ୍ରୀ ଶ୍ରୀ କମଳା । କମଳାଙ୍କର ଅନ୍ୟନାମ ଶ୍ରୀଲକ୍ଷ୍ମୀବିଦ୍ୟା । ଦେବୀଙ୍କର ଦେହର କାନ୍ତି ଶୁଦ୍ଧ ସୁବର୍ଣ୍ଣ ସଦୃଶ । ବିଶାଳକାୟ ହାତୀଦ୍ୱୟ ଅମୃତ କଳସ ଧାରଣ ପୂର୍ବକ ସିଞ୍ଚନ କରୁଥାନ୍ତି । ଜାଜ୍ୱଲ୍ୟମାନ କିରୀଟ, ଉତ୍ତମବସ୍ତ୍ର ପରିବୃତା ଦେବୀ ହେଉଛନ୍ତି ବ୍ରହ୍ମଙ୍କର ପ୍ରପଞ୍ଚ-ସିଦ୍ଧ-ରୂପ, ଯାହାକି ବୈଭବ ଐଶ୍ୱର୍ଯ୍ୟର କଳ୍ପନା ସାକାର କରିଛନ୍ତି ।

**ଧ୍ୟାନ-**

କାନ୍ତ୍ୟା କାଞ୍ଚନସନ୍ନିଭ୍ୟାଂ ହିମଗିରି ପ୍ରଖୌଣ୍ଣ୍ଟତୁର୍ଭିର୍ଗଜୈ-
ହସ୍ତୋତ୍ କ୍ଷିପ୍ତ ହରିଣ୍ମୟାମୃତ ଘଟୈରାସିଚ୍ୟମାନାଂ ଶ୍ରିୟମ୍
ବିଭ୍ରାଣାଂ ବରମବ୍‌ଜ ଯୁଗ୍ମମଭୟଂ ହସ୍ତୈଃ କିରୀଟୋଜ୍ୱଳାଂ
କ୍ଷୋମାବଦ୍ଧ ନିତମ୍ବ ବିମ୍ୱଲଳିତାଂ ବନ୍ଦେ[illegible]ବିନ୍ଦସ୍ଥିତାମ୍ ।।

ବ୍ରହ୍ମର ଅନ୍ୟନାମ ଜ୍ଞାନ ବା ବିଦ୍ୟା । ଶାକ୍ତ ସଂପ୍ରଦାୟ ତଥା ସାଧାରଣ ମାତୃପ୍ରେମୀମାନେ ଯେଉଁ ଦଶ ପ୍ରଧାନ ରୂପକୁ ବ୍ରହ୍ମଙ୍କ ସ୍ୱରୂପ ରୂପେ ଉପାସନା କରନ୍ତି ତାହା ଦଶମହାବିଦ୍ୟା । ତନ୍ତ୍ର ଏହାକୁ ବ୍ରହ୍ମ ବିଦ୍ୟା ବୋଲି କହିଥାଏ । ଦଶ ମହାବିଦ୍ୟା ଉପାସନା ଦ୍ୱାରା ଗ୍ରହମାନଙ୍କର କୋପମଧ୍ୟ ନିୟନ୍ତ୍ରିତ ହୋଇଥାଏ । ମାନବ ସୁଖ ଶାନ୍ତି ଓ ଐଶ୍ୱର୍ଯ୍ୟମୟ ଜୀବନଯାପନ ନିମନ୍ତେ ଦଶ ମହାବିଦ୍ୟା ଉପାସନା କରିବା ଉଚିତ ।

ସଂପାଦକ, ପୁରାଣ ପତ୍ରିକା
ପୋ-ନିଆଳୀ, ଜି.- କଟକ

# ଶାକ୍ତ ଧର୍ମଧାରାର ଐତିହ୍ୟ ଓ ଉଡ୍ଡୀୟାନ ପୀଠ

ପଦ୍ମନାଭ ମହାପାତ୍ର



**ଶ**କ୍ତି ଉପାସନାର ଧାରା ବହୁ ପ୍ରାଚୀନ । ଏହାର ସମୟ ନିରୂପଣ କରିବା କଠିନ । ଜୀବ ଓ ଜଡ଼ ଜଗତର ମୂଳ ଉତ୍ସ ହେଉଛନ୍ତି ଶକ୍ତି । ଶକ୍ତି ହିଁ ସୃଷ୍ଟିର କାରଣ । ସମାଲୋଚକମାନେ ଶାକ୍ତ ଧର୍ମକୁ ପ୍ରାକ୍ ବୈଦିକ ଯୁଗର ମାତୃଦେବୀ ଉପାସନାର ପରିମାର୍ଜିତ ଧର୍ମ ବୋଲି ମତ ପ୍ରକାଶ କରନ୍ତି । ମା'ର ଶିଶୁ ପ୍ରତି ବାତ୍ସଲ୍ୟ ପ୍ରେମ ଅନନ୍ୟ । ତେଣୁ ମାତୃପୂଜା ଆଦିମ ଯୁଗରୁ ପ୍ରଚଳିତ । ପ୍ରାକ୍‌ବୈଦିକ ଅନାର୍ଯ୍ୟ ସଂସ୍କୃତିର ମାତୃକା ଉପାସନା ପରବର୍ତ୍ତୀ ସମୟରେ ଆର୍ଯ୍ୟ ସଂସ୍କୃତି ମଧ୍ୟରେ ପ୍ରବେଶ କରିଛି ଏବଂ ଆର୍ଯ୍ୟ ଅନାର୍ଯ୍ୟଙ୍କ ସାଂସ୍କୃତିକ ମିଳନରେ ଶକ୍ତି ଉପାସନା ବୃଦ୍ଧିମନ୍ତ ହୋଇଛି ।

ବେଦର ବାଗ୍ ସୂକ୍ତ ବା ଦେବୀ ସୂକ୍ତ, କାଳରାତ୍ରୀ ସୂକ୍ତ ଓ ଶ୍ରୀ ସୂକ୍ତ ଶକ୍ତି ମହାତ୍ମ୍ୟର ପ୍ରଖ୍ୟାପକ । ଋଗ୍‌ବେଦର ବାଗ୍‌ଦେବୀ ସୂକ୍ତକୁ ଶାକ୍ତ ଭାବନାର ମୂଳଭିତ୍ତି ବୋଲି ଗ୍ରହଣ କରାଯାଏ । ଏଥିରେ ଦେବୀ ଅମ୍ଭୃଣା ଋଷିଙ୍କ କନ୍ୟା ବିଶ୍ୱନିୟନ୍ତା ଶକ୍ତି ଭାବରେ ରୂପାୟିତ ହୋଇଛନ୍ତି । ଋଗ୍‌ବେଦ-୧୦-୧୦-୧୨୫ରେ ଦେବୀ କହିଛନ୍ତି - 'ମୁଁ ସଚ୍ଚିଦାନନ୍ଦମୟୀ ସର୍ବାତ୍ମା ଦେବୀ, ରୁଦ୍ର, ବସୁ, ଆଦିତ୍ୟ ତଥା ବିଶ୍ୱ ଦେବଗଣଙ୍କ ରୂପରେ ବିଚରଣ କରୁଛି । ମୁଁ ମିତ୍ର ଓ ବରୁଣଙ୍କୁ, ଇନ୍ଦ୍ର ଓ ଅଗ୍ନିଙ୍କୁ ତଥା ଦୁଇ ଅଶ୍ୱିନୀ କୁମାରଙ୍କୁ ଧାରଣ କରିଅଛି । ମୁଁ ସାରା ଜଗତର ଅଧିଶ୍ୱରୀ । ନିଜ ଉପାସକମାନଙ୍କ ଧନ ପ୍ରାପ୍ତକାରିଣୀ, ମୁଁ ପ୍ରପଞ୍ଚ ଭାବରେ ଓ ଅନେକ ଭାବରେ ସ୍ଥିତ । ସମସ୍ତ ଭୂତ ମଧ୍ୟରେ ମୋର ପ୍ରବେଶ । ମୋର ସହାୟତାରେ ସମସ୍ତେ ଦେଖନ୍ତି, ପ୍ରାଣ ଧାରଣ କରନ୍ତି ଓ ଅନ୍ନଭୋଜନ କରନ୍ତି । ମୁଁ ଯାହାଙ୍କୁ ରକ୍ଷା କରିବାକୁ ଇଚ୍ଛା କରେ, ତାହାଙ୍କୁ ସର୍ବାପେକ୍ଷା ଅଧିକ ଶକ୍ତିଶାଳୀ କରିଦିଏ । ସେମାନଙ୍କୁ ବ୍ରହ୍ମା, ଋଷି ଓ ଉତ୍ତମ ମେଧା ସମ୍ପନ୍ନ କରିପାରେ । ରୁଦ୍ର ଯେତେବେଳେ ସ୍ତୋତ୍ର ବିଦ୍ୱେଷୀଙ୍କୁ ହତ୍ୟା କରିବାକୁ ଉଦ୍ୟତ ହୁଅନ୍ତି, ମୁଁ ତାଙ୍କର ଧନୁ ବିସ୍ତାର କରିଦିଏ । ଲୋକଙ୍କ ପାଇଁ ମୁଁ ଯୁଦ୍ଧ କରେ । ମୁଁ ଭୂଲୋକ ଓ ଦ୍ୟୁଲୋକକୁ ଆବିଷ୍ଟ କରି ରଖିଛି । ମୁଁ ଜନନୀ, ଆକାଶକୁ ଜନ୍ମ ଦେଇଛି, ଆକାଶ ଏ ଜଗତର ମସ୍ତକ ସ୍ୱରୂପ । ସମୁଦ୍ର ମୋର ବାସସ୍ଥଳୀ, ସେଠାରୁ ମୁଁ ବିସ୍ତାର ଲାଭ କରେ ଓ ସ୍ୱର୍ଗଲୋକକୁ ସ୍ପର୍ଶ କରେ । ମୁଁ ବିଶ୍ୱ ରଚନା କରୁ କରୁ ସ୍ୱୟଂ ବାୟୁ ଭଳି ଗତି କରେ । ସ୍ୱତଃ ହିଁ କର୍ମରେ ପ୍ରବୃତ୍ତ ହୁଏ । ମୋର ମହିମା ସ୍ୱର୍ଗ ଓ ମର୍ତ୍ତ୍ୟ ଉଭୟଙ୍କଠାରୁ ବହୁ ଊର୍ଦ୍ଧ୍ୱରେ ।'

ବାଗ୍‌ଦେବୀଙ୍କଠାରେ ଏଭଳି ଯେଉଁ ଅଲୌକିକତା, ସର୍ବାତ୍ମକତା, ବ୍ୟାପକତା ଓ ସର୍ବଶକ୍ତିର ସମନ୍ୱୟତା ଦେଖିବାକୁ ମିଳେ ତାହାର ପଟାନ୍ତର ନାହିଁ । ଦେବୀ ବିଶ୍ୱନିୟନ୍ତ୍ରିକା ଏବଂ ତାଙ୍କର ମହିମା ସ୍ୱର୍ଗ ଏବଂ ମର୍ତ୍ତ୍ୟକୁ ମଧ୍ୟ ଅତିକ୍ରମ କରିଛି । ବେଦୋତ୍ତର ସାହିତ୍ୟରେ ଶକ୍ତିଙ୍କର ବର୍ଣ୍ଣନା ସର୍ବତ୍ର । ତୈତ୍ତିରୀୟ ବ୍ରାହ୍ମଣ ଓ ବାଜସନେୟ ସଂହିତାରେ ଅମ୍ବିକା ରୁଦ୍ରଙ୍କର ଭଗ୍ନୀ । ତୈତ୍ତିରୀୟ ଆରଣ୍ୟ କାଳରେ ଅମ୍ବିକା ରୁଦ୍ରପତ୍ନୀ, ପରେ ତାଙ୍କ ସହିତ ଦୁର୍ଗା, କାତ୍ୟାୟନୀ, ବୈରୋଚନୀ ଓ କନ୍ୟାକୁମାରୀ ଇତ୍ୟାଦି ନାମ ସଂଯୁକ୍ତ ହୋଇଛି । ସାଂଖ୍ୟାୟନ ଗୃହ୍ୟସୂତ୍ରରେ ସେ ଭଦ୍ରକାଳୀ, ଦେବୀ ଉପନିଷଦରେ ସେ ପ୍ରକୃତି ଓ ପୁରୁଷର ଜନନୀ ଓ ବ୍ରହ୍ମ ସ୍ୱରୂପା । ତ୍ରିପୁରାନାଶିନୀ ଉପନିଷଦରେ ସୃଷ୍ଟିର ବିଧାନ ପାଇଁ ଶିବଙ୍କ ସହ ଶକ୍ତିଙ୍କର ଅପରିହାର୍ଯ୍ୟତାର ବର୍ଣ୍ଣନା ରହିଛି । ଆରଣ୍ୟକର (ତୈତ୍ତିରୀୟ) ନାରାୟଣ ଉପନିଷଦରେ-୨/୨୨ରେ ଭୂଦେବୀ, ଧରିତ୍ରୀ ଓ ଶ୍ରୀଦେବୀ ଦୁର୍ଗାଙ୍କ ପ୍ରସଙ୍ଗ ବର୍ଣ୍ଣିତ ହୋଇଛି -

'ତାମଗ୍ନିବର୍ଣ୍ଣା ତପସା ଜ୍ୱଳନ୍ତୀଂ<br>
ବୈରୋଚନୀଂ କର୍ମଫଳେଷୁ ଦୃଷ୍ଟାମ୍ ।<br>
ଦୁର୍ଗାଦେବୀଂ ଶରଣମହଂ ପ୍ରପଦ୍ୟେ<br>
ସୁତରସି ତରସେ ନମଃ ।'

ରାମାୟଣ କାଳରେ ଗିରିଜା, ରୁଦ୍ରାଣୀ, ପାର୍ବତୀ, ନାଗମାତା, କାଳରାତ୍ରୀ ପ୍ରଭୃତି ଦେବୀଙ୍କର ବର୍ଣ୍ଣନା ଦେଖିବାକୁ ମିଳେ । ମହାଭାରତରେ ବିରାଟ ପର୍ବ ଅନ୍ତର୍ଗତ ଯୁଧିଷ୍ଠିରଙ୍କର ଦୁର୍ଗାସ୍ତବ, ଭୀଷ୍ମପର୍ବ ଅନ୍ତର୍ଗତ ଅର୍ଜ୍ଜୁନଙ୍କ ଦୁର୍ଗାସ୍ତୋତ୍ର ଓ ହରିବଂଶର ଆର୍ଯ୍ୟାସ୍ତବରୁ ଜଣାଯାଏ ଯେ, ସେ ସମୟକୁ ଶାକ୍ତ ସାଧନା ପୂର୍ଣ୍ଣ ବିକଶିତ ହୋଇଥିଲା । ବୈଦିକ ଯୁଗଠାରୁ ଆରମ୍ଭ କରି ମହାଭାରତ ଯୁଗ ପର୍ଯ୍ୟନ୍ତ ଦୁର୍ଗା ଏକ ପ୍ରଧାନ ମାତୃଦେବୀ ଭାବେ ବିବେଚିତା ହେଉଥିଲେ । ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀ ପର୍ଯ୍ୟନ୍ତ କୌଣସି ଗ୍ରନ୍ଥ ଦେବୀଙ୍କୁ ସିଂହବାହିନୀ ବା ମହିଷମର୍ଦ୍ଦିନୀ ଭାବରେ ଉପସ୍ଥାପିତ କରି ନାହିଁ ।

ଓଡ଼ିଶାର ଆଦିବାସୀ ସଂସ୍କୃତିରେ ଶକ୍ତି ଉପାସନା ମଧ ବହୁ ପ୍ରାଚୀନ । ବର୍ତ୍ତମାନର ଓଡ଼ିଶା ପୂର୍ବେ ଉଡ୍ର, ବିଷୟ, କଳିଙ୍ଗ ଓ ଉତ୍କଳ ଏଭଳି ୪ଟି ଦେଶରେ ବିଭକ୍ତ ଥିଲା । ଏଥିରେ ଆଦିମ ଅଧିବାସୀମାନେ ମାତୃକା ଓ ବୃକ୍ଷ ପୂଜକ ଥିଲେ । ତାଙ୍କର ପ୍ରଥମ ଉପାସ୍ୟ ଶକ୍ତି ଥିଲେ ଖମ୍ଭେଶ୍ୱରୀ । ପଶ୍ଚିମ ଓଡ଼ିଶାରେ ପ୍ରତି ଗ୍ରାମରେ କାଠଗଣ୍ଡି ନିର୍ମିତ ଗୋଟିଏ ବା ଯୋଡ଼ିଏ ଖମ୍ଭେଶ୍ୱରୀ ଗ୍ରାମଦେବୀ ଓ ଦେବତା ଭାବରେ ପୂଜା ପାଉଥିଲେ, ତାଙ୍କୁ ପୂର୍ବେ ଅନାର୍ଯ୍ୟ ଦେବୀ ବୋଲି କୁହାଯାଉଥିଲା । ଆଦିବାସୀମାନେ ଗଛମୂଳରେ ବିନା ମନ୍ଦିରରେ ଖମ୍ଭେଶ୍ୱରୀଙ୍କ ପୂଜା କରୁଥିଲେ । ସୋନପୁର ଓ ପଶ୍ଚିମ ଓଡ଼ିଶାର ବହୁସ୍ଥାନରେ ଏହି ପୂଜାର ପରିବର୍ଦ୍ଧିତ ପ୍ରଣାଳୀ ଏବେ ମଧ ପ୍ରଚଳିତ ଅଛି । ପ୍ରାୟ ସେହି କାଳରେ ଉପକୂଳ ଅଞ୍ଚଳର କନ୍ଧ ଓ ଶବରମାନେ କାଠଗଣ୍ଡିଙ୍କୁ ନରନ୍ତଲୀ ବା କାପାନ୍ତଲୀ (ସ୍ତ୍ରୀ ଦେବତା) ଓ ଯଙ୍ଗମୁଙ୍ଗ (ପୁରୁଷ ଦେବତା) ନାମରେ ପୂଜା କରୁଥିଲେ । ସେହି କାପାନ୍ତରୀ ପରବର୍ତ୍ତୀ କାଳରେ କାମ୍ପିଲ୍ୟାମା ବା କାମ୍ପିଲ୍ୟପୁରବାସିନୀ (ସୁଭଦ୍ରା) ଭାବରେ ପରିଚିତା ହୋଇଛନ୍ତି ।

ମାର୍କଣ୍ଡେୟ ଋଷିକୃତ ମାର୍କଣ୍ଡେୟ ପୁରାଣ ଓ ତଦନ୍ତର୍ଗତ ଶ୍ରୀଦୁର୍ଗା ସପ୍ତଶତୀ ଉତ୍କଳରେ (ଶ୍ରୀକ୍ଷେତ୍ରରେ) ହିଁ ରଚିତ । ମେଧା ବା ମେଧସ୍ ମହର୍ଷିଙ୍କ ତପସ୍ୟାସ୍ଥଳ ଥିଲା ଶ୍ରୀକ୍ଷେତ୍ରସ୍ଥ ସମୁଦ୍ର ସଙ୍ଗତା ତୀରଭୂମି । ଚେଦୀ ବଂଶ ସମ୍ଭୁଭବ ସୁରଥ । ଚେଦୀ ସମ୍ରାଟ ଖାରବେଳଙ୍କର ପୂର୍ବଜ ଏବଂ ଉତ୍କଳୀୟ ରାଜବଂଶୀୟ । ଯୁଦ୍ଧରେ ପରାଜିତ ସୁରଥ ନିଜ ରାଜ୍ୟ ହରାଇ ମେଧସ୍ ମହର୍ଷିଙ୍କର ଆଶ୍ରୟ ନେଲେ । ତାଙ୍କର ନିର୍ଦ୍ଦେଶରେ ୩ ବର୍ଷ କାଳ ଶ୍ରୀସୂକ୍ତରେ ଦେବୀଙ୍କର (ଶ୍ରୀଦେବୀ) ଆରାଧନା କରି ସ୍ୱରାଜ୍ୟ ଫେରି ପାଇଥିବା କଥା ଶ୍ରୀଚଣ୍ଡୀରୁ ଜଣାଯାଏ । ତେଣୁ ଗଜଲକ୍ଷ୍ମୀ ବା ମହାଲକ୍ଷ୍ମୀ ଶ୍ରୀକ୍ଷେତ୍ରର ଆଦିମାତା ।

ଶ୍ରୀଦୁର୍ଗା ସପ୍ତଶତୀ କହେ - ପୂର୍ବକାଳରେ ଦେବତା ଓ ଅସୁରମାନଙ୍କ ମଧ୍ୟରେ ଶହେ ବର୍ଷ ପର୍ଯ୍ୟନ୍ତ ଘୋର ସଂଗ୍ରାମ ହେଲା । ସେଥିରେ ଦେବତାମାନଙ୍କ ନାୟକ ଥିଲେ ଇନ୍ଦ୍ର ଓ ଅସୁରାପତି ଥିଲା ମହିଷାସୁର । ଶେଷରେ ଦେବତାମାନେ ସମ୍ପୂର୍ଣ୍ଣ ପରାସ୍ତ ହୋଇ ପ୍ରଜାପତି ବ୍ରହ୍ମାଙ୍କୁ ଆଗରେ ରଖି ଭଗବାନ ଶଙ୍କର ଓ ବିଷ୍ଣୁଙ୍କୁ ପରାଜୟ ବୃତ୍ତାନ୍ତ ଶୁଣାଇବାରୁ ଉଭୟଙ୍କ କୋପ ଓ ଦେବତାମାନଙ୍କ ତେଜରୁ ଏକ ଜାଜ୍ୱଲ୍ୟମୟୀ ନାରୀ ମୂର୍ତ୍ତି ଆବିର୍ଭୂତା ହେଲେ । **ଭଗବାନ ଶଙ୍କରଙ୍କ ତେଜରୁ ମୁଖ, ଯମରାଜଙ୍କଠାରୁ କେଶ, ଶ୍ରୀବିଷ୍ଣୁଙ୍କଠାରୁ ଭୁଜ, ଚନ୍ଦ୍ରଙ୍କ ତେଜରୁ ସ୍ତନଦ୍ୱୟ, ଇନ୍ଦ୍ରଙ୍କଠାରୁ କଟି ପ୍ରଦେଶ, ବରୁଣଙ୍କ ଅଂଶରୁ ଜଂଘ, ପୃଥିବୀ ମାତାଙ୍କଠାରୁ ଚରଣଦ୍ୱୟ, ସୂର୍ଯ୍ୟଙ୍କ ତେଜରୁ ପାଦ ଅଙ୍ଗୁଳିମାନ, ବସୁମାନଙ୍କ ତେଜରୁ ହସ୍ତ ଅଙ୍ଗୁଳି, କୁବେରଙ୍କଠାରୁ ନାସିକା, ପ୍ରଜାପତିଙ୍କଠାରୁ ଦନ୍ତ ସମୂହ, ଅଗ୍ନିଙ୍କଠାରୁ ତ୍ରିନେତ୍ର ଏବଂ ବାୟୁଙ୍କଠାରୁ କର୍ଣ୍ଣ ଲାଭ କରି ସମସ୍ତ ଦେବତାଙ୍କ ତେଜରେ କଲ୍ୟାଣମୟୀ ଦୁର୍ଗା ଆବିର୍ଭୂତା ହେଲେ ।**

ଭଗବାନ ଶଙ୍କର ଶୂଳ, ବିଷ୍ଣୁ ଚକ୍ର, ବରୁଣ ଶଙ୍ଖ, ଅଗ୍ନି ଶକ୍ତି, ବାୟୁ ଧନୁ ଓ ବାଣ, ଇନ୍ଦ୍ର ବଜ୍ର ଓ ଐରାବତ ଗଳାସ୍ଥିତ ଘଣ୍ଟ ଦେବୀଙ୍କୁ ପ୍ରଦାନ କଲେ । ଯମରାଜ କାଳଦଣ୍ଡ, ବରୁଣ ପାଶ, ପ୍ରଜାପତି ସ୍ଫଟିକମାଳା ତଥା ବ୍ରହ୍ମା କମଣ୍ଡଳୁ ଦେଲେ । ସୂର୍ଯ୍ୟ ନିଜର କିରଣ ଓ ତେଜ, କାଳ ଢାଲ ଓ ତରବାରୀ, କ୍ଷୀର ସମୁଦ୍ର ଉଜ୍ଜ୍ୱଳ ହାର ଓ ଦିବ୍ୟ ବସ୍ତ୍ର, ଅର୍ଦ୍ଧଚନ୍ଦ୍ର, କେୟୁର, ନୂପୁର, ସୁନ୍ଦରହାର ଓ ମୁଦି ପ୍ରଦାନ କଲେ । ହିମାଳୟ ସିଂହ ବାହନ, ନାଗରାଜ ନାଗହାର ଓ ଅନ୍ୟ ଦେବତାମାନେ ବହୁ ଅସ୍ତ୍ରଶସ୍ତ୍ର ପ୍ରଦାନ କଲେ ।

ଏ ସମସ୍ତ ଦ୍ରବ୍ୟ ଲାଭ କରି ଦେବୀ କାତ୍ୟାୟନୀ ନାମ ଧାରଣ କରି ବାରମ୍ବାର ଅଟ୍ଟହାସ୍ୟପୂର୍ବକ ଉଚ୍ଚସ୍ୱରରେ ଗର୍ଜ୍ଜନ କଲେ । ସେ ସେହିକାଳରୁ ଧ୍ୱଂସକାରିଣୀ ଶକ୍ତିରେ ପରିବର୍ତ୍ତିତ ହୋଇ ଦ୍ୱିଭୂଜାଠାରୁ ଅଷ୍ଟଭୂଜା ରୂପ ଧାରଣ କରି କାମ-କ୍ରୋଧ-ମୋହ-ଲୋଭ-ଗର୍ବ ଆସୁରିକ ପ୍ରବୃତ୍ତିର ପ୍ରତୀକ ମହିଷାସୁରକୁ ନିଧନ କଲେ । ତେଣୁ **ଦୁଷ୍ଟ ଦାନବ ଓ ଅନ୍ୟାୟର ନିଧନ ପାଇଁ ସମସ୍ତ ଦୈବୀଶକ୍ତିର ପୁଞ୍ଜିଭୂତ ସ୍ୱରୂପ ହେଉଛନ୍ତି ମା’ ଦୁର୍ଗା ।**

ଶାକ୍ତ ଓ ଶକ୍ତି ଉପାସନା ଉତ୍କଳୀୟ ସଂସ୍କୃତିରେ ପ୍ରତିଷ୍ଠିତ ହେବା ପରେ ଦେବୀମାନଙ୍କ ମଧ୍ୟରେ ବିଭିନ୍ନ ବିଭାଗ ସୃଷ୍ଟି ହେଲା, ଯଥା- ତ୍ରିଶକ୍ତି, ଷଣ୍ମାତୃକା, ସପ୍ତମାତୃକା, ଅଷ୍ଟମାତୃକା, ଅଷ୍ଟଚଣ୍ଡୀ, ନବକନ୍ୟା, ଦଶ ମହାବିଦ୍ୟା, ଷୋଡ଼ଶ ମାତୃକା, ଅଷ୍ଟାଦଶ ମାତୃକା, ଚତୁଃଷଷ୍ଠୀ ଯୋଗିନୀ ଇତ୍ୟାଦି ।

ପୁରାଣ ଏବଂ ଉପପୁରାଣମାନ ଶକ୍ତିଙ୍କର ଗୌରବ ବର୍ଣ୍ଣନା କରି ତାଙ୍କୁ ସୃଷ୍ଟିକାରିଣୀ, ରକ୍ଷାକାରିଣୀ, ଓ ଧ୍ୱଂସକାରିଣୀ ଭାବେ ଉପସ୍ଥାପିତ କରିଅଛନ୍ତି । କାଳିକା ପୁରାଣ କହେ - ଭାରତରେ ଥିବା ୪ଟି ମୁଖ୍ୟ ଶକ୍ତିପୀଠ ମଧ୍ୟରୁ ଉଡ୍ରଦେଶ ପ୍ରଥମ ଏବଂ ଏହାର ଶକ୍ତି କାତ୍ୟାୟନୀ ।

‘ଓଡ୍ରାଖ୍ୟଂ ପ୍ରଥମଂ ପୀଠଂ ଦ୍ୱିତୀୟଂ ଜାଳଶୈଳଜମ୍
ତୃତୀୟଂ ପୂର୍ଣ୍ଣପୀଠଂ ତୁ କାମରୂପଂ ଚତୁର୍ଥକମ୍ ।
ଉଡ୍ରପୀଠଂ ପଶ୍ଚିମେ ତୁ ତଥୈବ୍ରାକ୍ରେଶ୍ୱରୀଂ ଶିବାମ୍
କାତ୍ୟାୟନୀଂ ଜଗନ୍ନାଥମୋଡ୍ରେଶଂ ଚ ପ୍ରପୂଜୟେତ୍ ।’

ତନ୍ତ୍ରପୀଠମାନଙ୍କ ମଧ୍ୟରେ ଶ୍ରେଷ୍ଠ ଉଡ୍ଡୀୟାନ ଏବଂ ଏହାର ପରିସୀମା ବୈତରଣୀ ନଦୀ ତୀର ଦେଶରୁ ମହେନ୍ଦ୍ରଗିରି ପର୍ଯ୍ୟନ୍ତ । ପୁରାଣରେ ବର୍ଣ୍ଣନା ଅଛି - ଏକଦା ସତୀ ଅନିମନ୍ତ୍ରିତ ଭାବେ ପିତୃକୃତ ଯଜ୍ଞସ୍ଥଳରେ ପହଞ୍ଚି, ତାଙ୍କ ପ୍ରତି ପିତାଙ୍କ ଅଶ୍ରଦ୍ଧା ଏବଂ ସ୍ୱପତିଙ୍କ ପ୍ରତି ଅବଜ୍ଞା ସହି ନପାରି ଯଜ୍ଞକୁଣ୍ଡରେ ଆତ୍ମ ବିସର୍ଜନ କଲେ । ଶିବ ମହା ରୌଦ୍ରରୂପ ଧାରଣ କରି ପତ୍ନୀ ସତୀଙ୍କ ଅର୍ଦ୍ଧଦଗ୍ଧ ଶରୀରକୁ କାନ୍ଧରେ ବହନ କରି ପୃଥିବୀ ଭ୍ରମଣ କଲେ । **ସତୀଙ୍କର ଭିନ୍ନ ଭିନ୍ନ ଅଙ୍ଗ ଯେଉଁଠାରେ ପଡ଼ିଲା ସେଠାରେ ଗୋଟିଏ ଗୋଟିଏ ତନ୍ତ୍ର ଓ ଶାକ୍ତ ପୀଠ ସୃଷ୍ଟି ହେଲା । ସେହି କ୍ରମରେ ବିରଜା ନାଭିକ୍ଷେତ୍ର । ବିମଳାଙ୍କ କ୍ଷେତ୍ରକୁ କେହି କେହି ପାଦପୀଠ, ଜିହ୍ୱା ପୀଠ ବା ଶବ ପୀଠ ଭାବରେ ଉପସ୍ଥାପନ କରନ୍ତି ।**

ବୈତରଣୀ ନଦୀ ତଥା ବିରଜା କ୍ଷେତ୍ର ଏକ ଶକ୍ତି କ୍ଷେତ୍ର ହୋଇଥିବା କଥା ମହାଭାରତର ବନପର୍ବରେ ଲୋମଶ ମୁନିଙ୍କର ଯୁଧିଷ୍ଠିରଙ୍କୁ ଦେଇଥିବା ପରାମର୍ଶରୁ ଜଣାପଡ଼େ- 'ଏତେ କଳିଙ୍ଗାଃ କୌନ୍ତେୟ ତତ୍ର ବୈତରଣୀ ନଦୀ' । ପୁନଶ୍ଚ- 'ତତୌ ବୈତରଣ୍ୟାଂ ଗଚ୍ଛେତ୍ ସର୍ବପାପ ପ୍ରମୋଚନୀମ୍, ବିରଜାତୀର୍ଥମାସାଦ୍ୟ ବିରାଜିତ ଯଥା- ଶଶୀ ।' ତେବେ ବୈତରଣୀ ନଦୀ ତଟରେ ଆରାଧିତା ମା' ବିରଜାଙ୍କୁ ପ୍ରଥମେ ପୃଥିବୀ ଦେବୀ ଭାବରେ ପୂଜା କରାଯାଉଥିବା କଥା ସଂସ୍କୃତ ମହାଭାରତରୁ ଜଣାପଡ଼େ । ବିଷ୍ଣୁ ପୁରାଣର ଗୟାସୁର ଉପାଖ୍ୟାନ ଅନୁସାରେ ଏ ସ୍ଥାନର ନାମ ନାଭିଗୟା, କୁବଜିକାତନ୍ତ୍ର, ଜ୍ଞାନାର୍ଣ୍ଣବତନ୍ତ୍ର, ବୃହନୀଳତନ୍ତ୍ର । ଏହାକୁ ଏକ ଶକ୍ତିପୀଠର ମାନ୍ୟତା ଦିଆଯାଇଛି । ବିରଜା ଦ୍ୱିଭୁଜା ଦୁର୍ଗା, ସିଂହବାହିନୀ ଓ ବାମ ହସ୍ତରେ ମହିଷକୁ ଧରି ଦକ୍ଷିଣ ହସ୍ତରେ ଶୁଳଭେଦ କରିଛନ୍ତି । ତେଣୁ ପ୍ରତିମା କଳ୍ପନା 'ଶ୍ରୀଚଣ୍ଡୀଙ୍କର ସମସାମୟିକ ବା ପରବର୍ତ୍ତୀ । ଶୈବ, ଶାକ୍ତ, ବୌଦ୍ଧ ମିଳିତ ଉପାସନା ବିଧିରେ ମା' ପୂଜିତା ।

ଶାକ୍ତ ଓ ବୈଷ୍ଣବ ପରମ୍ପରାର ସମନ୍ୱୟ ଶ୍ରୀକ୍ଷେତ୍ରର ବୈଶିଷ୍ଟ୍ୟ । ଶାରଦୀୟ ଦୁର୍ଗୋତ୍ସବରେ ଦୁର୍ଗା ମାଧବ ଉପାସନା, ଏକ ସ୍ୱତନ୍ତ୍ର ପରିକଳ୍ପନା ।

କାଳିକା ପୁରାଣ କହେ - ମହାଶକ୍ତିଙ୍କର ପ୍ରଥମ ପୀଠ ଉଡ୍ରପୀଠ (ଓଡ଼ିଶା), ଏହାର ପ୍ରତିଷ୍ଠିତ ଶିବା କାତ୍ୟାୟନୀ (ବିମଳା) ଓ ପୀଠାଧିଶ୍ୱର ଓଡ୍ରେଶ ଜଗନ୍ନାଥ । 'ବିମଳା ସା ମହାଦେବୀ ଜଗନ୍ନାଥସ୍ତୁ ଭୈରବଃ' । ଶାକ୍ତ ଓ ବୈଷ୍ଣବ ପରମ୍ପରାର ସମନ୍ୱୟ ଶ୍ରୀକ୍ଷେତ୍ରର ବୈଶିଷ୍ଟ୍ୟ । ଶାରଦୀୟ ଦୁର୍ଗୋତ୍ସବରେ ଦୁର୍ଗା ମାଧବ ଉପାସନା, ଏକ ସ୍ୱତନ୍ତ୍ର ପରିକଳ୍ପନା । ସମଗ୍ର ଭାରତବର୍ଷରେ ଏହା ଏକ ଅଦ୍ଭୁତ ବ୍ୟତିକ୍ରମ । 'କୈବଲ୍ୟ ଭୋଜିନୀ ଦେବୀ ବିମଳା ବିମଳପ୍ରଦାଂ' । ବିମଳା ପଦ୍ମାସନା ମଣି ବିଗ୍ରହ, ଚତୁର୍ହସ୍ତା କିନ୍ତୁ ମହିଷାମର୍ଦ୍ଦିନୀ ନୁହନ୍ତି । ତେଣୁ ପ୍ରତିମା କଳ୍ପନା ଶ୍ରୀଚଣ୍ଡୀଙ୍କର ସମସାମୟିକ ବା ପୂର୍ବବର୍ତ୍ତୀ । ବିମଳାଙ୍କର ବର୍ଣ୍ଣନା ଦେବୀ ଭାଗବତ, କାଳୀକା ପୁରାଣ, ଶ୍ରୀଦୁର୍ଗା ସପ୍ତଶତୀରେ ଦେଖିବାକୁ ମିଳେ ।

ପୁରାଣ ବର୍ଣ୍ଣିତ ରୂପର ଆଧାରରେ ଓଡ଼ିଶାରେ ପ୍ରସ୍ତର ନିର୍ମିତ ମହିଷା ମର୍ଦ୍ଦିନୀ ପ୍ରତିମା ନିର୍ମାଣ ଓ ପୂଜନ ଗୁପ୍ତଯୁଗରୁ ଆରମ୍ଭ ହୋଇଥିବା ଗବେଷକମାନଙ୍କ ମତ । ଓଡ଼ିଶାର ବହୁ ସ୍ଥାନରେ ଦ୍ୱିଭୁଜା, ଚତୁର୍ଭୁଜା, ଷଡ଼ଭୁଜା, ଅଷ୍ଟଭୁଜା, ଦଶଭୁଜା ଓ ଦ୍ୱାଦଶଭୁଜା ଦୁର୍ଗା ପୂଜିତା, ବିରଜା, କାକଟପୁର ନିକଟସ୍ଥ ସୋମେଶ୍ୱର ମନ୍ଦିରରେ ଥିବା ଦୁର୍ଗା ଦ୍ୱିଭୁଜା । ବିମଳା, ମଙ୍ଗଳା, ଭଦ୍ରକାଳୀ, ସୋମବଂଶ କାଳରୁ ସ୍ଥାପିତା କଟକଚଣ୍ଡୀ ଓ ଗୃହେ ଗୃହେ ପୂଜିତା ଜୟଦୁର୍ଗା ଚତୁର୍ଭୁଜା । ସପ୍ତମ ଶତାବ୍ଦୀରେ ଓଡ଼ିଶାର ମନ୍ଦିରମାନଙ୍କରେ ସ୍ଥାପିତା ଦ୍ୱାରବାସିନୀ, ମୁଖଶାଳାବାସିନୀ ଓ ପାର୍ଶ୍ୱଦେବୀମାନେ ଷଡ଼ଭୁଜା । ଶାରଳା ଓ ପ୍ରାଚୀନ ବ୍ରାହ୍ମଣ ଶାସନରେ ପୂଜିତା କନକ ଦୁର୍ଗା, ହରଚଣ୍ଡୀ ଅଷ୍ଟଭୁଜା । ଅଡ଼ଶପୁର, ଲତାହରଣ, ନିବାରଣ ଗ୍ରାମରେ ଗଙ୍ଗ ଯୁଗରେ ପ୍ରତିଷ୍ଠିତା ଦୁର୍ଗା ଦଶଭୁଜା । ପ୍ରାଚୀ ନଦୀ ତୀରବର୍ତ୍ତୀ ଅମଣାକୁଦରେ ବାରଭୁଜା ଦେବୀ ପୂଜା ପାଉଅଛନ୍ତି । ଏତଦ୍‌ବ୍ୟତୀତ ଓଡ଼ିଶାର ବିଶିଷ୍ଟ ଶକ୍ତିପୀଠ ରୂପେ ଗଞ୍ଜାମ ପୁରୁଷୋତ୍ତମପୁରର ତାରାତାରିଣୀ, ଭଦ୍ରକର ଭଦ୍ରକାଳୀ, ସମ୍ବଲପୁରର ସମଲେଶ୍ୱରୀ, ଭବାନୀପାଟଣାର ମାଣିକେଶ୍ୱରୀ, ଘଟଗାଁର ତାରିଣୀ, ବାଙ୍କୀର ଚର୍ଚ୍ଚିକା, ବାଣପୁରର ଭଗବତୀ, କୋଣାର୍କର ରାମଚଣ୍ଡୀ ଓ ଖଲିକୋଟର ନାରାୟଣୀ ବିଖ୍ୟାତ ।

ଓଡ଼ିଶାରେ ଶାରଦୀୟ ଦୁର୍ଗାପୂଜା ଏକ ସାର୍ବଜନୀନ ଗଣପର୍ବ । ଦେବୀ ପୀଠମାନଙ୍କରେ ଆଶ୍ୱିନ କୃଷ୍ଣପକ୍ଷ ଅଷ୍ଟମୀଠାରୁ ଶୁକ୍ଳପକ୍ଷ ନବମୀ ପର୍ଯ୍ୟନ୍ତ ଶ୍ରଦ୍ଧା, ଭକ୍ତି ଓ ନିଷ୍ଠାର ସହ ଷୋହଳ ଦିନବ୍ୟାପୀ ପୂଜା ଅନୁଷ୍ଠିତ ହୁଏ । ମୃଣ୍ମୟୀ ଦୁର୍ଗା ପ୍ରତିମା ପୂଜା ମହାସପ୍ତମୀଠାରୁ ଦଶହରା ପର୍ଯ୍ୟନ୍ତ ମହାସମାରୋହରେ ଅନୁଷ୍ଠିତ ହୋଇ ଏକାଦଶୀ ଦିନ ଦେବୀଙ୍କୁ ଜଳମଧ୍ୟରେ ବିସର୍ଜନ କରାଯାଏ । କଟକର ଦୁର୍ଗାଯାତ୍ରା ଓ ପୁରୀର ଗୋଷାଣୀ ଯାତ୍ରା ଓଡ଼ିଶା ପ୍ରସିଦ୍ଧ ।

ଦୁର୍ଗାପୂଜା ସମୟରେ ଦଶହରା ଏକ ଗୁରୁତ୍ୱପୂର୍ଣ୍ଣ ପର୍ବ । ପଞ୍ଚ ଜ୍ଞାନେନ୍ଦ୍ରିୟ ଓ ପଞ୍ଚ କର୍ମେନ୍ଦ୍ରିୟଦ୍ୱାରା କୃତ ଦଶପାପ ଏଥିରେ ହରଣ ହୋଇଯାଏ । ଦୁର୍ଗାଙ୍କୁ ପୂଜା କରି ଆମ ଭିତରେ ଥିବା ଅବିଦ୍ୟା ଓ ଅସୁର ପ୍ରବୃତ୍ତିକୁ ଆମେ ଜୟ କରିପାରୁ । ଦୁର୍ଗା ମାତୃରୂପିଣୀ, ବିଶ୍ୱଜନନୀ, ସନ୍ତାନବତ୍ସଳା, ସର୍ବମଙ୍ଗଳା । ସେ ଆମର ହୃଦୟ ରୂପକ ଦୁର୍ଗରେ ଆସୀନ ହୋଇ ଅସତ୍ୟ, ଅଜ୍ଞାନ ଓ ଅନ୍ୟାୟରୂପୀ ଦୁର୍ଗତିକୁ ବିନାଶ କରନ୍ତି । ଶାରଦୀୟ ଦଶହରାର ବିଜୟ ପର୍ବରେ ମା' ଦୁର୍ଗତିନାଶିନୀଙ୍କୁ ଶତ ଶତ ପ୍ରଣାମ ।

'ତାଂ ଦୁର୍ଗାଂ ଦୁର୍ଗମାଂ ଦେବୀଂ ଦୁରାଚାରବିଘାତିନୀମ୍,
ନମାମି ଭବଭୀତୋଽହଂ ସଂସାରାର୍ଣ୍ଣବତାରିଣୀମ୍ ।'

ପ୍ରତିହାରୀ ଲେନ୍
ମାଟିମଣ୍ଡପ ସାହି, ପୁରୀ

# ଶ୍ରୀଦୁର୍ଗା ପୂଜା

ପରୀକ୍ଷିତ ମିଶ୍ର

ଶରଣାଗତ ଦୀନାର୍ତ୍ତ ପରିତ୍ରାଣ ପରାୟଣେ
ସର୍ବସ୍ୟାର୍ତ୍ତ ହରେ ଦେବୀ ନାରାୟଣୀ ନମସ୍ତୁତେ

**ବି**ଶ୍ୱାସ ଆଧାରିତ ଆମ ଧର୍ମ ସଂସ୍କୃତିରେ ମାତୃପୂଜା ଦେବୀପୂଜା ବା ଶକ୍ତିପୂଜା ଅଗ୍ରାଧିକାର ପ୍ରାପ୍ତ । ଶିବଶିବା, ପ୍ରକୃତି ପୁରୁଷ ଏକ ଏବଂ ଅଭିନ୍ନ । ଜଣକ ବ୍ୟତିରେକେ ଅନ୍ୟ ଜଣେ ଅସମ୍ପୂର୍ଣ୍ଣ, ଅକଳ୍ପନୀୟ । ତଦ୍ରୁପ ମହାଦୁର୍ଗା, ମହାଲକ୍ଷ୍ମୀ ଏବଂ ମହାସରସ୍ୱତୀ ଭିନ୍ନ ରୂପରେ ଏକ ମହାଶକ୍ତି । ତ୍ରିଗୁଣାତ୍ମକ ମହାଦେବୀଗଣ ଯେଉଁମାନଙ୍କ ମଧ୍ୟରେ ମହାକାଳୀ ଅବିଚ୍ଛେଦ୍ୟ, ଗୁଣାତୀତ ଯେପରି ସୃଷ୍ଟି ସ୍ଥିତି ପ୍ରଳୟର ବିଧାତା ଶ୍ରୀବିଷ୍ଣୁ, ଶ୍ରୀବ୍ରହ୍ମା ଏବଂ ଶ୍ରୀଶିବ । ସଂସାରରେ ସଂଘଟିତ ସବୁକିଛି କାର୍ଯ୍ୟ ସେମାନଙ୍କ ମାୟାର ଅଧୀନସ୍ଥ । ସଙ୍କଟହାରିଣୀ, ଦୁର୍ଗତିନାଶିନୀ ମହାଦୁର୍ଗା ହେଉଛନ୍ତି ମହାମାୟୀ । ମାୟାର ରହସ୍ୟଭେଦ କରିବା ନଶ୍ୱର ମାନବ ପକ୍ଷେ ବସ୍ତୁତଃ ଅସମ୍ଭବ । ତେଣୁ ସେ ଯେତେ ବିଦ୍ୱାନ, ଯେତେ ଶକ୍ତିଶାଳୀ ହେଉନା କାହିଁକି ଚତୁର୍ବର୍ଗ ଫଳପ୍ରାପ୍ତି ପାଇଁ ମାତାଙ୍କ ଶ୍ରୀଚରଣରେ ଶରଣାପନ୍ନ । କାଳାତୀତ ଦେବୀଶକ୍ତି ଆସୁରିକ ଶକ୍ତି ବିନାଶ ନିମନ୍ତେ ଅରୂପରୁ ରୂପ ଧାରଣ କରି ଧରାପୃଷ୍ଠରେ ଅବତୀର୍ଣ୍ଣ ହୁଅନ୍ତି । ହିଂସାକୁ ହିଂସାରେ ଦମନ କରନ୍ତି । ଶାନ୍ତି ବିରାଜମାନ କରେ । ଏହି ତତ୍ତ୍ୱ ସାରଗର୍ଭକ ଏବଂ ଶିକ୍ଷଣୀୟ । ସଂଗ୍ରାମର ଅନ୍ତ ଘଟେନି । ତ୍ରିଦେବଙ୍କ ମଧ୍ୟରୁ ଜଣକଠାରୁ କୃପାବର ପ୍ରାପ୍ତ କରି ବଳବାନ ଶକ୍ତିଶାଳୀ ହୋଇଯାଏ । ସଂସାରରେ ବିଭତ୍ସକାଣ୍ଡମାନ ଘଟାଏ । ଅନ୍ତକୁ ଆଶୀର୍ବାଦ ଅଭିଶାପରେ ରୂପାନ୍ତରିତ ହୁଏ । ସେ ଦୟନୀୟ ଭାବେ ମୃତ୍ୟୁବରଣ କରେ ବା ଦୈବୀ ଶକ୍ତିରେ ନିହତ ହେବା ଯୋଗୁଁ ମୋକ୍ଷ ଲାଭ କରେ ଯାହା ଯୁଗ ଯୁଗ ଧରି ତପସ୍ୟାରତ ଯୋଗୀ ମୁନି ଓ ସାଧକଙ୍କ ପାଇଁ ଦୁଷ୍ପ୍ରାପ୍ୟ ହୋଇଥାଏ ।



ଶାରଦୀୟ ଦୁର୍ଗୋତ୍ସବରେ ଜଗତ କଲ୍ୟାଣ ନିମନ୍ତେ ମହାଦେବୀଙ୍କୁ ଭକ୍ତିପୂତ ସ୍ତୁତି କରାଯାଏ :

ସର୍ବମଙ୍ଗଳ ମାଙ୍ଗଲ୍ୟେ ଶିବେ ସର୍ବାର୍ଥ ସାଧିକେ
ଶରଣ୍ୟେ ତ୍ର୍ୟମ୍ବକେ ଗୌରୀ ନାରାୟଣୀ ନମସ୍ତୁତେ ।

ଦେବ ଦାନବ ସଂଗ୍ରାମର ପୃଷ୍ଠଭୂମିରେ ଗୁରୁତର କାରଣମାନ ଅନ୍ତର୍ନିହିତ ଥାଏ ।

ପୂର୍ବକାଳରେ ଚନ୍ଦ୍ରବଂଶୀୟ ରାଜା ସୁରଥ ସମଗ୍ର ଭୂଭାଗର ସାର୍ବଭୌମ ଅଧିକାରୀ ଥିଲେ । ପ୍ରଜାମାନେ ସୁଖଶାନ୍ତିରେ କାଳାତିପାତ କରୁଥିଲେ । କଠୋର ଦଣ୍ଡନୀତି ବଳରେ ରାଜ୍ୟ ଶାସନ କରାଯାଉଥିଲା । ସଂଖ୍ୟାଲଘୁ କ୍ଷତ୍ରୀୟମାନେ ରାଜା ସୁରଥଙ୍କୁ ଯୁଦ୍ଧରେ ପରାସ୍ତ କଲେ । ରାଜ୍ୟ ଏବଂ ବିଭବ ହରାଇ ସେ ଘୋର ବନସ୍ତରେ ମୁନିଶ୍ରେଷ୍ଠ ମେଧାଙ୍କ ଆଶ୍ରମରେ କିଛି ଦିନ ଅବସ୍ଥାନ କଲେ । ସେଠାରେ ପତ୍ନୀ ଏବଂ ପୁତ୍ରଙ୍କଦ୍ୱାରା ପ୍ରତାରିତ ଜଣେ ବୈଶ୍ୟଙ୍କ ସହିତ ସଂଯୋଗକୁ ସାକ୍ଷାତ ହେଲା । ରାଜା ନିଜ ରାଜ୍ୟ ଓ ପରିବାର ପ୍ରତି ଏବଂ ବୈଶ୍ୟ ପରିବାର ଓ ପ୍ରାଚୁର୍ଯ୍ୟ ପ୍ରତି ମୋହଗ୍ରସ୍ତ ଥିଲେ । ଉଭୟ ଦୁଃଖରେ ଥିବାରୁ ମେଧାମୁନିଙ୍କୁ ସାକ୍ଷାତ କରି ଏହାର କାରଣ ପଚାରିଲେ । ଋଷି ମନୁଷ୍ୟ, ପଶୁ, ପକ୍ଷୀ ମୃଗ ଆଦିଙ୍କର ଜ୍ଞାନ ବୁଦ୍ଧିର ଉଦାହରଣ ଦେଇ ମଣିଷ ଭଗବତୀ ମହାମାୟୀଙ୍କ ଇଚ୍ଛାରୁ ଏପରି ଜନ୍ମମରଣ ଚକ୍ରରେ ଲୋଭଗ୍ରସ୍ତ ବୋଲି କହିଲେ । ମହାଦେବୀ ନିତ୍ୟ ଓ ଅଜନ୍ମା, ପ୍ରସନ୍ନ ହେଲେ ବରଦାନ କରନ୍ତି । ମାନବ ମୁକ୍ତିଲାଭ କରେ । ଦେବତାମାନଙ୍କର କାର୍ଯ୍ୟସିଦ୍ଧି ନିମନ୍ତେ ସେ ପ୍ରକଟ ହୋଇଥାନ୍ତି । ସେ ହେଉଛନ୍ତି ଜଗଜ୍ଜନନୀ, ସେ ହିଁ ସୃଷ୍ଟି ସ୍ଥିତି ପ୍ରଳୟର କାରଣ । ନାନାବିଧ ଅସ୍ତ୍ରଧାରିଣୀ । ଯୋଗ ନିଦ୍ରାଗତ ଓ ବିଷ୍ଣୁଙ୍କ ଶ୍ରବଣେନ୍ଦ୍ରିୟ ମଳିରୁ ଉତ୍ପନ୍ନ ଭୟଙ୍କର ଅସୁର ମଧୁ ଓ କୈଟଭା ବ୍ରହ୍ମାଙ୍କ ସ୍ତବନରେ ମହାବିଷ୍ଣୁ ଜାଗ୍ରତ ହେଲେ ଏବଂ ଦୈତ୍ୟଦ୍ୱୟ ମୋହଗ୍ରସ୍ତ ହେଲେ ।

ପାଞ୍ଚହଜାର ବର୍ଷର ବାହୁଯୁଦ୍ଧ ଅନ୍ତେ ଭଗବାନ ବିଷ୍ଣୁ ଚକ୍ରଦ୍ୱାରା ଅସୁରଙ୍କ ମସ୍ତକ ଛେଦନ କଲେ ।

ଦେବ ଦାନବଙ୍କ ମଧ୍ୟରେ ଶତବର୍ଷର ସଂଗ୍ରାମରେ ଦେବତାମାନଙ୍କ ନେତୃତ୍ୱ ନେଇଥିଲେ ଦେବରାଜ ଇନ୍ଦ୍ର ଏବଂ ଅସୁରଙ୍କର ମହିଷାସୁର । ଯୁଦ୍ଧରେ ଦେବତାମାନେ ପରାଜିତ ହେଲେ । ଦେବତାମାନେ ପ୍ରଜାପତି ବ୍ରହ୍ମାଙ୍କୁ ଅଗ୍ରଦୂତ ରୂପେ ବରଣ କରି ଭଗବାନ ବିଷ୍ଣୁ ଏବଂ ଶଙ୍କରଙ୍କ ଶରଣାପନ୍ନ ହେଲେ । ସେମାନଙ୍କ ପରାଜୟର କରୁଣ ବୃତ୍ତାନ୍ତ ଶ୍ରବଣ କରି ଭଗବାନ ବିଷ୍ଣୁ ଏବଂ ମହାଦେବ କୋପିତ ହେଲେ । ପ୍ରଥମେ ଶ୍ରୀବିଷ୍ଣୁଙ୍କ ମୁଖରୁ ମହାତେଜ ନିର୍ଗତ ହେଲା । ପରେ ପରେ ବ୍ରହ୍ମା ଶଙ୍କର ଏବଂ ଅନ୍ୟ ଦେବତାଙ୍କ ଶରୀରରୁ ଉଜ୍ଜ୍ୱଳ ତେଜ ବାହାରିଲା । ସମସ୍ତ ତେଜ ଏକାକାର ହୋଇ ଏକ ନାରୀ ରୂପରେ ତିନିଲୋକରେ ପରିବ୍ୟାପ୍ତ ହୋଇଗଲା । ଦେବତାଙ୍କ ତେଜରେ ଏହି ନାରୀଙ୍କ ଅଙ୍ଗପ୍ରତ୍ୟଙ୍ଗ ନିର୍ମିତ ହେଲା । ଏହି ମହାଦେବୀଙ୍କୁ ଶଙ୍କର ନିଜ ଆୟୁଧରୁ ଶୂଳ, ବିଷ୍ଣୁ ଚକ୍ର, ବରୁଣ ଶଙ୍ଖ, ଅଗ୍ନି ଶକ୍ତି, ବାୟୁ ଧନୁଷ ଏବଂ ଶରପୂର୍ଣ୍ଣ ତୂଣୀର ଅର୍ପଣ କଲେ । ଇନ୍ଦ୍ର ବଜ୍ର ଏବଂ ଘଣ୍ଟା ପ୍ରଦାନ କଲେ । ଯମରାଜ କାଳଦଣ୍ଡ, ବରୁଣ ପାଶ, ପ୍ରଜାପତି ସ୍ଫଟିକମାଳା, ବ୍ରହ୍ମା କମଣ୍ଡଳୁ, ସୂର୍ଯ୍ୟ କିରଣ, କାଳ ଢାଲ ଏବଂ ଖଣ୍ଡା ଦେଲେ । କ୍ଷୀର ସମୁଦ୍ର ରତ୍ନ ଆଭୂଷଣମାନ ଦାନ କଲେ । ବିଶ୍ୱକର୍ମା ଫାର୍ଶା, ଅସ୍ତ୍ର ଅଭେଦ୍ୟ କବଚ ଦେଲେ । ସମୁଦ୍ର କମଳ ପୁଷ୍ପ, ହିମାଳୟ ବାହନ ପାଇଁ ସିଂହ, ବିବିଧ ରତ୍ନ ଅର୍ପଣ କଲେ । କୁବେର ମଧୁପୂର୍ଣ୍ଣ ପାନ ପାତ୍ର, ନାଗରାଜ ନାଗହାର ସମର୍ପଣ କଲେ । ମହାଦେବୀ ପ୍ରଚଣ୍ଡ ଗର୍ଜନ କଲେ । ବାହନ ସିଂହ ଘୋର ନାଦ କଲା । ପୃଥିବୀ, ଆକାଶ, ପାତାଳ ପ୍ରକମ୍ପିତ ହେଲା । ଚରାଚର ବିଶ୍ୱବ୍ରହ୍ମାଣ୍ଡ ଥରି ଉଠିଲା । ସମସ୍ତେ ଭୟଭୀତ ହୋଇ ପଡ଼ିଲେ । ମହାଦେବୀ ଅସୁରମାନଙ୍କ ସହିତ ଘୋର ରଣ କଲେ । ଦୈତ୍ୟମାନେ ତୋମର, ଭିନ୍ଦିପାଳ, ଶକ୍ତି, ମୂଷଳ, ଖଡ୍ଗ, ପରଶୁ ଏବଂ ପଟ୍ଟିଶ ପରି ଅସ୍ତ୍ରଶସ୍ତ୍ରରେ ଯୁଦ୍ଧ କରିବା ସହିତ ମହାଦେବୀଙ୍କ ଉପରେ ଶକ୍ତି ପ୍ରହାର କଲେ । ଅତ୍ୟନ୍ତ କ୍ରୋଧାନ୍ୱିତ ପରମେଶ୍ୱରୀ ହସି ହସି ଦାନବଙ୍କ ସମସ୍ତ ଅସ୍ତ୍ରକୁ ଅକାମୀ କରି ଦେଲେ । ଅମ୍ବାଦେବୀଙ୍କ ନିଶ୍ୱାସ ନିଃସୃତ ଶକ୍ତିଶାଳୀ ଗଣମାନେ ପରଶୁ, ଭିନ୍ଦିପାଳ, ଖଡ୍ଗ ଓ ପଟ୍ଟିଶ ପ୍ରୟୋଗ କରି ଆସୁରିକ ଶକ୍ତିକୁ ପ୍ରତିହତ କରିବା ସହିତ ପଟହ, ଶଙ୍ଖ ଏବଂ ମୃଦଙ୍ଗ ବଜାଇଲେ । ମହାଦେବୀ ତ୍ରିଶୂଳ, ଗଦା ଏବଂ ଖଡ୍‌ଗରେ ଦୈତ୍ୟ ସଂହାର କଲେ । ଦୈତ୍ୟମାନଙ୍କ ବକ୍ଷସ୍ଥଳ ବିଦୀର୍ଣ୍ଣ ହେଲା । କେତେକ ରକ୍ତ ବାନ୍ତି କଲେ । ଅନ୍ୟ କେତେକ ଅଙ୍ଗପ୍ରତ୍ୟଙ୍ଗ ହରାଇଲେ । ଅସୁର, ହସ୍ତୀ ଏବଂ ଅଶ୍ୱଙ୍କ ରୁଧିରରେ ନଦୀ ପ୍ରବାହିତ ହେଲା ।

ରକ୍ତ ରେଶମୀ ଶାଢ଼ୀ ପରିହିତା, ଗଳା ମୁଣ୍ଡମାଳା ଶୋଭିତା, ସ୍ତନଦ୍ୱୟ ରକ୍ତ ଚନ୍ଦନ ଲେପିତା, କରକମଳରେ ଜପମାଳା, ବିଦ୍ୟା, ଅଭୟଧାରିଣୀ ରତ୍ନମୟ କିରୀଟ ବିଭୂଷିତା, ଦେବୀ ଜଗଦମ୍ବା ଅନନ୍ୟ ସୌନ୍ଦର୍ଯ୍ୟମୟୀ ପରିଦୃଷ୍ଟ ହେଉଥିଲେ । ଅସୁର ସୈନ୍ୟ ଦେବୀଙ୍କଦ୍ୱାରା ନିପାତ ହେଉଥିବାରୁ ପ୍ରତିଶୋଧ ପରାୟଣ ହୋଇ ମହାକ୍ରୋଧର ମହାଦୈତ୍ୟ ସେନାପତି ଚକ୍ଷୁର ଜଗନ୍ମାତାଙ୍କୁ ଆକ୍ରମଣ କଲା । ପରିଣାମତଃ ଦଳବଳ ସହିତ ପ୍ରାଣ ହରାଇଲା ଭଗବତୀଙ୍କ ଶୂଳ ପ୍ରତି ପ୍ରହାରରେ । ଚାମରହସ୍ତୀ ଆରୋହଣ କରି ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହେଲା ସ୍ୱୟଂ ମହିଷାସୁର । ଦେବୀଙ୍କ ସିଂହ ଏବଂ ଚାମର ହସ୍ତୀ ମଧ୍ୟରେ ଘୋର ଯୁଦ୍ଧରେ ଚାମର ନିହତ ହେଲା । ମହାଦେବୀଙ୍କ ତ୍ରିଶୂଳ ଆଘାତରେ ଉଗ୍ରାସ୍ୟ, ଉଗ୍ରବୀର୍ଯ୍ୟ ଏବଂ ମହାହନୁ ଦୈତ୍ୟ ମୃତ ହେଲେ । ବିଶାଳ, ଦୁର୍ଧର ଏବଂ ଦୁର୍ମୁଖ ଯମପୁର ଗମନ କଲେ । ମହିଷାସୁର ମଇଁଷି ରୂପ ଧାରଣ କରି ଗଣ ସେନାଙ୍କୁ ପରାଜିତ କଲା । ପୃଥିବୀ ଆକାଶ ଥରହର ହେଲେ । ମାୟାବଳରେ ମହାଦୈତ୍ୟ ବିଭିନ୍ନ ରୂପରେ ଜଗନ୍ମାତା ଚଣ୍ଡିକାଙ୍କ ସହିତ ରଣ କଲା । ସିଂହାରୂଢ଼ା ଉଗ୍ରରୂପା ମହାଦେବୀ ଏକ ଦୀର୍ଘ ଖଡ୍‌ଗରେ ମହିଷାସୁରର ଶିରଛେଦନ କଲେ । ଦେବ, ଗନ୍ଧର୍ବ ଏବଂ ମହର୍ଷିମାନେ ମହାଦୁର୍ଗାଙ୍କ ସ୍ତୁତିଗାନ କଲେ । ଆନନ୍ଦବିଭୋରା ଅପସରାମାନେ ନୃତ୍ୟ କଲେ । କ୍ରମାନ୍ୱୟରେ ମହାମାୟୀ ଧୂମ୍ରଲୋଚନ, ଚଣ୍ଡମୁଣ୍ଡ, ରକ୍ତବୀଜ, ଶୁମ୍ଭ ନିଶୁମ୍ଭ ଦୈତ୍ୟମାନଙ୍କୁ ବଧ କଲେ । ଦେବତାମାନଙ୍କୁ, ରାଜା ସୁରଥଙ୍କୁ ଏବଂ ବୈଶ୍ୟଙ୍କୁ ବରଦାନ ଦେଲେ ।

ସର୍ବସ୍ୱରୂପେ ସର୍ବେଶେ ସର୍ବଶକ୍ତି ସମନ୍ୱିତେ<br>
ଭୟେଭ୍ୟସ୍ତ୍ରାହିନୋ ଦେବୀ ଦୁର୍ଗେ ଦେବୀ ନମସ୍ତୁତେ ।

ତ୍ରିପୁରାସୁର ବଧ କରିବା ପରେ ଯେତେବେଳେ ମହେଶ୍ୱର ଶିବ ତା' ଶବ ଉପରେ ଉଗ୍ର ତାଣ୍ଡବ ନୃତ୍ୟ କଲେ, ବ୍ରହ୍ମାଣ୍ଡ ବ୍ୟାପି ଗଲା । ପରମସାଧ୍ୱୀ ଆଦିମାତା ତେଜ ବା ଆଲୋକ କନ୍ୟା ରୂପରେ ଦର୍ଶନ ଦେଇ ମହାଦେବଙ୍କ କୋପ ଶାନ୍ତ କରିଥିଲେ । ପୁନଶ୍ଚ ତ୍ରିଜଗତଧାତ୍ରୀ ଦକ୍ଷକନ୍ୟା ସତୀ ନାମରେ ଖ୍ୟାତ ହେଲେ । ଚନ୍ଦ୍ରଶେଖର ଶିବଙ୍କୁ ପତି ରୂପେ ବରଣ କରି ପୂର୍ବ ପ୍ରତିଶ୍ରୁତି ପାଳନ କଲେ । ଦକ୍ଷ ଯଜ୍ଞରେ ପତିଙ୍କ ଅପଯଶ ସହ୍ୟ କରିନପାରି ଯଜ୍ଞକୁଣ୍ଡରେ ଝାସ ଦେଲେ । ମହତ ଉଦ୍ଦେଶ୍ୟରେ ଆଦ୍ୟାଶକ୍ତି ଭବାନୀଙ୍କର ଆବିର୍ଭାବ ହୋଇଥାଏ । ସଂସାରର କଲ୍ୟାଣ ସାଧନ ପାଇଁ, ଦୁଷ୍ଟ ଶକ୍ତିର ପରାହତ ପାଇଁ, ପାପଶକ୍ତିର ବିନାଶ ପାଇଁ ମହାଦେବୀ ଅବତାର ନେଇଥାନ୍ତି । ସେହି ପରମ କାରୁଣିକ ମା'ଙ୍କ ଶ୍ରୀଚରଣରେ ସହସ୍ରକୋଟି ପ୍ରଣିପାତ ।

**ସହାୟକ ଗ୍ରନ୍ଥ**


୧. ଶ୍ରୀଦୁର୍ଗା ସପ୍ତଶତୀ

୨. ବୃହଦ୍ ଶିବପୁରାଣ



ରାଜେନ୍ଦ୍ର ନଗର<br>
କଟକ


- - -

# ପୁରାଣରେ ଶକ୍ତିତତ୍ତ୍ୱ : ଏକ ଅନୁଶୀଳନ

ଲୋକନାଥ ପୃଷ୍ଟି

ବାଗାର୍ଥଂ ଶିବ ସମ୍ପୃକ୍ତୌ ବାଗାର୍ଥ ପ୍ରତିପତ୍ତୟେ
ଜଗତ ପିତରୌ ବନ୍ଦେ ପାର୍ବତୀ ପରମେଶ୍ୱରୌ ।

**ସ**ର୍ବପ୍ରଥମେ ପାର୍ବତୀ ପରମେଶ୍ୱରଙ୍କୁ ପ୍ରଣାମ କରି ପୁରାଣରେ 'ଶକ୍ତିତତ୍ତ୍ୱ-ଏକ ଅନୁଶୀଳନ' ପ୍ରକାଶ କରୁଛି । ଶକ୍ତି ଓ ଶକ୍ତିମାନ ପ୍ରେମ ଓ ଆନନ୍ଦର ସ୍ୱରୂପ । ସତ୍‌ଚିତ ଆନନ୍ଦର ଅଧିକାରୀ । ଜୀବ ଓ ଆତ୍ମାର ସର୍ବମୟ କର୍ତ୍ତାରୂପେ ବିଦ୍ୟମାନ । ଜଣେ ସିଦ୍ଧ ସାଧକ ଆନ୍ତରିକ ପ୍ରେମ ଓ ଭକ୍ତି ବଳରେ ସେ ଦୈବୀ ଶକ୍ତିର କରୁଣା ଲାଭ କରି ଲକ୍ଷ୍ୟସ୍ଥଳରେ ପହଞ୍ଚିପାରେ । ଦେଶ ଜାତିର ସେବାରେ ବିଶ୍ୱ ଜୀବନ ପଥରେ ଆପଣା ଜୀବନକୁ ବିନିଯୋଗ କରିବାକୁ ସମର୍ଥ ହୋଇଥାଏ ଅଲୌକିକ ଜ୍ଞାନ ସମୁଦ୍ରରେ ଲକ୍ଷ୍ୟ ପୂରଣ ବଡ଼ କଷ୍ଟସାଧ୍ୟ । ଦିବ୍ୟ ଜ୍ଞାନ ଅସୀମ କର୍ମ ଶକ୍ତି ପ୍ରଭୁ କରୁଣା ବିନା ତାହା ଅସମ୍ଭବ ।

ପୁରାଣରେ ଶକ୍ତିତତ୍ତ୍ୱର ଅନୁଶୀଳନ, ଶକ୍ତିପୀଠର ମହିମା ଦେବଦେବୀଙ୍କ ତୀର୍ଥସ୍ଥାନ ମୂର୍ତ୍ତି କୀର୍ତ୍ତିର ବର୍ଣ୍ଣନ ଅତ୍ୟନ୍ତ ଶ୍ରମସାଧ୍ୟ । ବିଶେଷତଃ ଶକ୍ତିତତ୍ତ୍ୱର ତାତ୍ତ୍ୱିକ, ପୌରାଣିକ, ଐତିହାସିକ କିମ୍ବଦନ୍ତୀ ଜନଶ୍ରୁତି ଯଥା ଶକ୍ତି ସଂଗ୍ରହ ଆଲୋଚନା କରି ପ୍ରକାଶ ଆହୁରି ଜଟିଳ । ଶକ୍ତିତତ୍ତ୍ୱ ଅନନ୍ତ ସମୁଦ୍ର । ତା'ର ଆଦି ଅନ୍ତ ଥଳକୂଳ ପାଇବା ଅସମ୍ଭବ । ଭଗବତୀ ଶକ୍ତି ଦେବୀଙ୍କ ନାମ ଅନନ୍ତ ଗୁଣ ମହିମା ଅନନ୍ତ ଆଉ ଅସଂଖ୍ୟ ତା'ର ତୀର୍ଥ ସ୍ଥାନ ।

ଶିବ ଶକ୍ତିଙ୍କ ଆସ୍ଥାନ ଆଉ ପ୍ରତିମୂର୍ତ୍ତିର ବର୍ଣ୍ଣନ ବହୁ ଜ୍ଞାନୀ ମହର୍ଷି ତପସ୍ୱୀ ବହୁ ପ୍ରକାରେ ବ୍ୟକ୍ତ କରିଛନ୍ତି । ଗୋଟିଏ ଉଦାହରଣ ଉଲ୍ଲେଖ ତନ୍ମଧ୍ୟରୁ ପ୍ରକାଶ କରୁଛି -

ମୂଳେ ବ୍ରହ୍ମା ତଥା ମଧ୍ୟେ ବିଷ୍ଣୁ ତ୍ରିଭୁବନେଶ୍ୱରଃ
ତଦୁପରି ମହାଦେବଃ ପ୍ରଣବାଖ୍ୟାଃ ସଦାଶିବଃ ।।
ଲିଙ୍ଗ ଦେବୀ ମହାଦେବୀ ଲିଙ୍ଗ ସାକ୍ଷାତ ମହେଶ୍ୱରଃ
ତୟୋ ସଂପୂଜ୍ୟ ନିତ୍ୟଂ ଦେବୀ ଦେବାଶ୍ଚ ପୂଜିତୌ ।।
(ବେଦାନ୍ତ ସୂତ୍ର)

ଶିବଲିଙ୍ଗ ମୂଳରେ ବ୍ରହ୍ମା, ମଧ୍ୟ ଭାଗରେ ବିଷ୍ଣୁ, ଉପରି ଭାଗରେ ଓଁକାରାତ୍ମକ ସଦାଶିବ ବିରାଜମାନ କରିଥାନ୍ତି । ଲିଙ୍ଗ ବେଦୀ ଚାରି



ଯୋନି ପୀଠରେ ଆଦ୍ୟାଶକ୍ତି ମହାଦେବୀଙ୍କ ଅବସ୍ଥାନ ହେତୁ ଉଭୟ ଶିବ ଶକ୍ତିଙ୍କ ପୂଜା ସମ୍ପନ୍ନ ହୋଇଥାଏ । ଲିଙ୍ଗ ଆକାଶର ପ୍ରତୀକ ଓ ଯୋନି ପୃଥିବୀର ସନ୍ତକ ମହାଦେବଙ୍କର ଅନ୍ୟନାମ ତ୍ରିଲୋଚନ ଓ ଦେବୀ ପାର୍ବତୀଙ୍କ ନାମ ତ୍ରିଲୋଚନୀ । ଅନ୍ୟ କୌଣସି ଦେବ ଦେବୀଙ୍କ ସହ ଏପରି ନାମ ପ୍ରଯୁଜ୍ୟ ହୋଇ ନାହିଁ । ତ୍ରିଲୋଚନର ଅର୍ଥ ଭୂତ ଭବିଷ୍ୟ ଓ ବର୍ତ୍ତମାନ । ଅତୀତରେ ଥିଲେ । ବର୍ତ୍ତମାନ ଅଛନ୍ତି ଓ ଭବିଷ୍ୟତରେ ରହିବେ । ଜଳ, ସ୍ଥଳ ଆକାଶ ଓ ସତ୍ତ୍ୱ, ରଜ, ତମ ଏପରି ସବୁ ତିନି ତିନି ନାମରେ ବିଖ୍ୟାତ, ବିଦିତ ।

ପରମ ପୁରୁଷ ଶିବ ସର୍ବମୟ କର୍ତ୍ତାରୂପେ ଓ ଦେବୀ ଶିବାଶକ୍ତି ସର୍ବମୟୀ କର୍ତ୍ତ୍ରୀ ରୂପେ ଜଗତ୍ ବିଖ୍ୟାତ ଓ ବ୍ୟାପକ । ଉଭୟେ ଶିବଶିବାଯୁକ୍ତ ପୂଜାପ୍ରାପ୍ତ ହୋଇଥାନ୍ତି । ଏ ଜୀବ ଶିବଶିବାହୀନ ହେଲେ ଶବରେ ପରିଣତ ହୋଇଯାଏ । ଯେଉଁ ଶକ୍ତି ବଳରେ ଦେବରାଜ ଇନ୍ଦ୍ର ଅଖଣ୍ଡ ବଜ୍ର ଶକ୍ତି ଲାଭ କରି ଦୁନିଆକୁ ଚୂର୍ଣ୍ଣବିଚୂର୍ଣ୍ଣ କରିପାରନ୍ତି । ଯେଉଁ ଦାହିକା ଶକ୍ତି ବଳରେ ଅଗ୍ନି ବିଶ୍ୱ ଦହନ ସକ୍ଷମ ହୋଇଛନ୍ତି । ଯେଉଁ ଶକ୍ତି ବଳରେ ପବନ ଜଗତ ଆଲୋଡ଼ନ କରି ଦେଇପାରନ୍ତି - ସେ ସମସ୍ତ ଶକ୍ତି ଶିବଶିବାଙ୍କ ଉପରେ ନ୍ୟସ୍ତ । ପ୍ରଭୁ ଶିବ ଜୀବନ ଯାନକୁ ଚଳାନ୍ତି । ଦେବୀ ଶିବା ଜୀବଜଗତକୁ ଅଖଣ୍ଡ ଶକ୍ତି ଯୋଗାଇ

ଥାନ୍ତି । ସେହି ଅଲୌକିକ ଶକ୍ତି ବଳରେ ସୃଷ୍ଟି ତିଷ୍ଠି ରହିଛି । ଦେବତାମାନଙ୍କ ପକ୍ଷେ ଯାହା ଅସମ୍ଭବ, ସର୍ବଶକ୍ତି ସମନ୍ୱିତେ ଦେବୀ ଦୁର୍ଗା ତାହା ସମ୍ଭବ କରିଛନ୍ତି । ଖାଦ୍ୟ ଓ ଖାଦକ, ଶତ୍ରୁ ମିତ୍ର ତାଙ୍କ ନିକଟରେ ସମବେତ ହୋଇଛନ୍ତି ।

ଶକ୍ତିଙ୍କ ରଜଗୁଣରେ ସୃଷ୍ଟି, ସତ୍ତ୍ୱଗୁଣରେ ସ୍ଥିତି ଓ ତମ ଗୁଣରେ ଲୟ ସାଧନ ହୋଇଥାଏ । ଅତଏବ ଦୈବୀ ଶକ୍ତି ସଂସାରରେ ତାରିଣୀ, ପାଳିନୀ ଓ ନାଶିନୀ ଭାବରେ ଉଦ୍ଦିଷ୍ଟ । ଶକ୍ତି ବିଭିନ୍ନ ରୂପା । ସ୍ଥଳ ବିଶେଷରେ ଭିନ୍ନ ଭିନ୍ନ ନାମ ଧାରଣ କରିଥାନ୍ତି । ଦଶ ମହାବିଦ୍ୟା ରୂପ ହିଁ ତାଙ୍କର ଏ ସୃଷ୍ଟିରେ ସମଷ୍ଟି ମାତ୍ର । ସେ ଦୁର୍ଗା, କାଳୀ, ଚଣ୍ଡୀ, ଚାମୁଣ୍ଡା, ନବଦୁର୍ଗା, ମହାକାଳୀ, ମହାଲକ୍ଷ୍ମୀ, ମହାସରସ୍ୱତୀ ଆଦି ଅସଂଖ୍ୟ ନାମରେ ନାମିତା ଓ ପୂଜିତା । ତାଙ୍କର ଯେକୌଣସି ନାମରେ ଗୋଟିଏ ଦେବୀମୂର୍ତ୍ତି ପୂଜା ଉପାସନାରେ ସାଧକ ସମଫଳ ଲାଭ କରିବାରେ ସମର୍ଥ ହୋଇଥାଏ ।

ମହାକାଳ ଓ ମହାକାଳୀ ସର୍ବଶକ୍ତିମାନ । କଳା ରଙ୍ଗରେ ସବୁ ରଙ୍ଗ ବିଲୀନ ହୋଇଯାଏ । ଶକ୍ତିମୟୀ କାଳୀଙ୍କ ଜିହ୍ୱାରେ ସଂଯତ ଭାଷା, ଜିହ୍ୱା ଲାଳସା ବ୍ୟତିରେକେ ଜୀବନ ପାଇଁ ଉପଯୁକ୍ତ ଆହାର ଆଶା କରିବା ବିଧେୟ ।

ମହାକାଳ ଭୈରବ ଶିବ ଦିବ୍ୟଶକ୍ତି ପାର୍ବତୀଙ୍କୁ ପିତ୍ରାଳୟ ଯିବାକୁ ଅନୁମତି ପ୍ରଦାନ ନକରିବାରୁ ଦେବୀ କୋପାନ୍ୱିତା ହେଲେ । ଦଶ ଦିନରେ ଦଶ ମହାବିଦ୍ୟା ରୂପ ଧାରଣ କରି ପ୍ରଭୁଙ୍କୁ ଭୀତତ୍ରସ୍ତ କରି ଦେଲେ । ପୁରୁଷ ପ୍ରକୃତି ଭିତରେ ମତଭେଦ ହେଲେ ସଂସାର ଉଚ୍ଛନ୍ନ ହୋଇଯାଏ - ଏହା ହିଁ ଶିକ୍ଷା ମିଳେ । ମହାକାଳ ଓ ମହାକାଳୀ ସର୍ବଶକ୍ତିମାନ । କଳା ରଙ୍ଗରେ ସବୁ ରଙ୍ଗ ବିଲୀନ ହୋଇଯାଏ । ଶକ୍ତିମୟୀ କାଳୀଙ୍କ ଜିହ୍ୱାରେ ସଂଯତ ଭାଷା, ଜିହ୍ୱା ଲାଳସା ବ୍ୟତିରେକେ ଜୀବନ ପାଇଁ ଉପଯୁକ୍ତ ଆହାର ଆଶା କରିବା ବିଧେୟ । ଶିବ ହିଁ ସତ୍ୟ । ସତ୍ୟ ଉପରେ ଶକ୍ତି ପ୍ରତିଷ୍ଠିତ । ସତ୍ୟ ଶକ୍ତି ପ୍ରତିଷ୍ଠା ପାଇଁ ସତ୍‌କର୍ମ ଓ ସତ୍‌ଚିନ୍ତା ଆବଶ୍ୟକ । ହସ୍ତହାର ମୁଣ୍ଡମାଳ ଏହାର ପ୍ରମାଣ । ସେ ତ୍ରିନୟନା ଓ ଚନ୍ଦ୍ର, ସୂର୍ଯ୍ୟ, ଅଗ୍ନିର ସମାହାର । ଉଗ୍ରତା ଆଉ ନଗ୍ନତା । ଜଗତକୁ ଶାନ୍ତି ଶୃଙ୍ଖଳାର ଆହ୍ୱାନ । ରକ୍ତମାଂସ ଚର୍ମ ପାଇଁ ଇନ୍ଦ୍ରିୟ ଅସଂଯମତାର କାରଣ । ଏ ସୃଷ୍ଟି ବିନାଶର କାରଣ । ଏସବୁ ଦୃଷ୍ଟାନ୍ତ ସୃଷ୍ଟି ରକ୍ଷାର୍ଥେ ଉଦ୍ଦିଷ୍ଟ । ହାତୀ, ଘୋଡ଼ା, ବୃଷଭ, ସିଂହ, ବ୍ୟାଘ୍ର, କୁମ୍ଭୀର ମନ୍ଦିର ଦ୍ୱାରେ କାମ କ୍ରୋଧର ସନ୍ତକ ।

ଷୋଡ଼ଶୀ, ଭୁବନେଶ୍ୱରୀ ଶକ୍ତି ସୁନ୍ଦରୀ ପୁଣି ଭୟଙ୍କରୀ । ନାରୀ ଶକ୍ତି ଅପୂର୍ବ ସୁନ୍ଦରୀ ସ୍ଥଳବିଶେଷରେ ସେ ପୁଣି ଭୈରବୀ ରୂପ ଧାରଣ କରେ । ଚଣ୍ଡୀ, ଚାମୁଣ୍ଡା ଅଷ୍ଟମାତୃକା ରୂପ ନିଏ । ଛିନ୍ନମସ୍ତା ଅନ୍ନପୂର୍ଣ୍ଣା । ମହାବିଦ୍ୟା ଶକ୍ତିରେ ତ୍ରିବିଧ ରୂପ ବିଦ୍ୟମାନ ନିଜ ଶରୀରରୁ ରକ୍ତପାନ କରୁଛନ୍ତି । ମନୁଷ୍ୟ ନିଜ ଅର୍ଜନ ନିଜେ ଭୋଜନ କରୁ । ପର ସମ୍ପତ୍ତିକୁ ଆଶା ଏ ଦୁରାଶା କାହିଁକି ? ନିଜେ ବଞ୍ଚୁ ଅନ୍ୟକୁ ବଞ୍ଚାଉ । ଅନ୍ୟ ଶକ୍ତିକୁ ପାନ କରାଉଛନ୍ତି । ଭୋଗ ଶକ୍ତି । କିନ୍ତୁ ଏ ରକ୍ତ ଭୋଜ୍ୟ । ଭୋକ୍ତା, ଭୋଗ ଓ ଭୋଜ୍ୟ ତ୍ରିବିଧ ରୂପ ଧାରଣ କରି ଜଗତକୁ ହିଂସା ପରିହାରର ପ୍ରେରଣା ଦେଉଛନ୍ତି । ଏ ଜୀବ ଶିବଶିବାର ରହସ୍ୟ ନ ବୁଝିଲେ ସୀମାତିକ୍ରମ କଲେ ପ୍ରଳୟ ଆସିବ । କାଳୀ, ଧୂମାବତୀ ପ୍ରବେଶ କରିବେ । ଏ ଦୈବୀ ଶକ୍ତିର ଦୟା ନ ରହିଲେ ସଂସାର ଉଚ୍ଛନ୍ନ ହୋଇଯିବ । ମାତଙ୍ଗିନୀ ଜ୍ଞାନରୂପିଣୀ । କମଳା ଅନ୍ନପୂର୍ଣ୍ଣା ଶାକମ୍ଭରୀ । ଦଶଦିଗରେ ଦଶବିଧ ରୂପର ଏ ପ୍ରକୃତି ଅପୂର୍ବ ମାତୃଶକ୍ତି ରହସ୍ୟ ନ ଜାଣିଲେ ଜୀବ ଶବଶିବା ଶୂନ୍ୟ ହୋଇଯିବ ନିଶ୍ଚୟ ।

ମହାଶକ୍ତି ମାତୃଶକ୍ତି ମାନବର ସର୍ବାଙ୍ଗରେ ଜଡ଼ିତ । ତତ୍ତ୍ୱ ଜ୍ଞାନ ଉଦିତ ହେଲେ ଏ ଜୀବ ମହାବିଦ୍ୟା ଭଗବତୀଙ୍କର ଅପୂର୍ବ କରୁଣା ଲାଭ କରିବ । ତେଣୁ ସୃଷ୍ଟିର ଆରମ୍ଭରୁ ଏ ଜୀବ ଶିବ ଶକ୍ତିଙ୍କୁ ପୂଜା କରିଆସୁଛି । ତାଙ୍କୁ ଯେ ଯେପରି ଭାବିଛି ତଦନୁରୂପ ଫଳ ପାଇଛି । ଶକ୍ତିତତ୍ତ୍ୱ ଜାଣିବାକୁ ଅସଂଖ୍ୟ ପୁରାଣ, ମହାପୁରାଣ, ଉପପୁରାଣ ଲିଖିତ ହୋଇଛି । ପୁରାଣ ପଠନରେ ସତ୍‌ଶିକ୍ଷା, ଗୁରୁ ଗୁରୁଜନଙ୍କୁ ଭକ୍ତି ତ୍ୟାଗ ବୈରାଗ୍ୟ, ଆଦର୍ଶର ଶିକ୍ଷା ମିଳେ । ପୁରାଣକୁ ପଞ୍ଚମ ବେଦ ବୋଲି କୁହାଯାଏ । ଦେବଦେବୀ ମହାତ୍ମ୍ୟ ବର୍ଣ୍ଣନର ସମଷ୍ଟି । ଏହା ସତ୍ ଚିତ୍ ଆନନ୍ଦ । ସୃଷ୍ଟି ରକ୍ଷାର୍ଥେ ନିୟୋଜିତ ।

ମାର୍କଣ୍ଡେୟ ପୁରାଣରେ ବର୍ଣ୍ଣିତ ଦେବୀ ମହାତ୍ମ୍ୟ ଓ ସପ୍ତଶତୀ ଚଣ୍ଡୀ ଶାକ୍ତ ସମ୍ପ୍ରଦାୟ ଉପରେ ବହୁ ପ୍ରଭାବ ପକାଇଛି । ଆସକ୍ତି କ୍ଷଣିକ ମାତ୍ର, ମମତା ଚିରନ୍ତନ ବତାଇଛି । ଆସୁରିକ ଆଉ ପଶୁତ୍ୱ ଭାବ ପରିବର୍ତ୍ତେ ଆଧ୍ୟାତ୍ମିକ ଏବଂ ଦେବତ୍ୱର ସନ୍ଧାନ ଦେଇଛି । ଭାଗବତ, ଶ୍ରୀମଦ୍ ଭାଗବତ, ଦେବୀ ଭାଗବତ ଲେଖା ଭିନ୍ନ ଭିନ୍ନ ସମୟର । ସ୍କନ୍ଦ ପୁରାଣରେ ଦେବୀ ମହିମା ପଞ୍ଚମ ଅଧ୍ୟାୟରେ ବର୍ଣ୍ଣିତ । ଦେବୀ ପୁରାଣ ଏକ ଉପପୁରାଣ ଭାବରେ ଗୃହୀତ । ଭାଗବତରେ, ବରାହ ପୁରାଣରେ, ନାରଦୀୟ ପୁରାଣରେ ପ୍ରଭୁ ବିଷ୍ଣୁଙ୍କ ମହିମା ବର୍ଣ୍ଣିତ ହୋଇଛି । ସ୍କନ୍ଦ ପୁରାଣ, ଲିଙ୍ଗ ପୁରାଣ ଓ ଶିବ ପୁରାଣରେ ମହାଦେବ ଶିବଙ୍କ ମହିମା ଓ ମାର୍କଣ୍ଡେୟ ପୁରାଣ, ଦେବୀ ଭାଗବତରେ ଦେବୀ ଶକ୍ତିଙ୍କର ମହାତ୍ମ୍ୟ ବର୍ଣ୍ଣିତ ପ୍ରଚାରିତ ହୋଇଛି ।

ସପ୍ତଶତୀ ଚଣ୍ଡୀରେ ମୁଖ୍ୟ ଦେବୀ ମହାମାୟା । ସେ ମହାକାଳୀ, ମହାଲକ୍ଷ୍ମୀ, ମହାସରସ୍ୱତୀ ରୂପେ ଅବତୀର୍ଣ୍ଣା ହୋଇଛନ୍ତି । ମଧୁକୈଟଭ, ମହିଷାସୁର, ଶୁମ୍ଭ ନିଶୁମ୍ଭାଦି ଦୈତ୍ୟଙ୍କୁ ନିଧନ କରିଛନ୍ତି । ସର୍ବଦେବୀ ଅସୁର ନିଧନ ତତ୍ପରା । ଶାନ୍ତି ମୁକ୍ତିର ପଶରା ରୂପେ ପୂଜିତ ଜଗତ ବ୍ୟାପ୍ତ ହୋଇଛନ୍ତି । ଅସୁର ନିପାତ ବେଳେ ମହାକୋପା ଅମ୍ବିକାଙ୍କ କପାଳରୁ କରାଳ ବଦନା କାଳୀ ଆବିର୍ଭୂତା । ଅସୁରମାନଙ୍କ ସହ ସଂଗ୍ରାମ ବେଳେ ଦେବତାଙ୍କ ଶକ୍ତିରୂପେ ବ୍ରହ୍ମାଣୀ, ବୈଷ୍ଣବୀ, ମାହେଶ୍ୱରୀ, ଐନ୍ଦ୍ରୀ, ନରସିଂହୀ ଆଦି ମାତୃଗଣ ଆବିର୍ଭୂତା ହୋଇ ଅସୁର ନିପାତ କରିବାରେ ସହାୟ ହୋଇଛନ୍ତି ।

ବ୍ରାହ୍ମଣ ଧର୍ମର ଉତ୍ଥାନ କାଳରେ ପୁରାଣର ବହୁ ପ୍ରଚାର କରାଯାଇ ଭାରତର ଜନଜୀବନରେ ଅଦ୍ଭୁତ ପରିବର୍ତ୍ତନ ଅଣାଯାଇ ପାରିଥିଲା । ଅଷ୍ଟାଦଶ ପୁରାଣକୁ ମହାପୁରାଣ କୁହାଯାଏ । ଏ ପୁରାଣମାନଙ୍କରେ ଦେବଦେବୀଙ୍କ ମହିମା ବର୍ଣ୍ଣନ କରାଯାଇଛି । ପ୍ରତ୍ୟେକ ଧର୍ମ ଉପରେ ଶାକ୍ତ ଧର୍ମର ପ୍ରଭାବ ପଡ଼ିଥିଲା । ତା'ର କାରଣ ବିଷ୍ଣୁଙ୍କ ଶକ୍ତିରୂପେ ବୈଷ୍ଣବୀ ମହାଲକ୍ଷ୍ମୀ ଶିବଙ୍କ ଶକ୍ତିରୂପେ ପାର୍ବତୀ, ଦୁର୍ଗା, କାଳୀ ଓ ବ୍ରହ୍ମାଙ୍କ ଶକ୍ତିଭାବେ ବ୍ରାହ୍ମୀ ବା ସାବିତ୍ରୀ ବିଦ୍ୟମାନ ଥିଲେ ।

ଦୈବୀ ଶକ୍ତି ଭିନ୍ନ ଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ନାମରେ ପୂଜା ପାଉଛନ୍ତି । ମାର୍କଣ୍ଡେୟ ପୁରାଣରେ ମହାମାୟା, ମତ୍ସ୍ୟ ପୁରାଣରେ ଉଗ୍ରତାରିକା, ଦେବୀ ପୁରାଣରେ ଭୁବନେଶ୍ୱରୀ, ଶିବ ପୁରାଣରେ ପାର୍ବତୀ ଏସବୁ ମହାଶକ୍ତି ଏକ ଓ ଅଭିନ୍ନ ମାତ୍ର ଭିନ୍ନ ଭିନ୍ନ ନାମରେ ନାମିତ । ପୁରାଣ ଉପାଖ୍ୟାନ ବ୍ୟତୀତ ଦେବତାଙ୍କ ଦେବୀସ୍ତୁତି ମଧ୍ୟ ଶାକ୍ତ ଦର୍ଶନର ସାରତତ୍ତ୍ୱ ଭାବେ ଗୃହୀତ । ଦେବୀଗଣଙ୍କ ସତ୍ତ୍ୱ, ରଜ, ତମ ତ୍ରିଗୁଣ ଶକ୍ତିରୁ ସୃଷ୍ଟି ସ୍ଥିତିର ଉତ୍ପତ୍ତି । ପୃଥିବୀ ସର୍ବବ୍ୟାପି ସାତ୍ତ୍ୱିକ, ରାଜସିକ, ତାମସିକ ଭାବଧାରା ସମନ୍ୱିତ । ଏହି ଦୈବୀ ଶକ୍ତି ହିଁ ପୃଥିବୀର ସୃଷ୍ଟି ସ୍ଥିତି ପ୍ରଳୟର କାରଣ ହୋଇଛି । ସେ ମହାଶକ୍ତି ସର୍ବବ୍ୟାପି ସମଗ୍ର ବିଶ୍ୱର ଶରୀର ରୂପେ ପ୍ରକଟିତ ହୋଇଛି ।

ଏ ଆଦିଶକ୍ତି ଆଦିମାତା ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କ ଜନନୀ ରୂପେ ବିଦିତା । ଏ ମହାଶକ୍ତି ନାମ ଅନନ୍ତ । ଗୁଣ ଅନନ୍ତ । ରୂପ ଅସଂଖ୍ୟ । ଅବ୍ୟକ୍ତ ଶକ୍ତି ବର୍ଣ୍ଣନା ସାଧ୍ୟାତୀତ । ପୁରାଣ ବି ଅସଂଖ୍ୟ । ମାତ୍ର ଶାକ୍ତ ସମ୍ପ୍ରଦାୟର ପ୍ରାମାଣିକ ଗ୍ରନ୍ଥ ରୂପେ ଦେବୀ ପୁରାଣ, କାଳିକା ପୁରାଣ ମହାଭାଗବତ, ଦେବୀ ଭାଗବତ ଆଦି ଗ୍ରନ୍ଥ ବିଖ୍ୟାତ । କାମ ରୂପର କାମାକ୍ଷାଙ୍କୁ ଆଧାର କରି କାଳିକା ପୁରାଣ, ଚାମୁଣ୍ଡା ଦେବୀଙ୍କୁ ଆଧାର କରି ଦେବୀ ପୁରାଣ ଓ ଯାଜପୁରର ବିରଜା ଦେବୀଙ୍କୁ ଆଶ୍ରୟ କରି ବିରଜା ମହାତ୍ମ୍ୟ ବର୍ଣ୍ଣିତ ହୋଇଛି ।

ସେହି ମହାମାୟାଙ୍କୁ ଆଧାର କରି ଯେତେଯେତେ ଶାକ୍ତ ସାହିତ୍ୟରେ ପ୍ରତିଫଳିତ ହୋଇଛି - ତାହା ଅନ୍ୟ ସାହିତ୍ୟରେ ଦୁର୍ଲଭ । ଏ ଶକ୍ତିମାଆଙ୍କୁ ଭକ୍ତ ଯେ ଯେଉଁ ଭାବେ ଡାକିଛି ଭାବିଛି ତଦନୁରୂପ ଫଳ ପ୍ରାପ୍ତ ହୋଇଛି । ଏଥିରେ କିଛି ସନ୍ଦେହ ନାହିଁ । ଦେବଦେବୀ ଆରାଧନା ସକାଶେ ନବଧା ଭକ୍ତି ସ୍ମରଣ, ଚିନ୍ତନ, ଅର୍ଚ୍ଚନ, ପଦସେବନ, ଭଜନ, କୀର୍ତ୍ତନ, ଦାସ୍ୟ, ସାଖ୍ୟ ଅପେକ୍ଷା ଆତ୍ମ ନିବେଦନ ଭକ୍ତି ହିଁ ସର୍ବଶ୍ରେଷ୍ଠ । ଇଷ୍ଟ ପୂଜାରେ ଆତ୍ମ ସମର୍ପଣ ଭାବ, ତ୍ୟାଗ ସଂଯମ ବଳରେ ସାଧକ ଇଷ୍ଟ ଦେବୀଙ୍କ ଅପୂର୍ବ କଲ୍ୟାଣ ପ୍ରାପ୍ତ ହୋଇଥାଏ । ଭକ୍ତ ଆପଣା ଅହଂଭାବ, ମୁକାରାତ୍ମକ ସତ୍ତାକୁ ବିଲୁପ୍ତ କରି ଦୈବୀଭାବ ସାନ୍ନିଧରେ ତଲୀନ ହୋଇଗଲେ ଅପୂର୍ବ ଶାନ୍ତି ମିଳେ । ଆତ୍ମସ୍ୱାର୍ଥ ତ୍ୟାଗରେ ପରମାର୍ଥ ପ୍ରାପ୍ତ ହୋଇଥାଏ । ସେ ଅଲୌକିକ ଶକ୍ତିର ଅଧିକାରୀ ବନିଯାଏ ।

ଏ ମନୁଷ୍ୟ କ୍ରୋଧରୂପୀ ମେଷ, ମୋହ ରୂପୀ ମହିଷର ପଶୁତ୍ୱ ପରିବର୍ତ୍ତେ ଏକ ଅଲୌକିକ ଦୈବୀ ଶକ୍ତି ଭାବାପନ୍ନ ଜୀବନ ଲାଭ କରୁ । ମହାମାୟା ଦେବୀ ଶକ୍ତିଙ୍କ ପୂଜା ଆରାଧନାର ବିଶେଷତ୍ୱ ଉପଲବ୍ଧି କରି ତ୍ୟାଗ ସଂଯମ, ଦୃଢ଼ ସଂକଳ୍ପ ବଳରେ ଅପୂର୍ବ ଜ୍ଞାନ ଭକ୍ତି ସତ୍ ଆଚରଣର ବଶବର୍ତ୍ତୀ ହେଉ । ଏହା ହିଁ ଏ ଶକ୍ତି ତତ୍ତ୍ୱର ବର୍ଣ୍ଣନାର ଉଦ୍ଦେଶ୍ୟ ଏଥିରେ କୌଣସି ସନ୍ଦେହ ନାହିଁ ।

ଗ୍ରା/ପୋ-ଶଙ୍ଖଚିଲା
ଯାଜପୁର-୭୫୫୦୧୫

---

# ଏକତା ହିଁ ଦୁର୍ଗା

ବିକ୍ରମ କେଶରୀ ବର୍ମା

ବ୍ରହ୍ମା ଦିଅ ବ୍ରହ୍ମ ଅସ୍ତ୍ର
ଶିବ ପାଶୁପତ
ବୈଷ୍ଣବ ଅସ୍ତ୍ର ଦିଅନ୍ତୁ ଗୋବିନ୍ଦ
ଦେବରାଜ ଦିଅ ବଜ୍ରବାଣ
ଯଦି ମହିଷାସୁର ହୋଇବ ନିଧନ ।
ସିଂହବାହିନୀ ଦେବୀ ଦୁର୍ଗାଙ୍କ
ପ୍ରଚଣ୍ଡ ଆହ୍ୱାନ
ଦେବତାଙ୍କ ମନେ ଦେଲା
ନବ ଜାଗରଣ ।
ଦେବ ଅସ୍ତ୍ର ସବୁ ଦେବଗଣ କରିଲେ ପ୍ରଦାନ
ଷୋଳ ଭୁଜରେ ଷୋଳ ଅସ୍ତ୍ର ଧରି
ମହାମାୟା ଦୁର୍ଗା
କରି ଘୋର ରଣ
ଶୁମ୍ଭ ନିଶୁମ୍ଭ ସହ ମହିଷା
କରିଲେ ନିଧନ ।
ଏକତା ହିଁ ବଡ଼ ଅସ୍ତ୍ର
ଏକତା ବଳରେ ସବୁ ହୁଅଇ ସମ୍ଭବ
ଏହି ଶିକ୍ଷା ଦେଲେ ଦେବୀ ଦୁର୍ଗା
ଦେବ ଗଣେ ଏକତ୍ର ହୋଇ
ଅସୁରଙ୍କୁ ଦେଲେ ପରାଭବ ।

ବିଧାୟକ, ମାହାଙ୍ଗା

# ସ୍ନେହ, ସମୃଦ୍ଧି ଓ ଏକତାର ପ୍ରତୀକ ଢେଙ୍କାନାଳ ଗଜଲକ୍ଷ୍ମୀ ପୂଜା

ଗୋବିନ୍ଦଚନ୍ଦ୍ର ରାଉଳ



ଓଡ଼ିଶାର ଆରାଧ୍ୟ ଦେବତା ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ର କରି ପାଳିତ ହେଉଛି ବାରମାସରେ ତେର ପର୍ବ । ଏହି ପର୍ବପର୍ବାଣି ଆମ ସାମାଜିକ ଓ ସାଂସ୍କୃତିକ ଜୀବନର ମହନୀୟ ଐତିହ୍ୟର ସ୍ମାରକୀ । ଦୈନନ୍ଦିନ ଜୀବନ ଜଞ୍ଜାଳରୁ ବ୍ୟକ୍ତି ଓ ତା'ର ପରିବାର ଏହି ଦିନଗୁଡ଼ିକରେ ବାହାରି ମିଳିତ ହୁଏ । ଏକ ଅଖଣ୍ଡ ଭାବଧାରା ସହ, ସେଥିରୁ ସେ ପାଏ ନୂତନ ଜୀବନ ଧାରଣର ପ୍ରେରଣା ଓ ସାମାଜିକ ମୂଲ୍ୟବୋଧର ଦିଗ୍‌ଦର୍ଶନ ।

ଓଡ଼ିଶାରେ ପ୍ରଚଳିତ ବହୁ ପର୍ବପର୍ବାଣି ମଧ୍ୟରେ ମହାଲକ୍ଷ୍ମୀ ପୂଜା ବିଶେଷ ସ୍ଥାନର ଅଧିକାରୀ । ଧର୍ମ, ସ୍ନେହ, ପ୍ରେମ, ସଂପଦ, କାମ, ମୋକ୍ଷ ଆଦି ସୌଭାଗ୍ୟର ପ୍ରତୀକ କୁମାର ପୂର୍ଣ୍ଣିମା ଦିନ ମହାଲକ୍ଷ୍ମୀଙ୍କୁ ପ୍ରତ୍ୟେକ ହିନ୍ଦୁ ପରିବାର ପୂଜା କରିଥାଏ । ଏହି ଦିନ ମହାଲକ୍ଷ୍ମୀ ଗଜ ପାର୍ଶ୍ୱରେ ଆସୀନ ହୁଅନ୍ତି, ଏଣୁ ଏହାକୁ ମଧ୍ୟ ଗଜଲକ୍ଷ୍ମୀ ପୂଜା ବୋଲି ଅଭିହିତ କରାଯାଇଥାଏ । ଏହି ଗଜଲକ୍ଷ୍ମୀ ପୂଜାକୁ ଢେଙ୍କାନାଳ ଜିଲ୍ଲାବାସୀ ଅତ୍ୟନ୍ତ ଆନନ୍ଦ-ଉଲ୍ଲାସ ଓ ଭାଇଚାରା ମଧ୍ୟରେ ପାଳନ କରିଥାନ୍ତି । **ଢେଙ୍କାନାଳର ଲକ୍ଷ୍ମୀପୂଜା ଆରମ୍ଭର ଇତିହାସ ଲିପିବଦ୍ଧ ହୋଇ ନଥିଲେ ମଧ୍ୟ, ପ୍ରାୟ ୧୯୨୩ ମସିହା ବେଳକୁ ଏହି ପୂଜା ପ୍ରଥମେ ପାଞ୍ଜିଆ ସାହିର ସ୍ୱର୍ଗୀୟ ବ୍ରଜ କିଶୋର ପଟ୍ଟନାୟକଙ୍କଦ୍ୱାରା ଢେଙ୍କାନାଳ ଗଡ଼ରେ ଆରମ୍ଭ ହୋଇଥିବାର ଅନୁମାନ କରାଯାଏ ।** କାଳକ୍ରମେ ଢେଙ୍କାନାଳ ଗଜଲକ୍ଷ୍ମୀ ପୂଜା ବହୁ ବାଧାବିଘ୍ନ ଏଡ଼ାଇ ବର୍ଷକୁ ବର୍ଷ ଆଡ଼ମ୍ବରପୂର୍ଣ୍ଣ, ଚିତ୍ତାକର୍ଷକ ଆଲୋକସଜ୍ଜା ମଧ୍ୟରେ ସଂପାଦିତ ହେବାକୁ ଲାଗିଲା । ଅଧୁନା ସହରର ପ୍ରଧାନ ରାସ୍ତାର ପ୍ରାୟ ୩ କିଲୋମିଟର ପର୍ଯ୍ୟନ୍ତ ଅଞ୍ଚଳ ଆଲୋକଦ୍ୱାରା ଉଦ୍‌ଭାସିତ ହୋଇ ବିଭିନ୍ନ ସ୍ଥାନରେ ପାଖାପାଖି ୪୦ଟି ମେଢ଼ର ଆୟୋଜନ କରାଯାଇଥାଏ । କୁମାର ପୂର୍ଣ୍ଣିମାଠାରୁ ୧୦ ଦିନ ବ୍ୟାପି ଢେଙ୍କାନାଳ ସହର ଇନ୍ଦ୍ର ଭୁବନର ଶୋଭା ଧାରଣ କରିଥାଏ । ବଡ଼ ବଡ଼ ପୂଜା ପ୍ରତିଷ୍ଠାନର ଅପୂର୍ବ ସାଜସଜ୍ଜା ସହ ନାଚ, ତାମସା ଓ ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମ ପୂଜା ସମୟରେ ପରିବେଷଣ ହୋଇ ମଧ୍ୟରାତ୍ର ପର୍ଯ୍ୟନ୍ତ ଦର୍ଶକମାନଙ୍କୁ ମନୋରଞ୍ଜନ ଯୋଗାଇ ଦେଉଥିବାବେଳେ ଗତ ତିନିବର୍ଷ ଧରି ଏହି ପୂଜା ଅବସରରେ ଆୟୋଜନ କରାଯାଉଛି ଢେଙ୍କାନାଳ ମହୋତ୍ସବ ଏବଂ ଗ୍ରାମଶ୍ରୀ ମେଳା ଏହି ପାର୍ବଣକୁ କରିପାରିଛି ଅଧିକ ଋଦ୍ଧିମନ୍ତ । ପୂଜା ଅବସରରେ ବିଭିନ୍ନ ବ୍ୟବସାୟ ପ୍ରତିଷ୍ଠାନମାନଙ୍କର ଲୋଭନୀୟ ସାମଗ୍ରୀର ବିପଣନ ସାଙ୍ଗକୁ ରାଜ୍ୟ ତଥା ରାଜ୍ୟ ବାହାରର ଛୋଟ-ବଡ଼ ବ୍ୟବସାୟୀମାନଙ୍କ ଆକର୍ଷଣୀୟ ସାମଗ୍ରୀର ସମ୍ଭାର, ରାମଦୋଳି, ଘୋଡ଼ାନାଚ, ବ୍ରେକ୍ ଡ୍ୟାନ୍‌ସ ଖେଳ, ମଟର ସାଇକେଲ ଖେଳ, ଲଟେରୀ ଖେଳ, ଚିଡ଼ିଆଖାନା, ଯାଦୁବିଦ୍ୟା ପ୍ରଦର୍ଶନ ଓ ସ୍ୱାଦିଷ୍ଟ ଖାଦ୍ୟ ସାମଗ୍ରୀ ଟାଣି ନେଇଥାଏ ଆବାଳ-ବୃଦ୍ଧ-ବନିତାଙ୍କୁ ।

ଢେଙ୍କାନାଳ ଗଜଲକ୍ଷ୍ମୀ ପୂଜା ପ୍ରଶାସନର ସହାୟତାରେ ଭାଇଚାରା ମଧ୍ୟରେ ପାଳିତ ହୋଇଥାଏ । ଏଥିପାଇଁ ଜିଲ୍ଲା ପ୍ରଶାସନ ପକ୍ଷରୁ ଏକ ପ୍ରସ୍ତୁତି ବୈଠକ ମାଧ୍ୟମରେ ପୂଜାଉତ୍ସବ ଆୟୋଜନ ସଂପର୍କରେ ଆଲୋଚନା କରାଯାଇ ସିଦ୍ଧାନ୍ତ ନିଆଯାଇଥାଏ । ଜିଲ୍ଲାପାଳଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏହି ବୈଠକରେ ମିଳିତ ପୂଜା କମିଟିର ସଭାପତି, ସଂପାଦକଙ୍କ ସମେତ ପ୍ରତ୍ୟେକ ପୂଜା ପ୍ରତିଷ୍ଠାନର କର୍ମକର୍ତ୍ତା ଏବଂ ପ୍ରଶାସନିକ ଅଧିକାରୀମାନେ ଯୋଗ ଦେଇଥାନ୍ତି ।

ଲକ୍ଷ୍ମୀପୂଜା ଭଳି ଏହାର ଭସାଣି ଉତ୍ସବ ମଧ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ । ସହର ଓ ତତ୍‌ସଂଲଗ୍ନ ଅଞ୍ଚଳର ପ୍ରତିଷ୍ଠିତ ମେଢ଼ ପ୍ରତିଷ୍ଠାନଗୁଡ଼ିକ ସିଦ୍ଧ ବଳରାମ ମନ୍ଦିରଠାରେ ଏକତ୍ର ହୁଅନ୍ତି । ଆଲୋକମାଳାର ବର୍ଣ୍ଣାଢ଼୍ୟ ସାଜସଜ୍ଜା, ବାଜା-ରୋଶଣୀରେ ଦେବୀ ପ୍ରତିମାମାନେ ସୁସଜ୍ଜିତ ଯାନରେ କ୍ରମାନ୍ୱୟରେ ନିର୍ଦ୍ଧାରିତ ପଥ ମଧ୍ୟରେ ଅତିକ୍ରମ କରି ବିସର୍ଜିତ ହୁଅନ୍ତି । ଶୋଭାଯାତ୍ରାରେ ପୂଜା କମିଟିର କର୍ମକର୍ତ୍ତା ଓ ସାହି ମୁରବୀମାନେ ଉପସ୍ଥିତ ରହି ଭାଇଚାରା ରକ୍ଷା କରନ୍ତି ।

ପାହାଡ଼ ପର୍ବତ ଘେରା ମନୋରମ ପ୍ରାକୃତିକ ସବୁଜିମା ପରିବେଷ୍ଟନୀ ଢେଙ୍କାନାଳ ସହରର ପ୍ରସିଦ୍ଧ ଗଜଲକ୍ଷ୍ମୀ ପୂଜା ଆଗାମୀ ଦିନରେ ରାଜ୍ୟ ତଥା ସମଗ୍ର ଦେଶରେ ଆକର୍ଷଣର କେନ୍ଦ୍ରବିନ୍ଦୁ ହୋଇପାରିବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ଜିଲ୍ଲା ସୂଚନା ଓ ଲୋକ ସଂପର୍କ ଅଧିକାରୀ
ଢେଙ୍କାନାଳ

# ମା' ଶାରଳା

ଡକ୍ଟର ଭୋଳାନାଥ ରାଉତ

ଜଗତସିଂହପୁର ଜିଲ୍ଲାର ଅଧିଷ୍ଠାତ୍ରୀ ଦେବୀ ମା' ଶାରଳାଙ୍କ ବିଷୟରେ ଏହି ଲେଖାଟି ପ୍ରସ୍ତୁତ କରିବାକୁ ଗଲାବେଳେ ଓଡ଼ିଶାର ମନ୍ଦିର ଯୁଗର ଇତିହାସ ସମ୍ପର୍କରେ କେତେକ ଐତିହାସିକମାନଙ୍କର ଆଲୋଚନାକୁ ଗୁରୁତ୍ୱ ଦେବାକୁ ହେବ । ପ୍ରାୟତଃ ଷଷ୍ଠ ଶତାବ୍ଦୀରୁ ଷୋଡ଼ଶ ଶତାବ୍ଦୀ ମଧ୍ୟରେ ଓଡ଼ିଶାର ବିଭିନ୍ନ ଇତିହାସରୁ ଜଣାପଡ଼େ ଯେ ଭୌମକର ରାଜବଂଶ ଖ୍ରୀ:୭୩୬ରୁ ଖ୍ରୀ:୯୩୬ ମଧ୍ୟରେ ରାଜତ୍ୱ କରୁଥିଲେ । ସେହି ସମୟରେ ଭୁବନେଶ୍ୱରରେ ଥିବା ଗୌରୀ ମନ୍ଦିର, ମୋହିନୀ ମନ୍ଦିର, ବୈତାଳ ମନ୍ଦିର ଓ ଭୁବନେଶ୍ୱର ନିକଟବର୍ତ୍ତୀ ହୀରାପୁରଠାରେ ଚଉଷଷ୍ଠୀ ଯୋଗିନୀ ମନ୍ଦିର ନିର୍ମାଣ ହୋଇଥିବାର ଜଣାଯାଏ । ସ୍ୱର୍ଗୀୟ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଉଲ୍ଲେଖ କରିଛନ୍ତି ଉପରୋକ୍ତ ମନ୍ଦିର ସମେତ ଭୁବନେଶ୍ୱରର ଶିଶିରେଶ୍ୱର, ବୈତାଳ, ତାଳେଶ୍ୱର, ମାର୍କଣ୍ଡେଶ୍ୱର ଏବଂ ଉତ୍ତରେଶ୍ୱର ମନ୍ଦିର ମଧ୍ୟ ନିର୍ମିତ ହୋଇଥିଲା । ସେ ଯାହାହେଉ, ଓଡ଼ିଶାରେ ଦ୍ୱିଭୁଜା ଦୁର୍ଗା ମୂର୍ତ୍ତି ବିରଜା, ପଞ୍ଚମରୁ ଷଷ୍ଠ ଶତାବ୍ଦୀ ମଧ୍ୟରେ ବୋଲି କେତେକ ଐତିହାସିକ ମତ ଦିଅନ୍ତି । ଗୁପ୍ତଯୁଗରେ ମହିଷାମର୍ଦ୍ଦିନୀ ଦୁର୍ଗା ମୂର୍ତ୍ତି ଲୋକପ୍ରିୟ ହୋଇଉଠିଲା ଏବଂ ତତ୍‌ସହିତ ତାଙ୍କ ହସ୍ତର ସଂଖ୍ୟା କ୍ରମେ ବୃଦ୍ଧି ପାଇଲା । ପ୍ରାଚ୍ୟ ଉପତ୍ୟକାର 'ମୋଟିଆ'ଠାରେ ଏକ ଚତୁର୍ଭୁଜା ଦୁର୍ଗାମୂର୍ତ୍ତି ଉପର ଦୁଇ ହସ୍ତରେ ଶଙ୍ଖଚକ୍ର ଧରିଛନ୍ତି ଏବଂ ତଳ ଦୁଇ ହସ୍ତରେ ତ୍ରିଶୂଳ ଧରି ରାକ୍ଷସକୁ ନିପାତ କରୁଛନ୍ତି । ଏ ଧରଣର ମୂର୍ତ୍ତି ନିଆଳି ମାଧବ, ବାଙ୍କିର ଚର୍ଚ୍ଚିକା ମନ୍ଦିରରେ ଦେଖାଯାଆନ୍ତି । ଏ ଶ୍ରେଣୀର ମୂର୍ତ୍ତି ସପ୍ତମ ଶତକର ବୋଲି ଐତିହାସିକ ସ୍ୱର୍ଗୀୟ ଡକ୍ଟର ଯଜ୍ଞ କୁମାର ସାହୁଙ୍କର ମତ । ତାଙ୍କ ମତରେ ଷଡ଼ଭୁଜା ଦୁର୍ଗାମୂର୍ତ୍ତି ଓଡ଼ିଶାରେ ବେଶି ଦେଖାଯାଆନ୍ତି ନାହିଁ । ଭୁବନେଶ୍ୱରର ବିନ୍ଦୁ ସରୋବର ପୂର୍ବ କୂଳରେ ଷଡ଼ଭୁଜା ମହିଷାସୁର ମର୍ଦ୍ଦିନୀ ଦେବୀଦ୍ୱାରବାସିନୀ ଦୁର୍ଗା ନାମରେ ପୂଜା ପାଉଛନ୍ତି । ଏ ପ୍ରକାର ଏକ ମୂର୍ତ୍ତି ଅସ୍ତରଙ୍ଗଠାରେ ଥିବାର ସେ ଉଲ୍ଲେଖ କରିଛନ୍ତି । ତାହା ସପ୍ତମ-ଅଷ୍ଟମ ଶତକର ବୋଲି କେତେକ ଐତିହାସିକ ମତବ୍ୟକ୍ତ କରିଛନ୍ତି । 'ଅଷ୍ଟଭୁଜା ଦୁର୍ଗାଙ୍କର ମୂର୍ତ୍ତି ଅଷ୍ଟମ-ନବମ ଶତକରୁ ଲୋକପ୍ରିୟତା ଲାଭ କଲା । ସେହି ଧରଣର ପ୍ରାଚୀନ ମୂର୍ତ୍ତି ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଦେଖାଯାଏ । ଝଙ୍କଡ଼ର ଶାରଳା ଦେବୀ, ଦେବୀନଦୀ କୂଳସ୍ଥ ଦେବୀଦୋଳର କୁଣ୍ଡାମଚଣ୍ଡୀ, ଅବିଭକ୍ତ କଟକ ଜିଲ୍ଲା (ବର୍ତ୍ତମାନର ଜଗତସିଂହପୁର ଜିଲ୍ଲା) ପ୍ରଭୃତି ବିଗ୍ରହ ସେହି ଶ୍ରେଣୀର ଅନ୍ତର୍ଭୁକ୍ତ । ଖ୍ରୀଷ୍ଟୀୟ ନବମ-ଦଶମ ଶତକରେ ଦଶଭୁଜା ଦୁର୍ଗା ମୂର୍ତ୍ତି କାକଟପୁରର ନିଆଳି ପ୍ରଭୃତିରେ ଦେଖାଯାଆନ୍ତି । ତେଣୁ ଐତିହାସିକମାନଙ୍କ ମତକୁ ଗ୍ରହଣ କଲେ ମା' ଶାରଳା ଅଷ୍ଟମରୁ ନବମ ଶତାବ୍ଦୀ ବୋଲି କହିବାକୁ ହେବ ।



ମା' ଶାରଳାଙ୍କ ସମ୍ପର୍କରେ କେତେକ କିମ୍ବଦନ୍ତୀ, ଲୋକକଥା, ପୌରାଣିକ ଆଖ୍ୟାୟିକାମାନ ରହିଅଛି । ସେଥିମଧ୍ୟରୁ ଦେବୀ ଭାଗବତ ଓ ରୁଦ୍ରଯାମଳ ତନ୍ତ୍ରରେ ବର୍ଣ୍ଣିତ ଆଖ୍ୟାନର ଅନୁକରଣରେ ପ୍ରଚଳିତ ଲୋକ ବିଶ୍ୱାସ ହେଉଛି - 'ସତୀ ସ୍ୱାମୀଙ୍କ ଅପମାନ ସହ୍ୟ କରି ନପାରି ପ୍ରଜ୍ୱଳିତ ଯଜ୍ଞକୁଣ୍ଡରେ ଆତ୍ମାହୁତି ଦେବା ପରେ ଶଙ୍କର କ୍ରୋଧାନ୍ୱିତ ହୋଇ ସତୀଙ୍କ ଅର୍ଦ୍ଧଦଗ୍ଧ ଶରୀରକୁ ନିଜ କାନ୍ଧରେ ବହନ କରି ତାଣ୍ଡବ ନୃତ୍ୟ କରୁଥିବାବେଳେ ନାରାୟଣ ଚକ୍ରରେ ସତୀଙ୍କ ଅଙ୍ଗଗୁଡ଼ିକ ଖଣ୍ଡ ଖଣ୍ଡ କରି ପୃଥିବୀ ବକ୍ଷରେ ନିକ୍ଷେପ କରିଥିଲେ । ସେହି ଅଂଶଗୁଡ଼ିକ ମଧ୍ୟରୁ ଜିହ୍ୱା ପଡ଼ିଥିବା ସ୍ଥାନରେ ବାଗ୍‌ଦେବୀ ଶାରଳା ଆବିର୍ଭୂତା ହୋଇଥିଲେ ।' ଅନ୍ୟ ଏକ ପୌରାଣିକ ଆଖ୍ୟାୟିକାରୁ ଜଣାଯାଏ ଯେ ଋଷି କୃପାଜଳ କଠୋର ତପସ୍ୟା କରି ବ୍ରହ୍ମପଦ ଲାଭ କରିଥିଲେ । ଋଷି ନିଜର ଆତ୍ମତୃପ୍ତି ଲାଭ ଆଶାରେ ସରସ୍ୱତୀଙ୍କୁ କନ୍ୟାରୂପରେ ପାଇବା ପାଇଁ ଅଭିଳାଷ କରିଥିଲେ । ସରସ୍ୱତୀ ଆବିର୍ଭୂତା ହୋଇ ଋଷିଙ୍କୁ ଦର୍ଶନ ଦେଇଥିଲେ ଏବଂ ପରେ ଅନ୍ତର୍ଦ୍ଧାନ ହୋଇଯାଇଥିଲେ । ଅନ୍ତର୍ଦ୍ଧାନ ହେବା ପୂର୍ବରୁ ଗୋଟିଏ ପଥର ଉପରେ ଶରମୂନରେ ଏକ ମହିଷାମର୍ଦ୍ଦିନୀ ଚିତ୍ର ଆଙ୍କି ଦେଇଥିଲେ । ଋଷି ସେହି ଚିତ୍ରାଙ୍କିତ ପ୍ରସ୍ତରକୁ ନିଜ ଆଶ୍ରମରେ

ରଖିଥିଲେ । ସେହି ଚିତ୍ରପଟ୍ଟ ଶିଳା କୃପାଜଳ ଋଷି ଆଶ୍ରମରେ ମାଟିତଳେ ପୋତି ହୋଇଯାଇଥିଲା । ତ୍ରେତୟା ଯୁଗରେ ଭଗବାନ ପର୍ଶୁରାମ ଅବତାର ଗ୍ରହଣ କରିଥିଲେ । ପର୍ଶୁରାମ କ୍ଷତ୍ରିୟ ନିଧନ ନିମିତ୍ତ ପୃଥିବୀ ପରିକ୍ରମା କରୁଥିବାବେଳେ ସେ ଯେଉଁ ସ୍ଥାନରେ ତାଙ୍କ ପରଶୁ ରଖୁଥିଲେ ତାହା ଦ୍ୱାଦଶ ଅଙ୍ଗୁଳି ପର୍ଯ୍ୟନ୍ତ ଭୂମିକୁ ଦବାଇ ଦେଉଥିଲା । କିନ୍ତୁ ଦିନେ ସେ ଯେଉଁଠାରେ ତାଙ୍କର ପରଶୁ ରଖିଲେ ସେଠାରେ ମାଟି ଦବିଲା ନାହିଁ । ତାହା ଦେଖି ପର୍ଶୁରାମ ଆଶ୍ଚର୍ଯ୍ୟ ହୋଇଗଲେ ଏବଂ ସେହି ସ୍ଥାନକୁ ଶରମୂନରେ ଖୋଲି ଦେଖିଲାବେଳେ ଏକ ପ୍ରସ୍ତର ରୂପ ବିଗ୍ରହ ଦୃଶ୍ୟ ହେଲା ଏବଂ ସେହି ବିଗ୍ରହ ଦେବୀ ଶାରଳା ଭୈରବୀ ରୂପରେ ପର୍ଶୁରାମଙ୍କୁ ଦର୍ଶନ ଦେଲେ । ତା'ପରେ ପର୍ଶୁରାମ ବୃଦ୍ଧା ନଦୀରେ ସ୍ନାନ କରି ଦେବୀଙ୍କୁ ପୂଜା କରିଥିଲେ । ପୂଜା ପରେ ପର୍ଶୁରାମ ତାଙ୍କ ପରଶୁକୁ ଦେବୀଙ୍କୁ ଅର୍ପଣ କରିଥିଲେ ଏବଂ ଦେବୀ ତାକୁ ଧାରଣ କରିଥିଲେ । ଏ ସଂପର୍କରେ ସାରଳା ଦାସ ତାଙ୍କ ରଚିତ ମହାଭାରତରେ ବର୍ଣ୍ଣନା କରିଛନ୍ତି -

'ଯେଉଁ କଟାରରେ ପର୍ଶୁରାମ ବୀର
ନିକ୍ଷେତ୍ରୀ କରିଲେ ପୃଥ୍ୱୀ ଏକବିଂଶ ବାର,
ସେ ରୁଧିର ନେଇ ବୀର ତରପଣ କଲେ
ଅବଶେଷେ ଭଇରବୀ ପୂଜା ସମାପିଲେ,
ସେ କଟାର ଜାମଦଗ୍ନ୍ୟ ଭୈରବୀଙ୍କୁ ଦେଲେ
ଭଇରବୀ ତାକୁ ନେଇ କରରେ ଧଇଲେ ।'
(ସ୍ୱର୍ଗାରୋହଣ ପର୍ବ)

ରାୟବାହାଦୁର ଚିନ୍ତାମଣି ଆଚାର୍ଯ୍ୟ ଉକ୍ତ ମତକୁ ଗ୍ରହଣ କରି ଶ୍ରୀ ଶାରଳା ଠାକୁରାଣୀ ପୁସ୍ତକରେ ଲେଖିଛନ୍ତି, 'ପର୍ଶୁରାମ ବୃଦ୍ଧାନଦୀ ନିକଟରେ ଭେଦ କରୁଥିବା ଚନ୍ଦ୍ରଭାଗା ତୀର୍ଥ ନଦୀକୂଳ ପର୍ଶୁରାମ ଘାଟ ନିକଟରେ ଶାରଳା ଦେବୀ ମୂର୍ତ୍ତିକୁ ପାଇଥିଲେ । ଜନଶ୍ରୁତିରେ ସାନ ସାରୋଳ ଗ୍ରାମରେ ପର୍ଶୁରାମଙ୍କ ସହିତ ଶାରଳା ଠାକୁରାଣୀଙ୍କ ଭେଟ ହୋଇଥିଲା । ସେହି ସ୍ଥାନ ନିକଟରେ ଥିବା ବରଗଛକୁ 'ଭେଟବର' ବୋଲି କୁହାଯାଉଛି ଏବଂ ସେଠାରେ ପୂଜା ନୀତି ଆଜି ପର୍ଯ୍ୟନ୍ତ ଚାଲୁ ରହିଅଛି । ଏହି 'ଭେଟବର' ନିକଟରେ ଶାରଳା ଦେବୀଙ୍କ ପ୍ରାଚୀନ ମନ୍ଦିର ଅବସ୍ଥିତ ଥିଲା । ଚିନ୍ତାମଣି ଆଚାର୍ଯ୍ୟଙ୍କ ମତରେ ପଞ୍ଚଦଶ ଶତାବ୍ଦୀରେ ଶାରଳା ମନ୍ଦିର ସାରୋଳ ଗ୍ରାମରେ ଅବସ୍ଥିତ ଥିଲା । କେତେକ କୁହନ୍ତି ୧୫୬୮ ଖ୍ରୀଷ୍ଟାବ୍ଦରେ ପ୍ରାଚୀନ ଶାରଳା ମନ୍ଦିର କଳାପାହାଡ଼ ଆକ୍ରମଣର ଶିକାର ହୋଇ ଧ୍ୱଂସପ୍ରାପ୍ତ ହୋଇଥିଲା । ଶାରଳା ମନ୍ଦିର ଧ୍ୱଂସ ପାଇବା ଦିନଠାରୁ ଭଗ୍ନ ମନ୍ଦିର ପୀଠକୁ 'ଲଣ୍ଡା ଦେଉଳ' ବୋଲି କୁହାଯାଏ । ବର୍ତ୍ତମାନ ସେଠାରେ ପୂର୍ବ ଶାରଳା ଠାକୁରାଣୀଙ୍କ ମନ୍ଦିରର ପାର୍ଶ୍ୱଦେବତା ଗଣେଶ ଏକ ନୂତନ ମନ୍ଦିରରେ ଅବସ୍ଥାପିତ ହୋଇଛନ୍ତି ।

ଶାକ୍ତ ଧର୍ମ ପ୍ରାକ୍ ବୈଦିକ ଯୁଗରୁ ଭାରତରେ ପ୍ରଚଳିତ ଥିବାର ପ୍ରମାଣ ସୈନ୍ଧବ ସଭ୍ୟତାର ବହୁ ସଂଖ୍ୟକ ମାତୃ ବିଗ୍ରହରୁ ମିଳିଥାଏ । ପ୍ରଥମତଃ ଏହା ଆର୍ଯ୍ୟୋତ୍ତର ଜାତିମାନଙ୍କର ମୁଖ୍ୟଧର୍ମ । ଏହା କେବେଠାରୁ ବ୍ରାହ୍ମଣ୍ୟ ଧର୍ମର ଶୈବ ପରମ୍ପରାର ଅଙ୍ଗୀଭୂତ ହେଲା ତାହା କହିବା କଠିନ । ଶାକ୍ତ ଧର୍ମର ପ୍ରତିଷ୍ଠାରେ ସାଂଖ୍ୟ ଦର୍ଶନ ବିଶେଷ ସହାୟକ ହୋଇଥିବା ମନେହୁଏ । ସାଂଖ୍ୟ ମତାନୁସାରେ ପୁରୁଷ ନିଷ୍କ୍ରିୟ ଓ ପ୍ରକୃତି ଶକ୍ତିର ପ୍ରତୀକ ଅଟେ । ତେଣୁ ପ୍ରକୃତି ସଂସର୍ଗରେ ଆସିଲେ ପୁରୁଷ ସକ୍ରିୟ ହୋଇଉଠେ । ବ୍ୟବହାରିକ ଧର୍ମରେ ତାଙ୍କୁ ଏକ ଦେବୀ ରୂପରେ କଳ୍ପନା କରାଗଲା ଏବଂ ତାଙ୍କ ସମ୍ବନ୍ଧରେ ଅନେକ ଗ୍ରନ୍ଥ ରଚନା କରାଗଲା । **ସେ ମହାଲକ୍ଷ୍ମୀ ରୂପରେ ଦେବଗଣଙ୍କୁ ସୃଷ୍ଟି କଲେ ଏବଂ ଦୁର୍ଗା ରୂପରେ ଅସୁରମାନଙ୍କୁ ସଂହାର କଲେ । ସରସ୍ୱତୀ ରୂପରେ ଜ୍ଞାନର ପ୍ରକାଶ କଲେ ଓ ଯୋଗନିଦ୍ରା ରୂପରେ ସମସ୍ତଙ୍କୁ ମହାଭିଭୂତ କଲେ । ଗୁପ୍ତଯୁଗରୁ ଏହି ଦେବୀଙ୍କର ପୂଜା ଲୋକପ୍ରିୟ ହେଲା ।** ପ୍ରାଚୀନ ଯୁଗରୁ ଦେବାଦେବୀମାନେ ପର୍ବତ କନ୍ଦର, ଗୁମ୍ଫା କିମ୍ବା ବୃକ୍ଷମୂଳରେ ପୂଜା ପାଉଥିଲେ । ମନୁଷ୍ୟ ସଭ୍ୟତାର ବିକାଶକ୍ରମରେ ସେମାନେ ମାଟି ତିଆରି ଗମ୍ଭୀରାରେ, ମାଟିପୋଡ଼ା ଟାଇଲ୍ ଓ ଛପର ଘରେ ପୂଜା ପାଇଲେ । ଏହି ମାଟିପୋଡ଼ା ଟାଇଲ ଗୃହ (ମନ୍ଦିର) ଷଷ୍ଠ ଶତାବ୍ଦୀ ପୂର୍ବରୁ ବୋଲି ମନେ କରାଯାଏ । ମନ୍ଦିର ନିର୍ମାଣକାଳ ଷଷ୍ଠ ଶତାବ୍ଦୀ ପରବର୍ତ୍ତୀ କାଳର ହୋଇଥିବାରୁ ହୁଏତ ମା' ଶାରଳା କୌଣସି ମାଟି ଗମ୍ଭୀରାରେ ବା ଟାଇଲ ପୋଡ଼ା ଘରେ ରହି ପୂଜା ପାଉଥିବାର ଅନୁମାନ କରାଯାଏ ।

ମା' ଶାରଳା ସେହି ଯୁଗର ଦେବୀ ଯେଉଁ ଯୁଗରେ ଦୁର୍ଗାଙ୍କୁ ସର୍ବଶକ୍ତି ସମ୍ପନ୍ନା ବୋଲି ଅଭିହିତ କରାଗଲା । ଶାରଳାଙ୍କ ସମୟ ଯଦି ଅଷ୍ଟମ-ନବମ ଶତାବ୍ଦୀ ହୁଏ ସେ ଉତ୍କଳର ପ୍ରାଚୀନ ଦୁର୍ଗାମୂର୍ତ୍ତି ମଧ୍ୟରୁ ଅନ୍ୟତମ । ଶାରଳା ଅଷ୍ଟଭୁଜା । ଶାରଳାଙ୍କ ବାମ ହସ୍ତରେ ଥିବା ଘଣ୍ଟି ଓ ମହିଷାସୁରର ଅବସ୍ଥାନ ଅନ୍ୟାନ୍ୟ ଦୁର୍ଗାମୂର୍ତ୍ତିଠାରୁ ସ୍ୱତନ୍ତ୍ର । ଦେବୀ ମହିଷାମର୍ଦ୍ଦିନୀ ହେଲେ ମଧ୍ୟ ବାଗ୍‌ଦେବୀ ଭାବରେ ପୂଜିତା । ତାଙ୍କ ଦକ୍ଷହସ୍ତ ଚତୁଷ୍ଟୟରେ ବୀଣା, ପୁସ୍ତକ, ଖଡ୍ଗ, ଶୂଳ ରହିଅଛି । ବାମ ହସ୍ତ ଚତୁଷ୍ଟୟରେ

ଶାରଳାଙ୍କ ବାମ ହସ୍ତରେ ଥିବା ଘଣ୍ଟି ଓ ମହିଷାସୁରର ଅବସ୍ଥାନ ଅନ୍ୟାନ୍ୟ ଦୁର୍ଗାମୂର୍ତ୍ତିଠାରୁ ସ୍ୱତନ୍ତ୍ର । ଦେବୀ ମହିଷାମର୍ଦ୍ଦିନୀ ହେଲେ ମଧ୍ୟ ବାଗ୍‌ଦେବୀ ଭାବରେ ପୂଜିତା । ତାଙ୍କ ଦକ୍ଷହସ୍ତ ଚତୁଷ୍ଟୟରେ ବୀଣା, ପୁସ୍ତକ, ଖଡ୍ଗ, ଶୂଳ ରହିଅଛି । ବାମ ହସ୍ତ ଚତୁଷ୍ଟୟରେ ଢାଲ, ଧନୁ, ମହିଷାସୁରର ମୁଖ ଓ ଘଣ୍ଟି ରହିଅଛି । ଦେବୀ ତାଙ୍କ ଦକ୍ଷପାଦ ମହିଷାସୁରର ପୃଷ୍ଠ ଦେଶରେ ସ୍ଥାପନ କରିଛନ୍ତି ଏବଂ ତାହାର ଉଦ୍ୟତ ମୁଖଦେଶକୁ ବାମହସ୍ତ ଦ୍ୱାରା ଠେଲି ଧରିଛନ୍ତି । ସିଂହ ତାଙ୍କ ଦକ୍ଷଭାଗରେ ଖୁବ୍ କ୍ଷୁଦ୍ର ଭାବରେ ଖୋଦିତ ହୋଇଅଛି । ତତ୍ତ୍ୱଜ୍ଞ ଶିଳ୍ପୀ ଚଣ୍ଡୀଙ୍କର ସର୍ବଶକ୍ତିମୟୀ ରୂପକୁ ଶାରଳାଙ୍କ ମୂର୍ତ୍ତିରେ କଳ୍ପନା କରିଛନ୍ତି ।

ଢାଲ, ଧନୁ, ମହିଷାସୁରର ମୁଖ ଓ ଘଣ୍ଟି ରହିଅଛି । ଦେବୀ ତାଙ୍କ ଦକ୍ଷପାଦ ମହିଷାସୁରର ପୃଷ୍ଠ ଦେଶରେ ସ୍ଥାପନ କରିଛନ୍ତି ଏବଂ ତାହାର ଉଦ୍ୟତ ମୁଖଦେଶକୁ ବାମହସ୍ତ ଦ୍ୱାରା ଠେଲି ଧରିଛନ୍ତି । ସିଂହ ତାଙ୍କ ଦକ୍ଷଭାଗରେ ଖୁବ୍ କ୍ଷୁଦ୍ର ଭାବରେ ଖୋଦିତ ହୋଇଅଛି । ତନ୍ତ୍ରଜ୍ଞ ଶିଳ୍ପୀ ଚଣ୍ଡୀଙ୍କର ସର୍ବଶକ୍ତିମୟୀ ରୂପକୁ ଶାରଳାଙ୍କ ମୂର୍ତ୍ତିରେ କଳ୍ପନା କରିଛନ୍ତି । ବୈଷ୍ଣବୀ ଦୁର୍ଗାଙ୍କର ମୂର୍ତ୍ତିରୁ ସେ ମହିଷାମର୍ଦ୍ଦିନୀ ଦୁର୍ଗା ଓ ଅନ୍ୟପକ୍ଷରେ ସରସ୍ୱତୀ, ମାତ୍ର ତାଙ୍କଠାରେ ବୈଷ୍ଣବୀ ପ୍ରଭାବ ଅଧିକ ଅନୁଶ୍ରୁତ । ବର୍ଷସାରା ତୁଳସୀ ପତ୍ରରେ ବନଦୁର୍ଗା ମନ୍ତ୍ରରେ (ଉଡ଼ିଷ୍ଠ ପୁରୁଷି) ପୂଜା ହୁଅନ୍ତି । ମାତ୍ର ମହାଷ୍ଟମୀ ଦିନ ବିଲ୍ୱ ଦଳରେ ଭୋଗ ହୁଏ । ପର୍ବପର୍ବାଣିମାନଙ୍କରେ ଶୈବ ଓ ବୈଷ୍ଣବ ଉଭୟ ଉପଚାରରେ ପର୍ବ ପାଳିତ ହୁଏ । ଦେବୀଙ୍କର ଧ୍ୟାନର ବିଭିନ୍ନ ଶ୍ଳୋକ ମଧ୍ୟରୁ ଗୋଟିଏ ଉଦ୍ଧାର କରାଗଲା । ତାହା ହେଲା -

କାର୍ତ୍ତିକ ମାସରେ ପରମ ବୈଷ୍ଣବୀ ଦେବୀ ରୂପେ ସାରଳା ତୁଳସୀମାଳା ପିନ୍ଧନ୍ତି । ମାଣବସାରେ ଲକ୍ଷ୍ମୀପୂଜା ହୁଏ । ଶ୍ରୀପଞ୍ଚମୀ ଦିନ ସରସ୍ୱତୀ ପୂଜା ମଧ୍ୟ ହୋଇଥାଏ । ଫାଲଗୁନ ମାସରେ ଦୋଳ, ବୈଶାଖରେ ଚନ୍ଦନଯାତ୍ରା (ସବୁ ବୈଷ୍ଣବାଚାରରେ) ଓ ଆଶ୍ୱିନ ମାସର ମୂଳାଷ୍ଟମୀଠାରୁ ବିଜୟାଦଶମୀ ପର୍ଯ୍ୟନ୍ତ ଶାକ୍ତ ତାନ୍ତ୍ରିକ ରୀତିରେ ପୂଜାର୍ଚ୍ଚନା କରାଯାଏ ।

'ସିଂହସ୍ୟୋପରିଦତ୍ତ ଦକ୍ଷଚରଣାଂ ବିଭ୍ରାଜମାନାଂ ଶୁଭାମ୍<br>
ବୀଣା ପୁସ୍ତକ ଖଡ୍ଗ ଶୂଳ ଦଧତୀଂ ଦକ୍ଷକରାମ୍ଭୋରୁ ହୈଃ ।<br>
ଘଣ୍ଟା କାର୍ମୁକ ପଟ୍ଟୀଶା ସୁରକଚାନ୍ ବାମୈଃବକରୈ ର୍ବିଭ୍ରତୀଂ<br>
ଭିନ୍ଦନ୍ତୀଂ ମହିଷାଂ ନମାମି ବରଦାଂ ବାଗ୍‌ଦେବତାଂ ଶାରଦାମ୍ ।'

କାର୍ତ୍ତିକ ମାସରେ ପରମ ବୈଷ୍ଣବୀ ଦେବୀ ରୂପେ ସାରଳା ତୁଳସୀମାଳା ପିନ୍ଧନ୍ତି । ମାଣବସାରେ ଲକ୍ଷ୍ମୀପୂଜା ହୁଏ । ଶ୍ରୀପଞ୍ଚମୀ ଦିନ ସରସ୍ୱତୀ ପୂଜା ମଧ୍ୟ ହୋଇଥାଏ । ଫାଲଗୁନ ମାସରେ ଦୋଳ, ବୈଶାଖରେ ଚନ୍ଦନଯାତ୍ରା (ସବୁ ବୈଷ୍ଣବାଚାରରେ) ଓ ଆଶ୍ୱିନ ମାସର ମୂଳାଷ୍ଟମୀଠାରୁ ବିଜୟାଦଶମୀ ପର୍ଯ୍ୟନ୍ତ ଶାକ୍ତ ତାନ୍ତ୍ରିକ ରୀତିରେ ପୂଜାର୍ଚ୍ଚନା କରାଯାଏ । ପୂର୍ବେ ମହାଷ୍ଟମୀ ଦିନ ରାତିରେ ମଇଁଷି ବଳି ପଡୁଥିଲା । କୁଜଙ୍ଗର ଷଣ୍ଢରାଜା ମହାଷ୍ଟମୀ ଦିନ ମଇଁଷିବଳି ପଠାଉଥିଲେ । ମାତ୍ର ୧୯୪୬ ମସିହାରେ ଏହି ବଳି ପ୍ରଥା ବନ୍ଦ ହୋଇଯାଇଛି । ମନ୍ଦିରର ସେବାପୂଜା କରିବାକୁ ଦୁଇପ୍ରକାର ସେବକ, ଜଣେ ପୁରୋହିତ ଓ ଜଣେ ଚଣ୍ଡୀପାଠକ ଅଛନ୍ତି । ମନ୍ଦିରରେ ପ୍ରତିଦିନ ଚଣ୍ଡୀପାଠ ହୁଏ । ଏହି ଦୁଇ ପ୍ରକାର ସେବକ ହେଲେ ପଣ୍ଡା ଓ ରାଉଳ । ସେମାନଙ୍କ ମଧ୍ୟରେ ଜଣେ ବଡ଼ପଣ୍ଡା ଅଛନ୍ତି । ପୂଜାରେ ମୁଖ୍ୟ ଅଧିକାର ତାଙ୍କର । ବ୍ରାହ୍ମଣ ସେବକମାନେ ଭୋଗ ଲଗାନ୍ତି ଏବଂ ରାଉଳମାନେ ସ୍ନାନ, ବେଶ, ପୂଜାର ସମସ୍ତ ସାମଗ୍ରୀ ଯୋଗାଡ଼, ଗହଣା, ଲୁଗା ଏ ସମସ୍ତ ସାଇତି ରଖନ୍ତି । ମନ୍ଦିରର ପରିଚାଳନା ଏକ ଟ୍ରଷ୍ଟବୋର୍ଡ଼ ଦ୍ୱାରା ସମାହିତ ହୁଏ । ଠାକୁରାଣୀଙ୍କ ଦୈନିକ ନୀତି ପୂର୍ବାହ୍ନ ୬ ଘଟିକାରୁ ଆରମ୍ଭ ହୋଇ ପୂର୍ବାହ୍ନ ୧୨ ଘଟିକାରେ ଅବକାଶ ହୁଏ ଏବଂ ଅପରାହ୍ନ ୩ ଘଟିକାରୁ ଆରମ୍ଭ ହୋଇ ରାତ୍ର ୧୧ ଘଟିକାରେ ଅବକାଶ ହୁଏ । ମନ୍ଦିରରେ ପଣାସଂକ୍ରାନ୍ତି, ଚନ୍ଦନଯାତ୍ରା, ସାବିତ୍ରୀ ଅମାବାସ୍ୟା, ରଜସଂକ୍ରାନ୍ତି, ରଥଯାତ୍ରା, ଚିତାଲାଗି ଅମାବାସ୍ୟା, ଗହ୍ମାଭିଷେକ, ଜନ୍ମାଷ୍ଟମୀ, ସପ୍ତପୁରୀ ଅମାବାସ୍ୟା, ଗଣେଶବ୍ରତ, ସୁନିଆଁ, ନୂଆଚୁଡ଼ା ଲାଗି, ଶାରଦୀୟ ପାର୍ବଣ, କୁମାର ପୂର୍ଣ୍ଣମୀ, ଦୀପାବଳି, ରାସଯାତ୍ରା, ପ୍ରଥମାଷ୍ଟମୀ, ମାଣବସା, ଗୁରୁବାର, ଧନୁସଂକ୍ରାନ୍ତି, ବକୁଳ ଅମାବାସ୍ୟା, ଶାମ୍ବଦଶମୀ, ପୁଷ୍ୟାଭିଷେକ, ମକର ସଂକ୍ରାନ୍ତି, ସରସ୍ୱତୀ ପୂଜା, ମାଘ ସପ୍ତମୀ, ସପ୍ତାବଡ଼ା, ଅଗ୍ନି ଉତ୍ସବ, ଜାଗରଯାତ୍ରା, ଦୋଳଯାତ୍ରା, ଘଣ୍ଟତୋଳା ସଂକ୍ରାନ୍ତି, ଚୈତ୍ରପାର୍ବଣ, ଚୈତ୍ର ପୂର୍ଣ୍ଣିମା ଇତ୍ୟାଦି ପାଳିତ ହୁଏ । **ଶାରଳା ମନ୍ଦିରରେ ତିନୋଟି ପ୍ରଧାନ ଯାତ୍ରା ପାଳନ କରାଯାଏ । ସେଗୁଡ଼ିକ ହେଲା ପଣାସଂକ୍ରାନ୍ତି, ରଜସଂକ୍ରାନ୍ତି ଓ ମହାଷ୍ଟମୀ । ଏହାବ୍ୟତୀତ ବାରମାସରେ ତେରପର୍ବ ପାଳିତ ହୁଏ ।** ମହାବିଷୁବ ସଂକ୍ରାନ୍ତି ପୂର୍ବରୁ କୁମ୍ଭ ସଂକ୍ରାନ୍ତି ଦିନ ରାଉଳ ସେବକମାନେ ବିଭିନ୍ନ ଅଞ୍ଚଳକୁ ଯାଇଥାନ୍ତି । ଘଣ୍ଟ ବଜାଇ ଗୋଡ଼ରେ ରଣପା ପିନ୍ଧି, ନାଚିକୁଦି ଘଟପୂଜା କରିଥାନ୍ତି । ପଣା ସଂକ୍ରାନ୍ତି ଦିନ ପଟୁଆରରେ ଠାକୁରାଣୀଙ୍କ ବିଜେ ପ୍ରତିମା 'ଚରଖି ପଡ଼ିଆ' (ନଣ୍ଡା ଦେଉଳ)କୁ ଯାଆନ୍ତି । ଚରଖି ପଡ଼ିଆରେ ରାଉଳ ସେବକମାନେ ଗୋଡ଼ରେ ରଣପା ପିନ୍ଧି ନାଚକୁଦ କରନ୍ତି । ସେଠାରେ ଗୋଟିଏ ପହଣୀରେ ନିଆଁ ଜଳୁଥିବା ବେଳେ ସେଥିରେ ଝୁଣା ପଡ଼ିଥାଏ । ହଳଦିପାଣି ଦୁଇମୁଣ୍ଡରେ ଥାଏ । ହଳଦି ପାଣିରେ ଗୋଡ଼ ବୁଡ଼ାଇ ସେହି ନିଆଁ ପହଣୀ ଉପରେ ତିନିଥର ଯା'ଆସ କରନ୍ତି । ସେଠାରୁ ବିଜେ ପ୍ରତିମା ଫେରି ଆସନ୍ତି । ଆଶ୍ୱିନ କୃଷ୍ଣ ଅଷ୍ଟମୀଠାରୁ ଦଶହରା ପର୍ଯ୍ୟନ୍ତ ପାର୍ବଣ ପର୍ବ ।

ପଞ୍ଚଦଶ ଶତାବ୍ଦୀରେ ଶାରଳା ମନ୍ଦିର କନକାବତୀ ପାଟଣା ସାରୋଳ ଗ୍ରାମରେ ଅବସ୍ଥିତ ଥିଲା, ଯାହା ପୂର୍ବରୁ ବର୍ଣ୍ଣନା କରାଯାଇଛି । **ଆକବର ମୁସଲମାନ ଶାସକ ଥିଲେ ମଧ୍ୟ ଶାରଳା ମନ୍ଦିର ଉପରେ କୌଣସି ହସ୍ତକ୍ଷେପ କରିନଥିଲେ ।** ଆକବରଙ୍କ ସମୟରେ ଆଫ୍‌ଗାନ ପଠାଣ ସୁଲେମାନଙ୍କ ସେନାପତି କଳାପାହାଡ଼ ଓଡ଼ିଶା ଆକ୍ରମଣ କରିଥିଲା । କଳାପାହାଡ଼ ଶାରଳା ମନ୍ଦିର ଲୁଣ୍ଠନ କରିଥିବା ବେଳେ ରାଉଳମାନେ ମା' ଶାରଳାଙ୍କୁ ମାଣିକ ପୋଖରୀରେ ନେଇ ଲୁଚାଇ ରଖିଥିଲେ । ସେ ଲୁଣ୍ଠନ କରି ଚାଲିଯିବା ପରେ ଶାରଳାଙ୍କୁ ପୁନର୍ବାର ମନ୍ଦିରରେ ସ୍ଥାପନ କରିଥିବା କଥା ଜନଶ୍ରୁତିରେ ପ୍ରଚଳିତ । ଐତିହାସିକ ତଥ୍ୟ ଅନୁସାରେ ଆଉରଙ୍ଗଜେବ ୧୬୬୯ ଖ୍ରୀଷ୍ଟାବ୍ଦରେ ହିନ୍ଦୁ ମନ୍ଦିର ଭାଙ୍ଗିବାକୁ ଆଞ୍ଚଳିକ କର୍ମକର୍ତ୍ତାଙ୍କୁ ନିର୍ଦ୍ଦେଶ ଦେଇଥିଲେ । ୧୬୯୬ରେ ଆଉରଙ୍ଗଜେବ ବିଲଗ୍ରାମର ମୀରସୟଦ ଅହମ୍ମଦଙ୍କୁ ଜଗନ୍ନାଥ ମନ୍ଦିର

ସମେତ ଓଡ଼ିଶାର ମନ୍ଦିରଗୁଡ଼ିକ ଭାଙ୍ଗିବାକୁ ନିର୍ଦ୍ଦେଶ ଦେଇଥିଲେ । (ଓଡ଼ିଶା ଇତିହାସ-ଡକ୍ଟର ହରେକୃଷ୍ଣ ମହତାବ, ଦ୍ୱିତୀୟ ଖଣ୍ଡ, ୧୯୯୬, ପୃ.୧୦୮) କିନ୍ତୁ ଶାରଳା ମନ୍ଦିର ଭଙ୍ଗା କଥା ଇତିହାସରେ ନାହିଁ । ମାତ୍ର ଜନଶ୍ରୁତି କହେ ମୋଗଲ ସୈନ୍ୟମାନେ ଶାରଳା ମନ୍ଦିର ଭାଙ୍ଗିବା ପୂର୍ବରୁ ରାଉଳମାନେ ତେନ୍ତୁଳିଆପଦା ଗ୍ରାମ ନିକଟସ୍ଥ ଶାଳଜଙ୍ଗଲ (ଶାଳଜଙ୍ଗା) ମଧ୍ୟରେ ଥିବା ଏକ ବିଲ ମଧ୍ୟରେ ଲୁଚାଇ ରଖିଥିଲେ । ସେଠାର ଲୋକମାନେ ଲୁକାୟିତ ଭାବେ ପୂଜାର୍ଚ୍ଚନା କରୁଥିଲେ । ମୋଗଲମାନେ ବିଗ୍ରହକୁ ନପାଇ ମନ୍ଦିରକୁ ଭାଙ୍ଗି ଚୁର୍‌ମାର କରି ଦେଇଥିଲେ । ମରହଟ୍ଟାମାନେ ୧୭୫୧ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଦଖଲ କରିଥିଲେ । ସେତେବେଳେ ମୁସଲମାନମାନଙ୍କ ଅତ୍ୟାଚାର ଲାଗି ରହିଥିଲା, ସେଠାରେ ରାଜପୁତ ଜାତି ପରିବାର ସ୍ଥାପନ କରାଯାଇଥିଲା । ମୂଳସିଂ (ତିର୍ତ୍ତୋଲ)ଠାରେ ବହୁ ମୁସଲମାନ ପରିବାର ଥିବାରୁ ମୁସଲମାନ ବସ୍ତି ଏବଂ ହିନ୍ଦୁ ମନ୍ଦିର ମଝିରେ କେତୋଟି ରାଜପୁତ ପରିବାର ସ୍ଥାପନ କରାଯାଇଥିଲା ଏବଂ ସେମାନଙ୍କ ବଂଶଧର ଏବେ ମଧ୍ୟ ରହିଅଛନ୍ତି । ଶାରଳା ମନ୍ଦିର ଏବଂ ରାଜପୁତମାନଙ୍କ ମଧ୍ୟରେ ଏକ ନିବିଡ଼ ସଂପର୍କ ରହିଆସିଛି । ମୁସଲମାନମାନଙ୍କଦ୍ୱାରା ବହୁବାର ମନ୍ଦିର ଧ୍ୱସ୍ତବିଧ୍ୱସ୍ତ ହୋଇଥିବାରୁ ସାରଳା ଦାସଙ୍କ ବର୍ଣ୍ଣନାନୁସାରେ ଚନ୍ଦ୍ରଭାଗା ନଦୀପଠାରେ ଶାରଳାଙ୍କୁ ଅବସ୍ଥାପନା କରାଯାଇଥିଲା । ଠାକୁରାଣୀଙ୍କ ପୂଜା ପାଇଁ ଏକ କାଷ୍ଠମନ୍ଦିର ନିର୍ମାଣ କରାଯାଇଥିଲା । ସେହି ମନ୍ଦିରରେ ଠାକୁରାଣୀ ବହୁଦିନ ରହିଥିଲେ । ମରହଟ୍ଟାମାନଙ୍କ ସମୟରେ ନୂତନ ମନ୍ଦିରର ଭିତ୍ତିପ୍ରସ୍ତର ସ୍ଥାପନ କରାଯାଇଥିଲା । ୧୯୦୩ ମସିହାରେ ମନ୍ଦିର ଶେଷ ହୋଇଥିଲେ ମଧ୍ୟ ମନ୍ଦିର ଚୂଡ଼ାଚକ୍ର ସ୍ଥାପନ ହୋଇ ପାରିନଥିଲା । କାଷ୍ଠ ମଣ୍ଡପରେ ଠାକୁରାଣୀ ରହିଥିବାବେଳେ ମଣ୍ଡପରେ ନିଆଁ ଲାଗିଯାଇଥିବାରୁ ଅର୍ଦ୍ଧନିର୍ମିତ ମନ୍ଦିରରେ ଠାକୁରାଣୀଙ୍କୁ ସ୍ଥାପନ କରାଯାଇଥିଲା । ୧୯୧୪ ମସିହାରେ ଶାସ୍ତ୍ରାନୁମୋଦିତ ବିଧିରେ ମନ୍ଦିର ପ୍ରତିଷ୍ଠା କରାଯାଇଥିଲା । ନୂତନ ଶାରଳା ମନ୍ଦିର ଅତ୍ୟନ୍ତ ପ୍ରାଚୀନ ନହେଲେ ମଧ୍ୟ ଗଠନ ରୀତି ଅତ୍ୟନ୍ତ ଆକର୍ଷଣୀୟ । ବର୍ତ୍ତମାନର ମନ୍ଦିର ତିର୍ତ୍ତୋଲ ବ୍ଲକ୍‌ର କନକପୁରଠାରେ ଅବସ୍ଥିତ । ଏହି ପ୍ରସିଦ୍ଧ ମନ୍ଦିର କଟକ ପାରାଦ୍ୱୀପ ରାସ୍ତାର ଦକ୍ଷିଣପାର୍ଶ୍ୱରେ ଅବସ୍ଥିତ । ପାରାଦ୍ୱୀପ ରାସ୍ତାଠାରୁ ଶାରଳାଙ୍କ ମନ୍ଦିର ପର୍ଯ୍ୟନ୍ତ ୫ କି.ମି. ରାସ୍ତାର ନାମ 'ଶାରଳା ରୋଡ଼' । ଶାରଳା ମନ୍ଦିରର ବେଢ଼ା ମଧ୍ୟରେ ଏକ ଶିବ ମନ୍ଦିର ଓ ଅନ୍ୟଗୋଟିଏ ଜଗନ୍ନାଥ ମନ୍ଦିର ଅଛି । ମନ୍ଦିର ସିଂହଦ୍ୱାର ସମ୍ମୁଖରେ ଏକ ସୁରମ୍ୟ ମଣ୍ଡପ ସହିତ ସାରଳା ଦାସଙ୍କ ସ୍ମୃତିସ୍ତମ୍ଭ ନିର୍ମାଣ କରାଯାଇଛି । ମନ୍ଦିରର ଦକ୍ଷିଣ ଦ୍ୱାର ସମ୍ମୁଖରେ ବିରାଟ ଚନ୍ଦନ ପୋଖରୀ ରହିଅଛି ।

ସାରଳାଙ୍କ ମାହାତ୍ମ୍ୟର ବିରାଟ ଇତିହାସକୁ ଏହି କ୍ଷୁଦ୍ର ଲେଖାଟି ମଧ୍ୟରେ ଉପସ୍ଥାପିତ କରିବା ଆଦୌ ସମ୍ଭବ ନୁହେଁ । ଏ ଲେଖାଟି ସେ ବିରାଟ ଇତିହାସର ଏକ ଆଭାସ ମାତ୍ର ।

**ସହାୟକ ଗ୍ରନ୍ଥ**


୧. ଜଗତସିଂହପୁର - ଅତୀତ ଓ ବର୍ତ୍ତମାନ, ସଂକଳକ- ଡକ୍ଟର ଭୋଳାନାଥ ରାଉତ

୨. History of Orissa - Dr. K.C. Panigrahi

୩. ଓଡ଼ିଶା ଇତିହାସ - ଡକ୍ଟର ହରେକୃଷ୍ଣ ମହତାବ

୪. ଓଡ଼ିଶା ଇତିହାସ - ଡକ୍ଟର ଯଜ୍ଞ କୁମାର ସାହୁ

୫. ଶ୍ରୀ ଶାରଳା ଠାକୁରାଣୀ - ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟ



ଦୁର୍ଗାବଜାର
ଜଗତସିଂହପୁର


# କଲେଜ ଛାତ୍ର ସଂସଦ ନିର୍ବାଚନ ଅକ୍ଟୋବର ୨୩ରେ ହେବ

ରାଜ୍ୟର ସମସ୍ତ ସରକାରୀ ଓ ଅନୁଦାନପ୍ରାପ୍ତ ବେସରକାରୀ ମହାବିଦ୍ୟାଳୟଗୁଡ଼ିକର ଛାତ୍ର ସଂସଦ ନିର୍ବାଚନ ତା.୨୩.୧୦.୨୦୦୮ରିଖ ଦିନ ହେବା ନିମନ୍ତେ ନିଷ୍ପତ୍ତି ହୋଇଛି । ଗତ ସେପ୍ଟେମ୍ବର ୨୨ ତାରିଖ ସଚିବାଳୟଠାରେ ଉଚ୍ଚ ଶିକ୍ଷା ମନ୍ତ୍ରୀ ଶ୍ରୀ ସମୀର ଦେଙ୍କ ଅଧ୍ୟକ୍ଷତାରେ ଏକ ଉଚ୍ଚସ୍ତରୀୟ ବୈଠକ ଅନୁଷ୍ଠିତ ହୋଇଥିଲା । ରାଜ୍ୟରେ ଦେଖାଦେଇଥିବା ଭୟଙ୍କର ବନ୍ୟା ପରିସ୍ଥିତି ଦୃଷ୍ଟିରୁ କଲେଜ ନିର୍ବାଚନ ତା.୨୩.୧୦.୨୦୦୮ରିଖରେ କରାଯିବା ପାଇଁ ମନ୍ତ୍ରୀ ଶ୍ରୀ ଦେ କହିଥିଲେ । ଏହି ନିର୍ବାଚନକୁ ଶାନ୍ତିଶୃଙ୍ଖଳାର ସହ ସଂପନ୍ନ କରିବା ପାଇଁ ମନ୍ତ୍ରୀ ଶ୍ରୀ ଦେ ସମସ୍ତ ଅଧ୍ୟକ୍ଷମାନଙ୍କୁ ନିର୍ଦ୍ଦେଶ ଦେଇଛନ୍ତି । ନୂତନ କାର୍ଯ୍ୟସୂଚୀ ଅନୁଯାୟୀ ନିର୍ବାଚନ ବିଜ୍ଞପ୍ତି ତା.୧୬.୧୦.୨୦୦୮ରିଖରେ ପ୍ରକାଶ ପାଇବ । ନାମାଙ୍କନପତ୍ର ଦାଖଲ ତା.୧୮.୧୦.୨୦୦୮ରିଖ (ଶନିବାର) ସକାଳ ୯ ଘଟିକାରୁ ୧୨ ଘଟିକା । ନାମାଙ୍କନ ପତ୍ର ଯାଞ୍ଚ ତା.୧୮.୧୦.୨୦୦୮ରିଖ (ଶନିବାର) ଅପରାହ୍ଣ ୧ ଘଟିକାରୁ ୩ ଘଟିକା । ବୈଧ ତାଲିକା ପ୍ରକାଶନ ତା.୨୦.୧୦.୨୦୦୮ରିଖ (ସୋମବାର) ପୂର୍ବାହ୍ଣ ୧୧ ଘଟିକା । ନାମାଙ୍କନ ପତ୍ର ପ୍ରତ୍ୟାହର ତା.୨୦.୧୦.୨୦୦୮ରିଖ (ସୋମବାର) ଅପରାହ୍ଣ ୨ ଘଟିକାରୁ ୪ ଘଟିକା ଚୂଡ଼ାନ୍ତ ପ୍ରାର୍ଥୀ ତାଲିକା ପ୍ରକାଶନ ତା.୨୦.୧୦.୨୦୦୮ରିଖ (ସୋମବାର) ସନ୍ଧ୍ୟା ୫ ଘଟିକା । ମୁଁ କାହିଁକି ପ୍ରାର୍ଥୀ ହେଲି ସଭା ତା.୨୨.୧୦.୨୦୦୮ରିଖ (ବୁଧବାର) । ନିର୍ବାଚନ (ଭୋଟ ଗ୍ରହଣ ଦିନ) ତା.୨୩.୧୦.୨୦୦୮ରିଖ (ଗୁରୁବାର) ସକାଳ ୮ ଘଟିକାରୁ ଅପରାହ୍ଣ ୨ ଘଟିକା । ଭୋଟ ଗଣତି ଓ ଫଳାଫଳ ଘୋଷଣା ତା.୨୩.୧୦.୨୦୦୮ରିଖ (ଗୁରୁବାର) ଅପରାହ୍ଣ ୨ ଘଟିକାରୁ ସନ୍ଧ୍ୟା ୬ ଘଟିକା । ଶପଥ ଗ୍ରହଣ ଉତ୍ସବ ତା.୨୪.୧୦.୨୦୦୮ରିଖ (ଶୁକ୍ରବାର) ।

# ଓଡ଼ିଶାର ଶାକ୍ତ ପରମ୍ପରା ଓ ମା' ଦେବୀ ଚର୍ଚ୍ଚିକା

ଶ୍ରୀନିବାସ ଆଚାର୍ଯ୍ୟ

**ଭା**ରତୀୟ ଧାର୍ମିକ ପରମ୍ପରାରେ ଶକ୍ତି ଉପାସନାର ସ୍ଥାନ ଅଦ୍ୱିତୀୟ । ସମଗ୍ର ଭାରତରେ ଜୈନ, ବୌଦ୍ଧ, ବୈଷ୍ଣବ, ଶୈବ ଓ ଶାକ୍ତ ଧର୍ମର ବହୁଳ ପ୍ରଚାର ଓ ପ୍ରସାର ହେଉଥିଲେ ମଧ୍ୟ ଶାକ୍ତ ଧର୍ମର ମହତ୍ତ୍ୱ ଅତୀବ ଗୁରୁତ୍ୱପୂର୍ଣ୍ଣ । କାରଣ ଜଗତର ସମସ୍ତ କାର୍ଯ୍ୟ ସାଧନରେ ତଥା ସୃଷ୍ଟି, ପାଳନ ଓ ସଂହାର କାର୍ଯ୍ୟରେ ମୂଳ ଉତ୍ସ ହେଉଛି ଶକ୍ତି ବା ନାରୀ ରୂପିଣୀ ମା' ଦେବୀ । ପ୍ରାଚୀନ ଉତ୍କଳରେ ଶାକ୍ତଧର୍ମ ତଥା ଶକ୍ତି, ଯୁଗ ପରେ ଯୁଗ ଧରି ବିଭିନ୍ନ ଅବସ୍ଥା ଓ ରୂପରେ ଆବିର୍ଭାବ ହୋଇଥିବାର ପୁରାଣ, ଶାସ୍ତ୍ର, ବେଦ, ବେଦାନ୍ତ ଓ ଉପନିଷଦରେ ଲିପିବଦ୍ଧ ହୋଇଅଛି । ଆଜି ମଧ୍ୟ ଏହିସବୁ ଶକ୍ତିପୀଠଗୁଡ଼ିକର ମହିମା ଓ ଗୁଣଗାରିମା ମୂକସାକ୍ଷୀ ପରି ପବିତ୍ର ଓଡ଼ିଶା ମାଟିରେ ବିରାଜିତ ।



ଜଡ଼ ପ୍ରକୃତିର ବସ୍ତୁ ଉପରେ ବଳପ୍ରୟୋଗ ଫଳରେ ତାହା ଯେପରି କ୍ରିୟାଶୀଳ ହୋଇଥାଏ, ଠିକ୍ ସେହିପରି ମାତୃ ସ୍ୱରୂପା ମା' ଦେବୀଙ୍କର ଐଶ୍ୱରିକ ବଳ ପ୍ରୟୋଗ ଫଳରେ ସଚଳାଚଳ ଜୀବଜଗତ କ୍ରିୟାଶୀଳ ହୋଇଥାଏ । ଏହି ଶକ୍ତିର ସୃଷ୍ଟି ବାବଦରେ ଠିକ୍ ବିବରଣୀ ଜଣା ନଥିଲେ ମଧ୍ୟ ଏହା ସୃଷ୍ଟିର ଆଦ୍ୟକାଳରୁ ଆବିର୍ଭାବ ବୋଲି ଐତିହାସିକମାନେ ମତବ୍ୟକ୍ତ କରିଛନ୍ତି । ଆବହମାନ କାଳରୁ ଓଡ଼ିଶାର କୋଣ ଅନୁକୋଣରେ ତଥା ଗ୍ରାମଠାରୁ ସହର ପର୍ଯ୍ୟନ୍ତ ପୀଠ, ଗାଦୀ, ମନ୍ଦିର, ମଠ, ଆଶ୍ରମ ଏପରିକି ଗଛ ମୂଳରେ ଶତ ଶତ ଠାକୁରାଣୀ ବା ଦେବୀ ପ୍ରତିମା ପୂଜା ପାଉଥିବାର ଦେଖାଯାଉଅଛି । ସେହି ଦେବୀମାନେ ବିଭିନ୍ନ କାରଣରୁ ଭିନ୍ନ ଭିନ୍ନ ନାମ ଓ ରୂପରେ ନାମିତ ହୋଇଛନ୍ତି । ଯଥା- ଦୁର୍ଗା, ମଙ୍ଗଳା, ଚର୍ଚ୍ଚିକା, ବିମଳା, ଲକ୍ଷ୍ମୀ, ଚଣ୍ଡୀ, କାତ୍ୟାୟନୀ, ବିରଜା, କାଳୀ, ଶାରଳା, ସମଲେଶ୍ୱରୀ, କ୍ଷେତ୍ରପାଳ, ନାରାୟଣୀ, ଉଗ୍ରତାରା, ତାରିଣୀ, ଭଗବତୀ, ଭଟ୍ଟାରିକା, ବନଦୁର୍ଗା, ଗୌରୀ, ଝାଡ଼େଶ୍ୱରୀ ଇତ୍ୟାଦି । ପ୍ରତ୍ୟେକ ମାତୃରୂପିଣୀ ମା' ଦେବୀ ଆଦ୍ୟ ସମୟରୁ ଆଜି ପର୍ଯ୍ୟନ୍ତ ଏକ ନିର୍ଦ୍ଦିଷ୍ଟ ସେବାୟତଙ୍କଦ୍ୱାରା ଭିନ୍ନ ଭିନ୍ନ ପରମ୍ପରାରେ ପୂଜା ପାଇବା ସଙ୍ଗେ ସଙ୍ଗେ ସେମାନଙ୍କର ଅସୀମ ମହିମା ଓ ଗୁଣଗାରିମାକୁ ସୁଦୀର୍ଘ ବିସ୍ତାରିତ କରିପାରିଛନ୍ତି ।

ଓଡ଼ିଶାର ଶାକ୍ତ ଧର୍ମର ପରମ୍ପରାକୁ ଗଭୀର ଭାବରେ ଅନୁଧ୍ୟାନ କଲେ ଜଣାଯାଏ, ଏହାର ମହନୀୟତା ତଥା ଉପଚାରର ଗୁଣଗୁଡ଼ିକ ପରମ ଭକ୍ତମାନଙ୍କ ହୃଦୟରେ ସୁପ୍ତ ଚେତନା ଶକ୍ତିକୁ ଜାଗ୍ରତ କରାଇବା ସଂଗେସଂଗେ ସତ୍‌ପଥର ପଥିକ ପରି ନୂତନ ଆଲୋକ ପ୍ରଦାନ କରିଥାନ୍ତି ।

ଉତ୍କଳର ଧାର୍ମିକ ଓ ପବିତ୍ର ମାଟି ଉପରେ ଦଣ୍ଡାୟମାନ ଥିବା ଅସଂଖ୍ୟ ଶକ୍ତିପୀଠ ମଧ୍ୟରେ ବାଙ୍କିର ମା' ଦେବୀ ଚର୍ଚ୍ଚିକା ହେଉଛନ୍ତି ପ୍ରାଚୀନତମ ଶକ୍ତିପୀଠ । ଏହି ପୀଠର ମାଟି ସୁଧାରସ ପରି ପବିତ୍ର । ପୁରାଣ ପ୍ରସିଦ୍ଧ ପୁଣ୍ୟତୋୟା ରେଣୁକା ନଦୀର ତଟ ଦେଶରେ କଟକ ଜିଲ୍ଲାର ବାଙ୍କିସ୍ଥିତ ପବିତ୍ର ରୁଚିକା ପର୍ବତର ଶୀର୍ଷ ଅଂଶରେ ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି ବକ୍ରେଶ୍ୱରୀ ମା' ଚର୍ଚ୍ଚିକାଯୈ । ଓଡ଼ିଶାର ବଡ଼ନଦୀ ମହାନଦୀ କଳ କଳ ନାଦ କରି ଏହି ପୀଠର ପଶ୍ଚିମ ପାର୍ଶ୍ୱରେ ଅବବାହିତ ହୋଇଅଛି । ଓଡ଼ିଶାର ରାଜଧାନୀ ଭୁବନେଶ୍ୱରଠାରୁ ଖୋର୍ଦ୍ଧା ମଧ୍ୟ ଦେଇ ୬୬ କିଲୋମିଟର ଓ ପ୍ରାଚୀନ ଉତ୍କଳର ପ୍ରାଣକେନ୍ଦ୍ର କଟକଠାରୁ ୭୦ କି.ମି. ଦୂରରେ ଏହି ପୀଠ ଅବସ୍ଥିତ । ରଚିକା ପର୍ବତଟିର ସମତଳ ଅଂଶଟିର ଲମ୍ବ ୫୦ ମିଟରରୁ ଅଧିକ ଓ ପ୍ରସ୍ଥ ୫୦ ମିଟରରୁ କମ୍ କ୍ଷେତ୍ରଫଳ ମଧ୍ୟରେ ଏହା ଅବସ୍ଥିତ । ଏହାର ପଶ୍ଚିମରେ ରେଣୁକା ଓ ମହାନଦୀ, ଦକ୍ଷିଣରେ

ମହାପର୍ବତ ନାମକ ଏକ ପର୍ବତ । ପୂର୍ବ ଓ ଉତ୍ତରରେ ଶ୍ୟାମଳ ତରୁଲତାରେ ପୂର୍ଣ୍ଣ କେତେଗୁଡ଼ିଏ ବସ୍ତିବାସିନ୍ଦାଙ୍କ ବାସସ୍ଥଳୀ, ମହାବିଦ୍ୟାଳୟ, ସରକାରୀ ଦପ୍ତର, ଦୋକାନ ବଜାରରେ ଚଳଚଞ୍ଚଳ ।

ପରମା ପୂଜ୍ୟା ଓ ଆରାଧ୍ୟା ଦେବୀ ମା' ଚର୍ଚ୍ଚିକାଙ୍କର ଆବିର୍ଭାବ କେବେ ଓ କିପରି ହେଲା ଆଜି ପର୍ଯ୍ୟନ୍ତ ଠିକ୍ ଜଣା ନଥିଲେ ମଧ୍ୟ ଏହାର ପୌରାଣିକ, ଐତିହାସିକ ଓ ଲୋକାଚାର ମତମାନ ଚର୍ଚ୍ଚିକା ପୁରାଣ ଓ ବାଙ୍କି ଇତିହାସରେ ଲିପିବଦ୍ଧ ହୋଇଅଛି । ମା' ସର୍ବେଶ୍ୱରୀ ଚର୍ଚ୍ଚିକା ଦେବୀ ବୈଦିକ ଯୁଗରେ ରଚିକ ମହର୍ଷିଙ୍କର ଆଶ୍ରମରେ ଗୃହଦେବୀ ଭାବେ ପୂଜା ପାଉଥିଲେ । କଥିତ ଅଛି ରଚିକ ମହର୍ଷିଙ୍କର ନାତି ତଥା ଜମଦଗ୍ନିଙ୍କର ପୁତ୍ର ବୀର ପର୍ଶୁରାମ ମା' ଚର୍ଚ୍ଚିକାଙ୍କ ପାଖରେ ତପସ୍ୟା କରି ଆଶୀର୍ବାଦ ଲାଭ କରିଥିଲେ । ମାତୃ ହତ୍ୟା ପାପରୁ ମୁକ୍ତି ପାଇବା ପାଇଁ ପିତାଙ୍କ ଆଦେଶରେ ସେଠାରେ ତପସ୍ୟା କରି ପାପରୁ ମୁକ୍ତି ପାଇବା ସଂଗେସଂଗେ ଏକ ପୁରାଣପୁରୁଷ ଭାବେ ପ୍ରସିଦ୍ଧି ଅର୍ଜନ କରିଥିଲେ । ଅଗ୍ରଜ ରଚିକ ମହର୍ଷି ତାଙ୍କ ନାତି ବୀର ପର୍ଶୁରାମଙ୍କୁ ଏହି ପୀଠରେ ଦେବୀଙ୍କୁ ସ୍ଥାପନ ପୂର୍ବକ ଧନୁର୍ବେଦ ପ୍ରବର୍ତ୍ତକ ନୀତି ଶିକ୍ଷା ଦେଇଥିଲେ । ତେଣୁ ତାଙ୍କୁ ମହାବୀର କୁହାଯାଏ । କେହି କେହି ଏହି ପୀଠକୁ ପର୍ଶୁରାମ ପୀଠ ବୋଲି କୁହନ୍ତି । ପର୍ଶୁରାମଙ୍କ ପ୍ରଧାନ ପୀଠ ଥିଲା ଅରୁଣାଚଳ ପ୍ରଦେଶ, ଯାହାକି ଅଦ୍ୟ ପ୍ରତୀୟମାନ । ଝଙ୍କଡ଼ର ମା' ଶାରଳାଙ୍କ ପୀଠ କିମ୍ବଦନ୍ତୀରେ ପର୍ଶୁରାମଙ୍କ କଥା ବର୍ଣ୍ଣିତ ହୋଇଅଛି । ପର୍ଶୁରାମଙ୍କୁ ପାପରୁ ମୁକ୍ତି କରିଥିବାରୁ ମା' ଚର୍ଚ୍ଚିକା ଦେବୀ ହେଉଛନ୍ତି ମୁକ୍ତି ପ୍ରଦାୟିନୀ ।

ମହିଷାସୁରର ଦୁଇ ଜଣ ଦୁର୍ଦ୍ଧର୍ଷ ଯୋଦ୍ଧା ରକ୍ତବୀର୍ଯ୍ୟ ଓ ରଣାସୁରଙ୍କ ସହିତ ଯୁଦ୍ଧ କରିବା ଅବସରରେ ଯୋଗମାୟା ଦୁର୍ଗାଦେବୀଙ୍କର ନିଶ୍ୱାସରୁ ସୃଷ୍ଟି ହୋଇଥିଲା ଏକ ଦିବ୍ୟ ଜ୍ୟୋତି । ସେହି ଜ୍ୟୋତିରୁ ଆବିର୍ଭାବ ହୋଇଥିଲେ ମା' ଦେବୀ ଚର୍ଚ୍ଚିକା ।

ତ୍ରେତୟା ଯୁଗରେ ପ୍ରବଳ ମାୟାବୀ ମହିଷାସୁରର ପ୍ରତାପରେ ମାନବଜାତି ନିଷ୍ପେସିତ, ଦଳିତ ଓ ଅବହେଳିତ ହେବାତ ଦୂରର କଥା କିନ୍ତୁ ଦେବତାମାନେ ଭୟରେ ଲୁକ୍କାୟିତ ଅବସ୍ଥାରେ କାଳାତିପାତ କରୁଥିଲେ । ମହିଷାସୁରକୁ ନିହତ କରିବା ପାଇଁ ମା' ଦୁର୍ଗା ଦେବୀ ହୋଇଥିଲେ ଆବିର୍ଭାବ । ମହିଷାସୁରର ଦୁଇ ଜଣ ଦୁର୍ଦ୍ଧର୍ଷ ଯୋଦ୍ଧା ରକ୍ତବୀର୍ଯ୍ୟ ଓ ରଣାସୁରଙ୍କ ସହିତ ଯୁଦ୍ଧ କରିବା ଅବସରରେ ଯୋଗମାୟା ଦୁର୍ଗାଦେବୀଙ୍କର ନିଶ୍ୱାସରୁ ସୃଷ୍ଟି ହୋଇଥିଲା ଏକ ଦିବ୍ୟ ଜ୍ୟୋତି । ସେହି ଜ୍ୟୋତିରୁ ଆବିର୍ଭାବ ହୋଇଥିଲେ ମା' ଦେବୀ ଚର୍ଚ୍ଚିକା । ରଣାସୁରଙ୍କ ସହିତ ମା' ଚର୍ଚ୍ଚିକା ଯୁଦ୍ଧ କରି ମାରି ଦେଇଥିଲେ ସେହି ପ୍ରତାପୀ ଅସୁର ରଣାସୁରକୁ । ଆଜି ପୀଠରେ ଯେଉଁ ଶବରୂଢ଼ା ମା' ଦେବୀଙ୍କ ପ୍ରତିମା ଅଛି, ତାହା ଯୁଦ୍ଧ ସମୟର ରଣାସୁରର ମୃତ ଶରୀର ଓ ମା'ଙ୍କର ଭୟଙ୍କର ମୂର୍ତ୍ତି । ତେଣୁ ସେ ଥିଲେ ମହାଶକ୍ତିର ଅଧିକାରୀ ଦେବୀ ଚର୍ଚ୍ଚିକା ।

ଶିବ ପୁରାଣରେ ବର୍ଣ୍ଣିତ ଅଛି, ଦକ୍ଷ ଯଜ୍ଞରେ ଅପମାନିତ ହୋଇ ଶିବଙ୍କ ପତ୍ନୀ ସତୀ ଯଜ୍ଞ କୁଣ୍ଡରେ ଥିବା ଅଗ୍ନିରେ ଝାସ ଦେଇଥିଲେ । ଫଳରେ ଶ୍ମଶାନ ବିହାରୀ ସ୍ୱାମୀ ଶିବ ପ୍ରଳୟ ତାଣ୍ଡବଲୀଳା କରିଥିଲେ । ପରିଶେଷରେ ମୃତା ସ୍ତ୍ରୀ ସତୀଙ୍କୁ କାନ୍ଧରେ ଧାରଣ ପୂର୍ବକ ସମଗ୍ର ପୃଥିବୀ ଭ୍ରମଣ କରିଥିଲେ । ଶିବଙ୍କ ତାଣ୍ଡବ ଲୀଳା ଦେଖି ଦେବତାମାନେ ଭୟଭୀତ ହୋଇ ସଂଗେସଂଗେ ବ୍ରହ୍ମାଙ୍କ ପାଖରେ ଶରଣ ପଶିଲେ । ଏହି ପ୍ରକୋପରୁ ରକ୍ଷା ପାଇବା ପାଇଁ ସ୍ୱୟଂ ବିଷ୍ଣୁ ଲୁକ୍କାୟିତ ଅବସ୍ଥାରେ ତାଙ୍କ ସୁଦର୍ଶନ ଚକ୍ର ମାଧ୍ୟମରେ ମୃତ ସତୀଙ୍କ ଶରୀରକୁ ଖଣ୍ଡ ଖଣ୍ଡ କରି କାଟି ପକାଇଥିଲେ । କଥିତ ଅଛି, ସେହି ମୃତ ଶରୀର ଖଣ୍ଡରୁ ୮ ଖଣ୍ଡ ଆମ ଓଡ଼ିଶାରେ ପଡ଼ିଥିଲା । ଯାହାକି ଆଜି ସେହି ୮ଟି ସ୍ଥାନ ଗୋଟିଏ ଗୋଟିଏ ଶକ୍ତି ପୀଠ ରୂପେ ସୁବିଦିତ । ସେହି ପୀଠମାନଙ୍କ ମଧ୍ୟରେ ବାଙ୍କିର ମା' ଚର୍ଚ୍ଚିକାଙ୍କ ପୀଠ ଅନ୍ୟତମ । ଏଠାରେ ସତୀଙ୍କର ଦକ୍ଷିଣ ବାହୁ ପଡ଼ିଥିଲା ବୋଲି କଥିତ ଅଛି । ସେହି ୮ଟି ପୀଠ ହେଲା, କାକଟପୁରର ମଙ୍ଗଳା, ଶ୍ରୀକ୍ଷେତ୍ରର ବିମଳା, ବାଣପୁରର ଭଗବତୀ, ବାଙ୍କୀର ଚର୍ଚ୍ଚିକା, ଯାଜପୁରର ବିରଜା, ଝଙ୍କଡ଼ର ମା' ଶାରଳା, ତାଳଚେରର ମା' ହିଙ୍ଗୁଳା ଓ ସମ୍ବଲପୁରର ସମଲେଇ । ଚଣ୍ଡୀ ପୁରାଣରେ ଏହି ଆଠଟି ପୀଠକୁ ଅଷ୍ଟଚଣ୍ଡୀ ପୀଠ ରୂପେ ବର୍ଣ୍ଣିତ ହୋଇଅଛି ।

ସ୍କନ୍ଦପୁରାଣରେ ୧୧ ଅଧ୍ୟାୟରେ ବର୍ଣ୍ଣିତ ମାଳବ ଦେଶର ରାଜା ଇନ୍ଦ୍ରଦ୍ୟୁମ୍ନ ବ୍ରହ୍ମାଙ୍କ ମାନସ ପୁତ୍ର ମହର୍ଷି ନାରଦଙ୍କ ଆଜ୍ଞାରେ ନୀଳମାଧବଙ୍କୁ ଦର୍ଶନ କରିବା ପାଇଁ କଙ୍କାଳମାଳିନୀ ଚାମୁଣ୍ଡା ତଥା ମା' ଦେବୀ ଚର୍ଚ୍ଚିକାଙ୍କୁ ଭକ୍ତିପୂତ ଭାବରେ ଜାଗଯଜ୍ଞ କରାଇଥିଲେ । ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ 'ଓଡ଼ିଆ ସାହିତ୍ୟ ଇତିହାସ'ରେ ରଚିତ ଉତ୍କଳର ମହାରାଜା ଏହି ପବିତ୍ର ପୀଠରେ ଯାଗଯଜ୍ଞ କରିଥିଲେ । ଶ୍ରୀକ୍ଷେତ୍ରରେ ଜଗନ୍ନାଥ ବିଗ୍ରହ ପ୍ରତିଷ୍ଠାର ବହୁ ପୂର୍ବରୁ ଅର୍ଥାତ୍ ବୌଦ୍ଧ ଯୁଗରୁ ଏହି ପୀଠ ପ୍ରସିଦ୍ଧିଲାଭ କରି ଆସିଅଛି । କିନ୍ତୁ ଡଃ ମାୟାଧର ମାନସିଂହଙ୍କ ପ୍ରଣୀତ ସଂକ୍ଷିପ୍ତ 'ଓଡ଼ିଆ ଜ୍ଞାନକୋଷ' ଓ ବିଶ୍ୱବିଦ୍ୟାଳୟ ପ୍ରକାଶନୀ ଗ୍ରନ୍ଥରେ ଉଲ୍ଲେଖ ଅଛି ଯେ, ଚର୍ଚ୍ଚିକା ପୀଠରେ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ସହିତ ରାଜା ବିଶ୍ୱାବସୁଙ୍କ ଯୁଦ୍ଧ ହୋଇଥିଲା । ଏହି ଯୁଦ୍ଧରେ ବିଶ୍ୱାବସୁଙ୍କୁ ପରାସ୍ତ କରି ରାଜା ଇନ୍ଦ୍ରଦ୍ୟୁମ୍ନ ଦାରୁଦେବତାଙ୍କୁ ପ୍ରାପ୍ତ ହୋଇଥିଲେ । ଏହିସବୁ କିମ୍ବଦନ୍ତୀରୁ ମା' ଚର୍ଚ୍ଚିକା ଦେବୀଙ୍କର ଆବିର୍ଭାବ ଅନୁମେୟ ।

ଶକ୍ତିମୟୀ ମା' ଚର୍ଚ୍ଚିକାଙ୍କର ପରମ୍ପରା ତଥା ଆରାଧନା ଶୈଳୀ ପ୍ରାୟତଃ ତନ୍ତ୍ରଶାସ୍ତ୍ରରୁ ଆଧାରିତ । ତନ୍ତ୍ର ଶବ୍ଦର ଅର୍ଥ ମଙ୍ଗଳକାରୀ ତଥା ଶୁଭଫଳ ଦାୟିନୀ । ଯାହାକୁ ନିଷ୍ପାପର ଓ ଶୁଦ୍ଧପୂତ ମନରେ ପାଳନ କଲେ ନିଜର ତଥା ସର୍ବସାଧାରଣଙ୍କର ଉପକାର ସାଧିତ ହୋଇଥାଏ, ତାହା ହିଁ ତନ୍ତ୍ର ଅଟେ । ତେଣୁ ବାଙ୍କୀ କ୍ଷେତ୍ରକୁ ଏକ ତନ୍ତ୍ରପୀଠ ଓ ଚର୍ଚ୍ଚିକା ଦେବୀଙ୍କୁ ଚାମୁଣ୍ଡା ବୋଲି କୁହାଯାଇଥାଏ ।

ପରମା ପୂଜ୍ୟା ଓ ଆରାଧ୍ୟା ଦେବୀ ମୂର୍ତ୍ତିମତୀ ମା' ଚର୍ଚ୍ଚିକାଙ୍କର ଇତିବୃତ୍ତି ଯେପରି ରହସ୍ୟମୟ, ଏହାର ମହିମା ଓ ଗୁଣଗାରିମା ଅତ୍ୟନ୍ତ ବିଚିତ୍ରମୟ । ସମସ୍ତ ଶକ୍ତି ତଥା ତନ୍ତ୍ର, ଯୋଗ, କର୍ମ, ସିଦ୍ଧି ଓ ସ୍ତୁତି ଇତ୍ୟାଦି ଧାରଣ ପୂର୍ବକ ପୁଣ୍ୟତୋୟା ରେଣୁକା ନଦୀ ତଟସ୍ଥ ରଚିକା ପର୍ବତର ଶିଖର ଦେଶରେ ମା' ବିଶ୍ୱେଶୋରୀ ଚର୍ଚ୍ଚିକା ବିରାଜିତ । ଋଗ୍‌ବେଦରେ ବର୍ଣ୍ଣିତ ଅମ୍ଭୃଣ ଋଷିଙ୍କର କନ୍ୟା ବାକ୍ ଆତ୍ମସ୍ତୁତି ବଳରେ ପ୍ରକାଶ କରିଛନ୍ତି । ବିଶ୍ୱବାସିନୀ ମା' ଦେବୀ ଚର୍ଚ୍ଚିକା ତ୍ରିଶକ୍ତି ତଥା ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ସହିତ ବିଚରଣ କରୁଥିଲେ । ମହାଭାରତରେ ବର୍ଣ୍ଣିତ ଅଛି ଯେ ପାଣ୍ଡବମାନେ ପ୍ରାଚୀନ ଉତ୍କଳ ତଥା ବର୍ତ୍ତମାନ ଓଡ଼ିଶାରେ ଥିବା ଚର୍ଚ୍ଚିକା ପୀଠକୁ ଆସିଥିଲେ । ଏହି ପୀଠର ଅନତି ଦୂରରେ ପାଣ୍ଡବ ନାମରେ ଏକ ପର୍ବତ ଆଜି ବିଦ୍ୟମାନ । ଲୋକାଚାରରେ ଏହି ପର୍ବତରେ ପାଣ୍ଡବମାନେ ଛଦ୍ମବେଶରେ ରହିଥିଲେ ବୋଲି ପ୍ରବାଦ ଅଛି ।

ପ୍ରାୟ ଦଶମ ଶତାବ୍ଦୀ ସମୟରୁ ଗଙ୍ଗବଂଶୀୟ ଓ ଭୌମବଂଶୀୟ ରାଜାମାନଙ୍କଦ୍ୱାରା ଚର୍ଚ୍ଚିକା ଦେବୀଙ୍କର ମନ୍ଦିର ଗଠନ, ନୀତି ଓ ପରମ୍ପରାର ସର୍ବାଙ୍ଗୀନ ଉନ୍ନତି ସାଧନ ହୋଇଥିଲା । ଭୌମ ବଂଶର ରାଜା ବଳଭଦ୍ର ଧନସିଂହ ମନ୍ଦିର ନିର୍ମାଣ କରିଥିଲେ । କଥିତ ଅଛି ୧୬୫୩ ପାର୍ଥ ଶ୍ରୀଚନ୍ଦନ ରାଜା ମା' ଦେବୀ ଚର୍ଚ୍ଚିକାଙ୍କ ପାଇଁ ୨୨ ବାଟି, ୨୨ ମାଣ, ୨୨ ଗୁଣ୍ଠ ଓ ୨୨ ବିଶ୍ୱା ଭୂସମ୍ପତ୍ତି ଖଞ୍ଜି ଥିଲେ । ଏହି ପୀଠର ପରମ୍ପରା ଓ ମା' ଦେବୀଙ୍କର ମହିମା ଅଗଣିତ ପରମ ଭକ୍ତ ଓ ଦର୍ଶକମାନଙ୍କ ମନକୁ କିଣି ନେଇଥିବା ସଂଗେ ସଂଗେ ସୃଷ୍ଟି କରିପାରିଛି ଐଶ୍ୱରୀୟ ପ୍ରେମବାଣୀ । କାରଣ ଏହି ପୀଠର ପବିତ୍ର ମାଟି ଓ ପରିବେଶ ମଧ୍ୟରେ ଶତ ଶତ ବୀର ମହାପୁରୁଷ ପର୍ଶୁରାମଙ୍କ ପାଦଚିହ୍ନ ପୂଜିତ ହେଉଅଛି । 'ଭୃଗୁ ସଂହିତା' ନାମକ ଏକ ପୁସ୍ତକ ଏହି ପୀଠରେ ରଚିତ ହୋଇଥିଲା ବୋଲି ସୂଚିତ ହୁଏ । ଭୃଗୁ ବଂଶୀୟ ଋଷିମାନଙ୍କର ଏହି ପୀଠ ଥିଲା ପ୍ରଧାନ ଆଶ୍ରମ ଓ ମା' ଦେବୀ ଚର୍ଚ୍ଚିକା ଥିଲେ ସେମାନଙ୍କର ଗୃହ ଠାକୁରାଣୀ । ମାଳିକାରେ ବର୍ଣ୍ଣିତ ଅଛି, ଦିନେ ମହାଦେବୀ ଚର୍ଚ୍ଚିକା ବିଶ୍ୱପତିଙ୍କ ନିର୍ଦ୍ଦେଶରେ ତାଙ୍କର ଖଡ୍ଗ ଧାରଣ କରି ଧରାର ଭାର ଅର୍ଥାତ୍ ପାପକୁ ନାଶ କରିବାକୁ ଜାଗ୍ରତ ହେବେ । ବୈଦିକ ରୀତିରେ ଏହି ପୀଠ କେବଳ ଓଡ଼ିଶା କାହିଁକି ସମଗ୍ର ଭାରତବର୍ଷରେ ସର୍ବପୁରାତନ ଚଣ୍ଡୀ ପୀଠ ରୂପେ ସୁବିଦିତ । କେହି କେହି ଏହି ପୀଠକୁ ଏକ ଜ୍ଞାନ ପୀଠ ବୋଲି କହିଥାଆନ୍ତି । ଏହି ପୀଠର ମହତ୍ୱ ଓ ଗୁରୁତ୍ୱ ସମଗ୍ର ପୃଥିବୀରେ ବିରଳ ।

ରଚିକା ପର୍ବତବାସିନୀ ତଥା ତ୍ରୈଲୋକ୍ୟଦାୟିନୀ ମା' ଚର୍ଚ୍ଚିକା ବିରାଜିତ ପୀଠଟିର ନିର୍ମାଣ କାର୍ଯ୍ୟ ପ୍ରାଚୀନ ଉତ୍କଳର କଳା, ସ୍ଥାପତ୍ୟ, ଭାସ୍କର୍ଯ୍ୟ ଓ ସୂକ୍ଷ୍ମ କାରୁକାର୍ଯ୍ୟରେ ନିପୁଣତା ଥିବା ଶିଳ୍ପୀମାନଙ୍କଦ୍ୱାରା ଗଠିତ ବୋଲି ଅନୁମେୟ । କାରଣ ଏହାର ଗଠନ ଶୈଳୀ ସମସ୍ତ ମନ୍ଦିରଠାରୁ ପୃଥକ୍ ଅଟେ । ଏହି ପୀଠକୁ ପ୍ରବେଶ କରିବା ପାଇଁ ତିନୋଟି ପଥ ଅଛି । ସେଥିମଧ୍ୟରୁ ଉତ୍ତର ଦିଗର ପଥଟି ସିଂହଦ୍ୱାର । ସିଂହଦ୍ୱାର ସମ୍ମୁଖରେ ପାବଚ୍ଛ ଚଢ଼ିବା ପୂର୍ବରୁ ଦୁଇଟି ଓ ଶେଷ ସ୍ଥାନରେ ଆଉ ଦୁଇଟି ପଥରରେ ନିର୍ମିତ ସିଂହ ମୂର୍ତ୍ତି ରହିଛି । ୩୦ଟି ପାହାଚ ପରେ ଡାହାଣ ପଟେ ପଡ଼ିଥାଏ ଏକ ମଣ୍ଡପ । କିନ୍ତୁ ପାହାଚର ଡାହାଣ ଦିଗରେ ପଡ଼ିଥାଏ ଜଗନ୍ନାଥ ମନ୍ଦିର, ଭୋଗ ସାମଗ୍ରୀ ମଣ୍ଡପ ଓ ସିଦ୍ଧେଶ୍ୱର ମହାଦେବ ମନ୍ଦିର ଅବସ୍ଥାପିତ । ବାମପଟେ ଦେଖାଯାଏ କିଛି ସ୍ଥାୟୀବାସିନ୍ଦାଙ୍କ ବାସସ୍ଥଳୀ । ପ୍ରଥମ ମଣ୍ଡପର ଡାହାଣକୁ ବୁଲି କିଛି ପାହାଚ ଗଲା ପରେ ପଡ଼ିଥାଏ ଆଉ ଗୋଟିଏ ମଣ୍ଡପ । ପ୍ରଥମ ଓ ଦ୍ୱିତୀୟ ମଣ୍ଡପ ମଧ୍ୟରେ ଦେଖିବାକୁ ମିଳିଥାଏ ଅନ୍ୟ ଦୁଇଟି ଶିବ ମନ୍ଦିର ଯଥା- ସ୍ୱପ୍ନେଶ୍ୱର ଓ କୁସୁମେଶ୍ୱର । ଦ୍ୱିତୀୟ ମଣ୍ଡପର ସମ୍ମୁଖରେ ପ୍ରଧାନ ମନ୍ଦିରଟି ବିରାଜମାନ । ଏହି ମଣ୍ଡପଟି ହେଉଛି ମନ୍ଦିରର କେନ୍ଦ୍ରସ୍ଥଳୀ । କାରଣ ଏଠାରେ ମା'ଙ୍କୁ ଦର୍ଶନାଭିଳାଷୀ ପରମ ଭକ୍ତମାନଙ୍କର ସମାବେଶ, ଦୀପ ଦାନ, ଭୋଗଦାନ ସମେତ ହୋମ, ଯଜ୍ଞ, ସଂକୀର୍ତ୍ତନ ଇତ୍ୟାଦି କାର୍ଯ୍ୟ କରାଯାଇଥାଏ । ଏହିସବୁ ମଣ୍ଡପର ଛାତ ଓ ଖୁଣ୍ଟଗୁଡ଼ିକର ଗଠନ ଶୈଳୀ ଅତି ବିଚିତ୍ର । କାରଣ କାଷ୍ଠରେ ନିର୍ମିତ ହୋଇଥିବା ସୂକ୍ଷ୍ମ କାରୁକାର୍ଯ୍ୟ, ରଙ୍ଗବେରଙ୍ଗର ଚିତ୍ର ସଖି ଓ କଣ୍ଢେଇ ଇତ୍ୟାଦି ଖଞ୍ଜା ହୋଇ ଥିବାର ସୌନ୍ଦର୍ଯ୍ୟ ଅତ୍ୟନ୍ତ ହୃଦୟସ୍ପର୍ଶୀ । ପ୍ରଧାନ ମନ୍ଦିରକୁ ଯିବା ପୂର୍ବରୁ ଏହିସବୁ ଅପରୂପ ସୌନ୍ଦର୍ଯ୍ୟ ପରମ ଭକ୍ତମାନଙ୍କ ମନରେ ମା' ଦେବୀଙ୍କ ପ୍ରତି ଭକ୍ତି ସୃଷ୍ଟି କରିଥାଏ । ତୃତୀୟ ମଣ୍ଡପର ମଧ୍ୟଭାଗରେ ୧୨ ଫୁଟ ଉଚ୍ଚତା, ୮ ଫୁଟ ଲମ୍ବ ଓ ୬ ଫୁଟ ପ୍ରସ୍ଥ ମଧ୍ୟରେ ପ୍ରଧାନ ମନ୍ଦିରଟି ଅବସ୍ଥିତ । ମନ୍ଦିରର ଗର୍ଭଗୃହରେ ମା' ଦେବୀ ପ୍ରତିମାଟି ଅବସ୍ଥିତ । ପ୍ରଧାନ ମନ୍ଦିରର ଉତ୍ତରଦିଗରେ ରୋଷଘର, ଭଣ୍ଡାରଘର, ରାଜଗୁରୁ (ପୁରୋହିତ)ଙ୍କ ବିଶ୍ରାମ ଗୃହ ଅବସ୍ଥିତ । ଏହା ସମ୍ମୁଖରେ ୧୦ ଫୁଟ ଉଚ୍ଚତାର ଜଗମୋହନ ଅବସ୍ଥିତ । ମନ୍ଦିରର ପୂର୍ବ ଓ ପଶ୍ଚିମ ଦିଗରେ ଅନ୍ୟ ଦୁଇଟି ପ୍ରବେଶ ପଥ ଅଛି । ଏହାର ଦକ୍ଷିଣ ଦିଗରେ ଗୋଟିଏ ଧାଡ଼ିରେ କ୍ରମାନ୍ୱୟରେ ଦଣ୍ଡାୟମାନ ହୋଇଛନ୍ତି ଭୋଗ ମଣ୍ଡପ । ମଙ୍ଗଳା, ସନ୍ତୋଷୀ ମାଆ, ରଘୁନାଥଜୀ, ନୀଳକଣ୍ଠେଶ୍ୱର, ଗତୀଶ୍ୱର ଓ ତ୍ରିନାଥ ମଣ୍ଡପ ଇତ୍ୟାଦି । ମନ୍ଦିରର ପୂର୍ବଦିଗରେ ଦୁଇଟି ବଳୀମଣ୍ଡପ ଯଥା- ମଇଁଷିବଳୀ ଓ ଛାଗବଳୀ ଅବସ୍ଥାପିତ ।

ପ୍ରଧାନ ମନ୍ଦିରର ଗର୍ଭଗୃହରେ ଥିବା ଦେବୀ ପ୍ରତିମାଟି ଦର୍ଶନର ସୁବିଧା ନଥିଲେ ମଧ୍ୟ ମନ୍ଦିରର ଦକ୍ଷିଣ, ଉତ୍ତର, ପଶ୍ଚିମ ଦିଗରେ ଥିବା ତିନୋଟି ଠଣାରେ ତିନିଗୋଟି ପ୍ରତିମା ବିରାଜିତ । ଏହି ଠଣାରେ ପ୍ରାୟ ୧୫ ଇଞ୍ଚ ଉଚ୍ଚତାର କୁଣ୍ଡା ପଥରରେ ନିର୍ମିତ ପ୍ରତିମା ବିଦ୍ୟମାନ । ଦକ୍ଷିଣ ଦିଗ ଠଣାରେ ମା' ଦେବୀ ଚର୍ଚ୍ଚିକା ଅଷ୍ଟଭୁଜା ଓ ଶବରୂଢ଼ା, ମା' ଦେବୀ ତାଙ୍କ ଅଷ୍ଟଭୁଜାରେ ଖଡ୍ଗ, ତ୍ରିଶୂଳ, ସର୍ପ, ଅଙ୍କୁଶ, ଅକ୍ଷମାଳ, ଛିନ୍ନମସ୍ତକ, ଡମ୍ବୁରୁ ଓ ନରମୁଣ୍ଡ ଧାରଣ ପୂର୍ବକ ଉଲଗ୍ନ ଅବସ୍ଥାରେ ବିରାଜିତ । ଦେବୀଙ୍କର ଏହି ରୂପକୁ 'ଚାମୁଣ୍ଡା' ବୋଲି କଳ୍ପନା

କରାଯାଇଅଛି । ପଶ୍ଚିମପଟ ଠଣାରେ ବିରାଜିତ ପ୍ରତିମାଟି ମହିଷାମର୍ଦ୍ଦିନୀ ମା' ଦେବୀ ଦୁର୍ଗାଙ୍କର ପ୍ରତିମା । ଉତ୍ତର ଦିଗ ଠଣାରେ ଏକ ଚତୁର୍ଭୁଜା ବିକଟାଳ ମୂର୍ତ୍ତି ବିରାଜମାନ । ଯାହାର ଜିହ୍ୱା ବାହାରକୁ ବାହାରି ଭୟଙ୍କର ରୂପ ଧାରଣ କରିଛି । ଏତଦ୍‌ବ୍ୟତୀତ ମନ୍ଦିରର ଛାତ, କାନ୍ଥ, ଖୁଣ୍ଟ, ପ୍ରାଚୀରରେ ଥିବା ସମସ୍ତ ପ୍ରକାର ଚିତ୍ରଗୁଡ଼ିକର ଗଠନ ଶୈଳୀ ପରମ ଭକ୍ତମାନଙ୍କର ଭକ୍ତିଭାବକୁ ଦ୍ୱିଗୁଣିତ କରୁଅଛି ।

ଏହି ପୀଠର ବୈଶିଷ୍ଟ୍ୟ ହେଉଛି - ପ୍ରଧାନ ମନ୍ଦିରର ଗର୍ଭଗୃହ ଭିତରକୁ ସେବାୟତମାନଙ୍କ ସମେତ ବାଙ୍କୀ ରାଜା ଓ ପୁରୀର ଗଜପତି ମହାରାଜାଙ୍କ ବ୍ୟତୀତ ଅନ୍ୟ ସମସ୍ତଙ୍କୁ ପ୍ରବେଶ ନିଷେଧ ଅଟେ ।

ବୈଦିକ ରୀତିନୀତିରେ ମା'ଙ୍କର ଦୈନିକ ପୂଜାପଦ୍ଧତିର କାର୍ଯ୍ୟ ହୋଇଥାଏ । ପ୍ରତ୍ୟହ ମନ୍ଦିର ସକାଳ ୫ଟାରେ ଖୋଲା ହୋଇ ଦିନ ଦୁଇଟାରେ ପହଡ଼ ପଡ଼ିଥାଏ । ପୁନର୍ବାର ଅପରାହ୍ଣ ୪ଟାରେ ଖୋଲା ହୋଇ ରାତି ୯ଟାରେ ପହଡ଼ ପଡ଼ିଥାଏ । ଦୈନିକ ୪ ଥର ଦେବୀଙ୍କ ପାଖରେ ଭୋଗ ଲାଗି ହୋଇଥାଏ । ସକାଳର ସ୍ନାନ, ଧୂପ, ଦୀପ, ଚନ୍ଦନ ଓ ବେଶ ପୋଷାକ ପରିଧାନ କାର୍ଯ୍ୟ ସମ୍ପାଦନ ହେବା ପରେ ଦିନ ୧୦ ଘଟିକାରେ ଦେବୀଙ୍କ ପାଖରେ ଖେଚୁଡ଼ି, ଡାଲମା, ତରକାରୀ, ଶାଗ ଓ ଖଟା ଭୋଗ ଅର୍ପଣ ହୋଇଥାଏ । ଏହାକୁ ସକାଳ ଭୋଗ କୁହାଯାଇଥାଏ । ଦ୍ୱିପହର ଭୋଗରେ ଅର୍ପଣ ହୋଇଥାଏ ଖେଚୁଡ଼ି, ଆମିଷ ତରକାରୀ, କାକରା ଓ ଖଜା । ସନ୍ଧ୍ୟା ଆଳତୀ ପରେ ପରେ ଦେବୀଙ୍କୁ ଅର୍ପଣ ହୋଇଥାଏ କେବଳ ସାଧା ଅନ୍ନ । ୪ର୍ଥ ଭୋଗଟି ରାତିରେ ଦହି ପଖାଳ, ତରକାରୀ ଓ ଖଜା ଭୋଗ ଲାଗି ହୋଇଥାଏ । ପ୍ରତିଦିନ ରାତିରେ ପହଡ଼ ପଡ଼ିବା ପୂର୍ବରୁ ମା'ଙ୍କୁ ଅର୍ପଣ ହୋଇଥାଏ ପଣା । ଏହି ପଣା ପ୍ରସ୍ତୁତ ହୋଇଥାଏ ଚିନି, ଛେନା, କଦଳୀ, ଗୋଲମରିଚ ଓ ଭାଙ୍ଗରେ । ତତ୍‌ପରେ ମା'ଙ୍କ ଶୟନ ପାଇଁ ମନ୍ଦିର ଦ୍ୱାର ବନ୍ଦ ହୋଇଥାଏ । ଯଦିଓ ଦେବୀଙ୍କ ପାଖରେ ଆମିଷ ଭୋଗର ବ୍ୟବସ୍ଥା ଅଛି, ତଥାପି ପବିତ୍ର ତଥା ଧାର୍ମିକ ମାସ ହେଉଛି- କାର୍ତ୍ତିକ, ମାଘ ଓ ବୈଶାଖ ମାସରେ ଆମିଷ ଭୋଗ ହେବା ନିଷିଦ୍ଧ ।

ହିନ୍ଦୁ ଧର୍ମ ତଥା ଓଡ଼ିଆ ଘରର ଶାସ୍ତ୍ରୀୟ ନୀତି ଅନୁସାରେ ବର୍ଷକ ବାର ମାସରେ ଧାର୍ମିକ ପର୍ବପର୍ବାଣି, ମେଳା, ମହୋତ୍ସବ, ହୋମ, ଯଜ୍ଞ ଇତ୍ୟାଦି ପାଳିତ ହୋଇଥାଏ । ତନ୍ମଧ୍ୟରୁ ଶାରଦୀୟ ପର୍ବ ଷୋଳଦିନ ପୂଜା କାର୍ଯ୍ୟ ମହାସମାରୋହ ଓ ଜାକଜମକରେ ପାଳିତ ହୋଇଥାଏ । ଏହି ପୀଠର ଝାମୁଯାତ୍ରା ଓ ବାସନ୍ତୀ ପର୍ବ ପୁରାଣ ପ୍ରସିଦ୍ଧି ଲାଭ କରିଅଛି । ଏହି ପୀଠର ଷୋଳଦିନ ପୂଜା (ଦଶହରା) ଆକର୍ଷଣୀୟ । ଘରଦ୍ୱାର ଛାଡ଼ି କେବଳ ରାଜଗୁରୁ ବଂଶୀୟ ପୁରୋହିତମାନେ ହବିଷ ବ୍ରତ ପାଳନ କରି ବୈଦିକ ନୀତିରେ ଦୀର୍ଘ ଷୋଳଦିନ ଧରି ଅହରହ ଚଣ୍ଡୀ ଓ ପୁରାଣ ପାଠ କରିବା ସଂଗେସଂଗେ ହୋମ, ଯଜ୍ଞ, ମନ୍ତ୍ର ଓ ଶ୍ଳୋକ ଇତ୍ୟାଦି ପାଠ କରିଥାନ୍ତି । କେବଳ ସପ୍ତମୀଠାରୁ ଦଶମୀ ବା ଦଶହରା ପର୍ଯ୍ୟନ୍ତ ଦୀର୍ଘ ଚାରି ଦିନ ଧରି ଏହି ପୀଠରେ ଲକ୍ଷ ଲକ୍ଷ ପରମ ଭକ୍ତ ଓ ଦର୍ଶକମାନଙ୍କ ସମାଗମ ଫଳରେ ଏହି ପୀଠ ହୋଇଯାଇଥାଏ ଆନନ୍ଦ ମୁଖରିତ ଓ ଚଳଚଞ୍ଚଳ । ଅସରନ୍ତି ଆଶୀର୍ବାଦ ଭଣ୍ଡାରର କର୍ତ୍ତ୍ରୀ ମା' ଦେବୀ ଚର୍ଚ୍ଚିକାଙ୍କୁ ଦର୍ଶନାଭିଳାଷ ପୂର୍ବକ ଶତ ଶତ ପାପରୁ ମୁକ୍ତି ପାଇବା ପାଇଁ ଓ ଶୁଭଫଳ କାମନା କରିବା ଆଶାରେ ଅସଂଖ୍ୟ ଭକ୍ତଙ୍କର ଧାଡ଼ି ଲମ୍ବି ଯାଇଥାଏ ।

ଅତୀତରେ ଚର୍ଚ୍ଚିକା ପୀଠର ମହାଷ୍ଟମୀର ମହାରାତ୍ର ସମ୍ପାଚାର ବିଧିବିଧାନ ସହ ଦଶମ ମହାବିଦ୍ୟାର ଚଣ୍ଡୀପାଠ, ହୋମ, ଯଜ୍ଞ ଇତ୍ୟାଦି କରି ପଣ୍ଡା ପଶୁକୁ ଗାଧୋଇ, ଫୁଲମାଳ, ଚନ୍ଦନ, ସିନ୍ଦୂର ଅର୍ପଣ କରାଯାଇଥାଏ । ଦେବୀଙ୍କର ଦୀର୍ଘ ଖଣ୍ଡାଟି ପୂଜାପାଠ ପୂର୍ବକ ସିନ୍ଦୂର ଚନ୍ଦନ ଇତ୍ୟାଦି ଲାଗି ହୋଇଥାଏ । ତତ୍‌ପରେ ସେବାବାରୀ ନାମକ ଘାତକ ନୂତନ ବସ୍ତ୍ର ପରିଧାନପୂର୍ବକ ପଶୁକୁ ବଳୀ ମଣ୍ଡପକୁ ନେଇ ଘଣ୍ଟ କାହାଳୀ, ହରିବୋଲ, ହୁଳହୁଳୀ ଓ କରତାଳି ମାଧ୍ୟମରେ ପଶୁକୁ ବଳୀ ଦିଆଯାଇଥାଏ । ସେହି ପଶୁ ରକ୍ତକୁ ରାଜଗୁରୁ (ପୁରୋହିତ) ଏକ ମାଟିରେ ନିର୍ମିତ ନୂତନ ସରାରେ ନେଇ ଦେବୀଙ୍କ ପାଖରେ ପୂଜା ପୂର୍ବକ ଅର୍ପଣ କରିଥାନ୍ତି । ଏହା ତନ୍ତ୍ର ପୂଜା ମାଧ୍ୟମରେ ହୋଇଥାଏ । ଏହି ପୂଜକଙ୍କୁ ଭକ୍ତମାନେ ଦେଖନ୍ତି ନାହିଁ । ଏହି ନାରକୀୟ, ବିଭତ୍ସମୟ, ଦୁଃଖ ଓ ଦାରୁଣ ପ୍ରଥା କେଉଁ ଆଦିମ ଯୁଗରୁ ପ୍ରଚଳନ ଥିଲେ ମଧ୍ୟ ଆଜିର ମାନବ ସମାଜ ଏହି ପ୍ରଥାକୁ ବିଲୋପ କରିବା ପାଇଁ ସ୍ୱର ଉତ୍ତୋଳନ କରିବାକୁ ପଛାଇ ନାହାନ୍ତି । ଚର୍ଚ୍ଚିକାଙ୍କ ପୀଠରେ ବଳିପ୍ରଥା ବାଦ ରହିଛି ।

ମନ୍ଦିରରେ ଦୁଇଟି ସଂପ୍ରଦାୟର ସେବାୟତ ନିଯୋଗ ହେଉଛନ୍ତି- ବ୍ରାହ୍ମଣ ଓ ମାଳି । ମନ୍ଦିରରେ ମାଳି ସଂପ୍ରଦାୟର ସେବାୟତ ଅଧିକ ଓ ବ୍ରାହ୍ମଣ ସଂପ୍ରଦାୟର ସେବାୟତ (ପୁରୋହିତ) କମ୍ ସଂଖ୍ୟକ । ବ୍ରାହ୍ମଣ ସଂପ୍ରଦାୟର ସେବାୟତଙ୍କୁ ରାଜଗୁରୁ କୁହାଯାଇଥାଏ । ଯଦିଓ ଅନ୍ୟ ବ୍ରାହ୍ମଣ ସମାଜ ମା'ଙ୍କର ଦୈନନ୍ଦିନ ପୂଜା କରିଥାନ୍ତି, କିନ୍ତୁ ଶାରଦୀୟ ଷୋଳ ଦିନ ପୂଜା ରାଜଗୁରୁ ବଂଶୀୟ ବ୍ରାହ୍ମଣ କରିବାର ବିଧି ଅଛି ।

ଚର୍ଚ୍ଚିକା ମାହାତ୍ମ୍ୟ ପୁସ୍ତକରେ ବର୍ଣ୍ଣିତ ଯେ ଓଡ଼ିଶାର ବଡ଼ଠାକୁର ଶ୍ରୀକ୍ଷେତ୍ର ନିବାସୀ ଶ୍ରୀଜଗନ୍ନାଥଙ୍କର ମା' ଦେବୀ ଚର୍ଚ୍ଚିକାଙ୍କର ରହିଅଛି ନିବିଡ଼ ସମ୍ପର୍କ । ଗଜପତି ମହାରାଜାଙ୍କ ଯୁଦ୍ଧ ଅଭିଯାନ ସମୟରେ ସେ ପ୍ରଥମେ ଚର୍ଚ୍ଚିକା ଦେବୀଙ୍କୁ ପୂଜା କରିଥାନ୍ତି । ପ୍ରତିବର୍ଷ ଶ୍ରୀଜଗନ୍ନାଥଙ୍କ ରଥାଗଡ଼ା କାର୍ଯ୍ୟ ଆରମ୍ଭ ପୂର୍ବରୁ ମା' ଦେବୀ ଚର୍ଚ୍ଚିକାଙ୍କୁ ପୂଜା ଅର୍ଚ୍ଚନା କରାଯାଇଥାଏ । ଶ୍ରୀକ୍ଷେତ୍ର ପୀଠରେ ମା' ଚର୍ଚ୍ଚିକାଙ୍କର ଏକ ମଣ୍ଡପ ଅଛି । ସେହି ମଣ୍ଡପରେ ମା' ଚର୍ଚ୍ଚିକା ବିରାଜିତ ହୋଇ ପୂଜା ପାଉଛନ୍ତି । ଏକଦା ମା' ଚର୍ଚ୍ଚିକା ଜଗନ୍ନାଥଙ୍କ ବଡ଼ପଣ୍ଡାଙ୍କ ଘରେ ଜଣେ ବୁଢ଼ୀ ବେଶରେ ଆଶ୍ରୟ ନେଇ କେତେଗୁଡ଼ିଏ ଅଲୌକିକ ଘଟଣାମାନ କରିଥିଲେ । ବଡ଼ପଣ୍ଡା ସ୍ୱପ୍ନାଦେଶ ମାଧ୍ୟମରେ ବୁଢ଼ୀ ବିଷୟରେ ଜାଣି ପାରିଥିଲେ ଯେ, ସେ ବୁଢ଼ୀ କେହି ନୁହନ୍ତି, ସେ ହେଉଛନ୍ତି ବାଙ୍କୀ

ପୀଠର ମା' ଚର୍ଚ୍ଚିକା । କ୍ଷଣକ ଭିତରେ ଏହି ଘଟଣା ସର୍ବତ୍ର ପ୍ରଚାର ହୋଇଗଲା ଓ ବୁଢ଼ୀ ବଡ଼ପଣ୍ଡାଙ୍କ ଘରୁ କେଉଁଆଡ଼େ ଚାଲିଗଲେ । ସେହିଦିନଠାରୁ ଶ୍ରୀକ୍ଷେତ୍ରର ଜଗନ୍ନାଥ ପୀଠର ମା' ଚର୍ଚ୍ଚିକା ପୂଜା ପାଉଛନ୍ତି । ଏହି ଘଟଣାଟି ଥିଲା ଓଡ଼ିଶାର ଗଜପତି ରାଜା ଭାନୁଗଙ୍ଗ ଦେବଙ୍କ ଶାସନ ସମୟର ଘଟଣା ।

ଏକାଧାରରେ ମା' ଦେବୀ ଚର୍ଚ୍ଚିକା ହେଉଛନ୍ତି ଯୋଗତତ୍ତ୍ୱ, ତନ୍ତ୍ରତତ୍ତ୍ୱ, ଓ ବୌଦ୍ଧତତ୍ତ୍ୱ ଧାରଣର ଅଧିକାରୀ । ସୃଷ୍ଟିକର୍ତ୍ତା, ପାଳନକର୍ତ୍ତା, ସଂହାରକର୍ତ୍ତା, ଧନ ଦୌଲତ, ବିଦ୍ୟା, ଶକ୍ତି, ଜ୍ଞାନ ଦାୟିନୀ ମା' ଚର୍ଚ୍ଚିକା କେହି ନୁହନ୍ତି, ସେ ହେଉଛନ୍ତି ଦୟା, କ୍ଷମା ଓ ଆଶୀର୍ବାଦର ଭଣ୍ଡାର ତଥା ଖଡ୍‌ଗ ଅସ୍ତ୍ର ଧାରଣ ପୂର୍ବକ ଦୁଷ୍ଟଦଳନକାରୀ ଶବରୂଢ଼ା ସାକ୍ଷାତ ଅଧିଷ୍ଠାତ୍ରୀ ଦେବୀ । ସେହି ପୀଠର ମହିମା ଓ ଗୁଣଗାରିମା ସୀମିତ ନରହି ସର୍ବତ୍ର ବ୍ୟାପି ଯାଇଛି । ସେହି ପୀଠର ମହିମା ଓ ଗୁଣଗାରିମା, ମନ୍ଦିରର ଗଠନ ଶୈଳୀର ସୁଷମା, ନଦୀ ପାହାଡ଼ର ପ୍ରାକୃତିକ ବୈଭବ ଓ ଆଖପାଖରେ ଥିବା ସ୍ଥାୟୀ କୁଟୀର, ଦୋକାନ ବଜାରର ଅପରୂପା ସୌନ୍ଦର୍ଯ୍ୟ ସୃଷ୍ଟି କରିପାରିଛି ସ୍ୱର୍ଗପୁରୀ ପରି ପରିବେଶ । ବିଶ୍ୱବାସିନୀ ମା' ଦେବୀ ଚର୍ଚ୍ଚିକା ହେଉଛନ୍ତି ଦୁଷ୍ଟଦଳନ ଓ ସନ୍ଥପାଳନର ସିଦ୍ଧହସ୍ତୀ ସର୍ବେଶ୍ୱରୀକର୍ତ୍ତୀ ତଥା ଆଦିମାତା । ତାଙ୍କରି ଦୟା ଓ ଆଶୀର୍ବାଦ ବଳରେ ଏହି ବିଚିତ୍ରମୟୀ ବ୍ରହ୍ମାଣ୍ଡର ପାପ, ଅନ୍ୟାୟ, ଅତ୍ୟାଚାର, ଅସତ୍ୟ ଓ ଅଧର୍ମ ଦୂର ହୋଇ ସୃଷ୍ଟି ହୋଇପାରିବ ସତ୍ୟ ଓ ନ୍ୟାୟର ଯୁଗ ।

ଘ.ନଂ.: ଆର୍.ଏ.-୩୫/୭
୮ ନମ୍ବର, ଭୁବନେଶ୍ୱର

---

# ମାଗୁଣି

ରତ୍ନାକର ରାଉତ

ଦୁର୍ଗତିନାଶିନୀ ମାଆ କାତ୍ୟାୟନୀ
ସିଂହବାହିନୀ ତୁହି
ତୋତେ ଆଶ୍ରା କରି ମୋ' ଜୀବନ ଗଲା
କରୁଣା କରିଲୁ ନାହିଁ
ଥରୁଟିଏ ଯିଏ ଡାକିଦେଲା ମାଆ
ତୁ ତାକୁ ଆଶ୍ରୟ ଦେଲୁ
ଡାକି ଡାକି ତଣ୍ଟି ଶୁଖିଲାଣି ମୋର
ମୋ' ପାଇଁ ନିଷ୍ଠୁର ହେଲୁ,
କେତେ କିଏ ପାପ ଫଳରେ ବୁଡ଼ିଲେ
ଭୁଲି ତୋ' ମଧୁର ନାଆଁ
ସବୁଖେଳ ସାରି ବାହୁଡ଼ା ବେଳରେ
ଯିଏ ଡାକିଦେଲା ମାଆ
ତୁ ତାକୁ ତାରିଲୁ ତୋ' କୋଳକୁ ନେଲୁ
ପାପୀଙ୍କୁ ହୋଇଲୁ ସାହା
ନାହିଁ ଅଭିମାନ ନାହିଁ ଅଭିଯୋଗ
ନାହିଁ ମୋ ମାଗୁଣି କିଛି
ତୋ'ର କୃପା ହେଲେ ଏ ମିଛ ସଂସାରେ
ବାକି ସଜା ଯାହା ଅଛି,
କାଟି ଦେବି କାଳ ରୋଗ ଶୋକ ବିନା
ତୋ'ର ଶ୍ରୀପୟରେ ଗଲେ ମୋର ମନଲାଖି
ମୁଁ ଅଟେ ତୋର ଅଧମ ସନ୍ତାନ
ମୋର କି କ୍ଷମତା ଅଛି
ତୋ' ଆଶିଷ ବିନା ମୁହୂର୍ତ୍ତ ଗୋଟିଏ
ଏ ଧରା ଧାମରେ ପାରିବିକି ମୁହିଁ ବଞ୍ଚି
ଏ ଦେହ ତୋର, ଏ ମନ ତୋର, ଏ ପ୍ରାଣ ତୋର ମାଆ
ମୁଁ ଏକ ଛାର, ମାଟିର କଣ୍ଢେଇ
କାମନା ଏତିକି କରୁଛି ଗୁହାରି
ଜରା ଯାତନାରେ ପଡ଼ିବା ଆଗରୁ
ଏ ଭବସାଗରୁ ପାରି କରିଦେ ତୁହି
ଯେତେ ଦିନ ଆଉ ଜୀଇଁଛି ମହୀରେ
ପରିପୂର୍ଣ୍ଣ ହୋଇ ଥାଆ ମୋ' ଭିତରେ
ବାଟ କଢ଼େଇ ତୁ ନେ
ମୋ' ଆଖିରୁ ମାୟା ପରଦା ହଟେଇ
ଭୋଗ ବିଳାସରୁ ମୋତେ ତୁ ଦୂରେଇ ଦେ
ଆଶା, ଆସକ୍ତି ଓ ମୋହରୁ ଉଦ୍ଧରି
ମୋ' ଶିରେ ବରଷି ଆଶିଷର ବାରି
ମୋତେ ତୁ ଉଦ୍ଧାର କର
ଏ ଅକିଂଚନର ଏତିକି ମାଗୁଣି
ମାଆ ତୁହି ଦୟା କର ।

କ୍ୱାଟର୍ସ ନଂ- ୩ଆର୍-୧୪/୨
ୟୁନିଟ୍-୪, ଭୁବନେଶ୍ୱର-୧

# ଯା' ଦେବୀ ସର୍ବ ଭୂତେଷୁ ଶକ୍ତି ରୂପେଣ ସଂସ୍ଥିତା

ସନ୍ଧ୍ୟା ମହାନ୍ତି

**ଶ**କ୍ତି ହିଁ ମୁଖ୍ୟ । ବିଶେଷକରି ଜୀବଜଗତ ପାଇଁ । ପ୍ରତ୍ୟେକ ଜୀବର କାରଣ ସଦୃଶ ଏହି ଶକ୍ତି । ଜୀବର ଅର୍ଥ ହିଁ ବସ୍ତୁ ନିର୍ମିତ ଜଡ଼ପିଣ୍ଡରେ ଶକ୍ତିର ସମାବେଶ । ଶକ୍ତି ହିଁ ମୂଳବସ୍ତୁକୁ ହୋଇଥିବାରୁ ଶ୍ରୀ ଶ୍ରୀ ଚଣ୍ଡୀରେ କୁହାଯାଇଛି -

ଆଧାର ଭୂତା ଜଗତ ସ୍ତମେକା
ମହୀ ସ୍ୱରୂପେଣ ଯତଃ ସ୍ଥିତାସି ...



ଶକ୍ତି ବ୍ୟତୀତ କୌଣସି କାର୍ଯ୍ୟ ସମାହିତ ହେବା ସମ୍ଭବ ନୁହେଁ । ଦୁର୍ଗା ଚିରନ୍ତନୀ ଶକ୍ତି ରୂପେ ପୂଜିତା । ସମସ୍ତ ଶକ୍ତିର ଆଧାରଭୂତା । ଶକ୍ତିର ପ୍ରଭାବରେ ଜୀବଜଗତ ସଚେତନ । ଏହି ଶକ୍ତିର ଅଭାବରେ ତାହା ଜଡ଼ ବା ମୂକ । ଶକ୍ତିର ଅଭାବରେ ଜୀବ ବହିଃଜଗତରୁ ଆସୁଥିବା ପରିସ୍ଥିତିର ଆହ୍ୱାନରେ ପାଟି ଖୋଲିବାକୁ ଆଉ ସକ୍ଷମ ହୋଇପାରିନଥାଏ । ଅର୍ଥାତ୍ ଶକ୍ତି ଅନ୍ତର୍ନିହିତ ହେବା ମାତ୍ରେ ସଜୀବଟି ଜଡ଼ପିଣ୍ଡ ଶବଟିଏରେ ପରିଣତ ହୋଇଥାଏ ।

ଦେବୀ ଦୁର୍ଗା, ସ୍ୱଶକ୍ତିର ଅଂଶକୁ ଶତ ସହସ୍ର ଭାଗରେ ବିଭକ୍ତ କରି ଜୀବଜଗତର ପ୍ରତ୍ୟେକ ପ୍ରାଣୀକୁ ଧାରଣ କରି ପାଳନ କରୁଛନ୍ତି ।

'ସସୌ ଯତଃସ୍ୟାତ୍ ପରିଧେଶଣଂନାଃ
ପୃଥ୍ୟୈ ଚ ପୃଥ୍ୱୀ ନିତରାଂ ତନୀୟାନ୍
ନରବର୍ଣ୍ଣ ତତ୍ପୃଷ୍ଠା ଗତସ୍ୟ କୃଷ୍ଣା ।
ସମେବ ତସ୍ୟ ପ୍ରତିଭାତ୍ୟନିଃସା ॥'

ଆର୍ଯ୍ୟଋଷିଗଣ ଜୀବନ ସଂଚାରଠାରୁ ଜୀବନର ଶେଷ ପର୍ଯ୍ୟନ୍ତ ଆତ୍ମାର ଅବସ୍ଥିତି ଶକ୍ତି ବିଚ୍ଛିନ୍ନ ହୋଇ କଦାପି ବଂଚି ପାରିବ ନାହିଁ ବୋଲି ତତ୍ତ୍ୱସାଧନଦ୍ୱାରା ହିଁ ଉପଲବ୍ଧି କରିପାରିଥିଲେ । ଏଥିପାଇଁ ହିନ୍ଦୁ ସମାଜ ଦୁର୍ଗାଙ୍କୁ ଜନୟତ୍ରୀ ରୂପରେ ଗ୍ରହଣ କରି ମା' ବୋଲି ସମ୍ବୋଧନ କରିଆସିଛି ।

ଦେବୀ ଭାଗବତରେ ଶକ୍ତି ମହତ୍ୱ ନେଇ କୁହାଯାଇଛି-

ଶିବୋପି ଶବଣଂ ଯାତି
କୁଣ୍ଡଳିନ୍ୟା ବିବର୍ଜିତଃ
ଶକ୍ତିହୀନସ୍ତୁ ଯଃ କଶ୍ଚିତ୍
ଅସମର୍ଥଃ ସ୍ମୃତୋବୁଧୈଃ ।

ଏବଂ

ସର୍ବତ୍ର ଭୂତେଷୁ
ସ୍ଥାବରେଷୁ ଗରେଷୁଚ
ବ୍ରହ୍ମାଦି ସ୍ତମ୍ଭ ପର୍ଯ୍ୟନ୍ତଂ
ବ୍ରହ୍ମାଣ୍ଡେ ହସ୍ମିନହାତ୍ୟଃ ।

ସାଧନା ବ୍ୟତୀତ ଏହି ଶକ୍ତିକୁ ଉପଲବ୍ଧି କରିବା ସହଜ କିମ୍ବା ସମ୍ଭବ ନୁହେଁ । ସର୍ବସାଧାରଣଙ୍କ ଅନୁଭୂତି ଲାଗି ନିରାକାର ଚିରନ୍ତନୀ ଶକ୍ତି ସାକାରତ୍ୱ ପ୍ରାପ୍ତ ହୋଇଅଛି । ଏହା ହିଁ ଦୁର୍ଗାଙ୍କର ମୂର୍ତ୍ତି କଳ୍ପନାର ମୂଳଭିତ୍ତି ମୂର୍ତ୍ତି ସ୍ଥାପନରେ ଏକାଗ୍ରତା ଆଣିବା ପନ୍ଥା ଅନେକ ପୂର୍ବରୁ ଆମ ଭାରତବର୍ଷରେ ପ୍ରଚଳିତ ।

ଶିବମାତ୍ମନି ପଶ୍ୟନ୍ତି
ପ୍ରତିମାସ୍ଥନ ଯୋଗୀନଃ
ଅଜ୍ଞାନା ଭାବନାର୍ଥାୟ
ପ୍ରତିମା ପରିକଳ୍ପିତଃ ।

ଜଗତଜନନୀ ଦୁର୍ଗତିନାଶିନୀ ଦେବୀ ଦୁର୍ଗାଙ୍କୁ ଆମ ହିନ୍ଦୁ ସମାଜ ଦୁଃଖ, କଷ୍ଟ, ଭୟର ବିନାଶ ତଥା ଦୁର୍ଗତିରୁ ପରିତ୍ରାଣ ପାଇଁ ପୂଜା ଆରାଧନା କରିଆସୁଛି । ଦେବୀ ଉପନିଷଦରେ ଦେବୀ ଦୁର୍ଗାଙ୍କର ମହତ୍ୱ ନେଇ ଉଲ୍ଲେଖ କରାଯାଇଛି -

ନମାମିଂ ତ୍ୱାମହଂ ଦେବୀ ମହାଭୟ ବିନାଶିନୀମ୍
ମହାଦୁର୍ଗ ପ୍ରଶମନୀଂ ମହା-କାରୁଣ୍ୟ ରୂପିଣୀମ୍ ।
ଯସ୍ୟାଃ ପରତରଂ ନାସ୍ତିସୈଷା ଦୁର୍ଗା ପ୍ରକୀର୍ତ୍ତିତା
ଦୁର୍ଗାତ୍ ସନ୍ତାୟତେ ଯସ୍ମାତ୍ ଦେବୀ ଦୁର୍ଗେତ କଥ୍ୟତେ

ପ୍ରପଦ୍ୟେ ଶରଣଂ ଦେବୀ ଦୁଂ ଦୁର୍ଗେ ଦୁର୍ଗତି ହର
ତାଂ ଦୁର୍ଗା ଦୁର୍ଗମାଂ ଦେବୀ ଦୁରାଚାର ବିଘାତିନୀମ୍ ।

ବୈୟାକରଣିମାନଙ୍କ ମତରେ ଦୁର୍ଗା ଶବ୍ଦର ଅର୍ଥ ଦୁର୍ଗତିର ବିନାଶକାରିଣୀ । ଦୁର୍ଗ-ଦୁର୍ଗତି ସୂଚକ । ଦୁଃଖ ଦୁର୍ଗତିକୁ ବିନାଶ କରି ମାନବର ହୃଦୟରେ ଯିଏ ଶାନ୍ତିବାରି ସିଞ୍ଚନ କରିଥାନ୍ତି ସେହି ଦୁର୍ଗା ।

ଦୁର୍ଗେ ଦୈତ୍ୟେ ମହାବିଘ୍ନେ ଭବବନ୍ଧ କୁକର୍ମଣି
ଶୋକେ ଦୁଃଖେ ଚ ନରକେ ଯମଦଣ୍ଡେଚ ଜନ୍ମନି ।
ମହାଭୟେ[illegible]ରୋଗାଚାପ୍ୟାଶବ୍ଦୋହଂତୁ ବାଚକଃ
ଏତାନ୍ ହନ୍ତ୍ୟେ ଯା ଦେବୀ ସା ଦୁର୍ଗେତି ପରିକୀର୍ତ୍ତିତା ।

ଦୁଗ ଶବ୍ଦ ଦୈତ୍ୟ, ମହାବିଘ୍ନ, ସାଂସାରିକ ବନ୍ଧନ, କୁକର୍ମ, ଶୋକ, ଦୁଃଖ, ନରକ, ଯମଦଣ୍ଡ, ଜନ୍ମ, ମହାଭୟ ଓ ଦୁଃସାଧ ରୋଗ ପ୍ରଭୃତି ଅମଙ୍ଗଳର ଅର୍ଥ ପ୍ରକାଶକ ଏବଂ ଏହି ସବୁ ଦୁର୍ଗତିର ବିନାଶକାରିଣୀ ଶକ୍ତି ହିଁ ଦୁର୍ଗା ପଦବାଚ୍ୟ । ପୁନଶ୍ଚ କୌଣସି କୌଣସି ବୈୟାକରଣିକ ଦୁର୍ଗା ଶବ୍ଦର ବ୍ୟୁତ୍ପତ୍ତିରେ 'ଦୁଃଖେନ ଜ୍ଞେୟା' ବା ଯାହାକୁ ଦୁଃଖ ଅଥବା ଆୟାସଦ୍ୱାରା ଜାଣି ହୁଏ ସେ ହିଁ ଦୁର୍ଗା ବୋଲି ଗ୍ରହଣ କରିଛନ୍ତି ।

ଶ୍ରୀ ଶ୍ରୀ ଚଣ୍ଡୀରେ ଦୁର୍ଗାଙ୍କୁ ମହାଶକ୍ତି ରୂପରେ ଗ୍ରହଣ କରାଯାଇଛି ।

'ଯା' ଦେବୀ ସର୍ବଭୂତେଷୁ ଶକ୍ତି ରୂପେଣ ସଂସ୍ଥିତା ।'

କେବଳ ସେତିକି ନୁହେଁ ଦୟା, କ୍ଷମା, କାନ୍ତି, ଲଜ୍ଜା, ବୁଦ୍ଧି, ବିଦ୍ୟା, ବୁଦ୍ଧି ବା ଶାନ୍ତି ଇତ୍ୟାଦି ରୂପରେ ପରିପ୍ରକାଶମାନା ସେହି ଦେବୀଙ୍କୁ ପ୍ରଣିପାତ କରିବା ଲାଗି ସଶକ୍ତି ନିର୍ଦ୍ଦେଶ ଦିଆଯାଇଛି । ଏପ୍ରକାର ସମସ୍ତ ଗୁଣର ଅଧିକାରିଣୀ ମୂଳ ଶକ୍ତି ସ୍ୱରୂପିଣୀ ଦେବୀ ଦୁର୍ଗା । ଏହି ମହାମାୟା ଦେବୀ ଦୁର୍ଗାଙ୍କର ଆବିର୍ଭାବ ହୋଇଛି କେବଳ ପ୍ରବଳ ପ୍ରତାପୀ ଅସୁର ରାଜା ମହିଷାସୁରର ବଧ ନିମିତ୍ତ ।

ପୁରାଣ ବର୍ଣ୍ଣିତ ମହିଷାସୁର ବ୍ରହ୍ମାଙ୍କଠାରୁ ବରପ୍ରାପ୍ତ ହୋଇଥିଲା । ସେ କୌଣସି ପୁରୁଷ ହସ୍ତରେ କଦାପି ନିହତ ହୋଇପାରିବ ନାହିଁ । ଏ ପ୍ରକାର ବରପ୍ରାପ୍ତି ହେତୁ ମନରେ ତା'ର ଅଶେଷ ଗର୍ବ ଭାବ ଆସିଗଲା ଏବଂ ସେ ଦେବତାମାନଙ୍କୁ ଯୁଦ୍ଧରେ ଅନାୟାସରେ ପରାସ୍ତ କରିବାକୁ ସକ୍ଷମ ହୋଇପାରିଥିଲା । ଇନ୍ଦ୍ରାଦି ଦେବଗଣ ଅତ୍ୟନ୍ତ ଭୟଭୀତ ହୋଇ ତା'ର ଦୁର୍ବହ ଅତ୍ୟାଚାରରୁ ରକ୍ଷା ପାଇବା ପାଇଁ ବିଷ୍ଣୁଙ୍କ ପରାମର୍ଶ ଲୋଡ଼ିଥିଲେ ।

ସେମାନେ ଜାଣନ୍ତି, ବ୍ରହ୍ମା ବରପ୍ରାପ୍ତ ମହିଷାସୁର ସେମାନଙ୍କଦ୍ୱାରା ନିହତ ହେବା କଦାପି ସମ୍ଭବ ନୁହେଁ । ସେମାନଙ୍କ ମିଳିତ ଶକ୍ତିରେ ଯେଉଁ ନାରୀ ଦେବୀ ମୂର୍ତ୍ତି ଆବିର୍ଭୂତ ହେବେ ତାଙ୍କରିଦ୍ୱାରା ତା'ର ବିନାଶ ସମ୍ଭବ ହୋଇପାରିବ । ସେମାନଙ୍କର ଅସ୍ତବ୍ୟସ୍ତଦ୍ୱାରା ସଜ୍ଜିତ ସେହି ଦିବ୍ୟ ଦେବୀ ମୂର୍ତ୍ତି ହିଁ ମହିଷାସୁରକୁ ଅକ୍ଳେଶରେ ବଧ କରିପାରିବେ । ତେଣୁ ଦେବତାମାନଙ୍କର ସମ୍ମିଳିତ ଶକ୍ତିରେ ରୂପ ପରିଗ୍ରହଣପୂର୍ବକ ଅପରୂପା ମହାଶକ୍ତିରେ ରୂପ ପରିଗ୍ରହଣ ପୂର୍ବକ ଅପରୂପା ମହାଶକ୍ତିମୟୀ ଉଦ୍ଭୁତ ଦେବୀ ଦୁର୍ଗା ସେହି ଦେବତାମାନଙ୍କର ଶକ୍ତି ଓ ଆୟୁଧ ଗ୍ରହଣ କରି ମହିଷାସୁରକୁ ବିନାଶ କଲେ ।

ସେହି ମହାଶକ୍ତି ରୂପା ଦେବୀ ଦୁର୍ଗା ଦେବତାମାନଙ୍କୁ ଦୁର୍ଗତିରୁ ରକ୍ଷା କରିଥିବାରୁ ଦୁର୍ଗତି ନାଶିନୀ ନାମରେ ପ୍ରାୟ ଅଭିହିତ ହେଲେ । କେବଳ ମାର୍କଣ୍ଡେୟ ପୁରାଣ ନୁହେଁ, ବିଭିନ୍ନ ପୁରାଣ ବିଭିନ୍ନ ପ୍ରସଙ୍ଗର ଅବତାରଣାରେ ସୂଚନା ଦିଆଯାଇଛି । ଶକ୍ତି ସ୍ୱରୂପା ଦୁର୍ଗାଙ୍କର ପୂଜା, ଆରାଧନାଦ୍ୱାରା ଚିରକାଳ ଦୁର୍ଗତି ଦୂର ହୋଇଛି । ତତ୍ତ୍ୱ ଦୃଷ୍ଟିରୁ ବିଚାର କଲେ ସମ୍ଭବତଃ ସ୍ୱଷ୍ଟ ପ୍ରତୀୟମାନ ହୁଏ ଦୁର୍ଗାଙ୍କର ଆବିର୍ଭାବ ମୂଳରେ କେବଳ ଏହି ସତ୍ୟ ବିଦ୍ୟମାନ ।

ମହାମାୟା ମହାଶକ୍ତି ମହିଷମର୍ଦ୍ଦିନୀ ମାଆ ଦୁର୍ଗାଙ୍କର ଦକ୍ଷିଣଭାଗରେ ଧନୈଶ୍ୱର୍ଯ୍ୟ ପ୍ରଦାୟିନୀ ମହାଲକ୍ଷ୍ମୀ ଭାଗ୍ୟ ରୂପା ଶକ୍ତି, ସର୍ବସିଦ୍ଧିଦାତା ଜ୍ଞାନଗୁରୁ ଗଣପତି ଚିନ୍ତା ଶକ୍ତି, ବାମରେ ଜ୍ଞାନଧିଷ୍ଠାତ୍ରୀ ଶୁଭ୍ରା ବାଗ୍‌ବାଦିନୀ ସରସ୍ୱତୀ ପ୍ରଜ୍ଞାଶକ୍ତି ଓ ବିପୁଳ ପରାକ୍ରମଶାଳୀ ଦେବ ସେନାପତି କାର୍ତ୍ତିକ ଯେ କି ଶୌର୍ଯ୍ୟ ଶକ୍ତିର ପ୍ରତୀକ ।

ସେହିପରି ଅନୁନାୟିକା, ଷୋଡ଼ଶ ମାତୃକା ପ୍ରଭୃତି ଏହି ମୂଳ ଶକ୍ତିର ରୂପାନ୍ତର ମାତ୍ର ।

ଶକ୍ତି ଉପାସନା କରିବାକୁ ହେଲେ - ବହିର୍ଜଗତରେ କେବଳମାତ୍ର ପ୍ରତିକଳ୍ପ ରଖି ପ୍ରକୃତ ପୂଜା କରିବାକୁ ହେବ ମାନସିକ ଚିନ୍ତାଶକ୍ତିର ।

ଯଦିଓ ଶକ୍ତି ଜଗତବ୍ୟାପ୍ତା ତଥାପି ତାଙ୍କର ଆବାହନର ଅର୍ଥ ହେଉଛି ଏକାଗ୍ରତା ନିବଦ୍ଧ କରିବା ଲାଗି ଯେଉଁ ମାଧ୍ୟମ (ମୂର୍ତ୍ତି) ଆବଶ୍ୟକ । ସେହି ମାଧ୍ୟମ ବା ମୂର୍ତ୍ତିରେ ଆକର୍ଷଣୀୟ ଶକ୍ତିର ଉପଲବ୍ଧି । ବହିର୍ଜଗତରେ ପୂଜକର ଚକ୍ଷୁ ସମ୍ମୁଖରେ ଯେଉଁ ମୂର୍ତ୍ତି ବିଦ୍ୟମାନ ତାହାର ପ୍ରତିବିମ୍ବ ସାଧକର ହୃଦୟରେ ପ୍ରତିଫଳିତ ।

ଶରୀରସ୍ଥ ଦୁର୍ଗା ଅର୍ଥାତ୍ ଚିନ୍ମୟ ଶକ୍ତିଦ୍ୱାରା ମନ ମଧ୍ୟସ୍ଥ ମହିଷାସୁର ବା ମାୟା ବା ମୋହ ପ୍ରଭୃତି ବିକାରଗୁଡ଼ିକୁ ନଷ୍ଟ କରି ସେହି ମହତ୍ ଶକ୍ତିକୁ ଉପଲବ୍ଧି କରିବା ହିଁ ସାଧକର ପ୍ରଥମ କର୍ତ୍ତବ୍ୟ ।

ତଥାପି ମୂର୍ତ୍ତି ମାଧ୍ୟମରେ ଦୁର୍ଗା ରୂପିଣୀ ମହାଶକ୍ତିକୁ ଅନୁଭବ କରିବାର ଯେଉଁ ପ୍ରଥା ଏ ପର୍ଯ୍ୟନ୍ତ ଚଳି ଆସୁଛି ତାହାଦ୍ୱାରା ସାଧନାର ମାର୍ଗ ସହଜ, ସରଳ, ସୁଗମ ହୋଇପାରେ ।

ସଂପାଦିକା 'ନବରବି'
ଏ-୩୧୮, ଶହୀଦ ନଗର
ଭୁବନେଶ୍ୱର

# ଜୟପୁରରେ ଦଶହରା

ଡଃ ପ୍ରମୋଦିନୀ ହୋତା

'ଶରତର ମନୋରମ ଶୀତସିକ୍ତ ରଜନୀ, ଶାରଦୀୟ ଜହ୍ନର ନୈସର୍ଗିକ ଶୋଭା ବିଳମ୍ବିତ ରାତ୍ରିର ପ୍ରହରରେ ଯେତେବେଳେ ଆକାଶ ଛାତିରୁ ଆଶ୍ୱିନର ଟୋପା ଟୋପା କାକର ବିନ୍ଦୁ ଜୟପୁର ରାଜରାସ୍ତାରେ ଖସିପଡ଼େ, ଶଙ୍ଖ-ଘଣ୍ଟ ଧ୍ୱନି ସହିତ ମାତୃ ବନ୍ଦନାରେ ଜୟପୁର ସହରର ଗଗନ ପବନ ମୁଖରିତ ହୋଇଉଠେ । 'ଯା ଦେବୀ ସର୍ବ ଭୂତେଷୁ ଶକ୍ତି ରୂପେଣ ସଂସ୍ଥିତା' ସ୍ତବ ପଠନର ଧ୍ୱନି ବହୁ ପ୍ରତୀକ୍ଷିତ ଦୁର୍ଗା ପୂଜାର ଶୁଭାଗମନର ବାର୍ତ୍ତା ଜୟପୁରର ପ୍ରତି ସାହି ଗଳକନ୍ଦିରେ ପ୍ରଚାର କରେ । କୋରାପୁଟ ଜିଲ୍ଲାର ପ୍ରାଣ କେନ୍ଦ୍ର ଜୟପୁର ସହରର ସଂସ୍କୃତି, ପରମ୍ପରା ଓ ସାମାଜିକ ଜୀବନ ଚର୍ଯ୍ୟା ଅନ୍ୟମାନଙ୍କୁ ପ୍ରେରଣା ଓ ଦିଗ୍‌ଦର୍ଶନ ଦେଇ ଆସିଛି । ଇଂରେଜ ଶାସକଙ୍କ ଦ୍ୱାରା ଜୟପୁର ଦଶହରାକୁ ଦକ୍ଷିଣ ଭାରତର ସର୍ବଶ୍ରେଷ୍ଠ ଉତ୍ସବ ଭାବେ ଗ୍ରହଣ କରାଯାଉଥିଲା । ଇତିହାସ ପୃଷ୍ଠା ଉନ୍ମୋଚନ କଲେ ଜଣାଯାଏ, କାଞ୍ଚି ବିଜୟର ପ୍ରତ୍ୟାବର୍ତ୍ତନ ସମୟରେ ନନ୍ଦପୁର ମହାରାଜା ବିଜୟ ଚନ୍ଦ୍ରାକ୍ଷ ବିଜୟର ପ୍ରତୀକ ସ୍ୱରୂପ ଅଷ୍ଟଧାତୁର ପ୍ରତିମା କନକ ଦୁର୍ଗାଙ୍କୁ ପାଇଥିଲେ । ଏହି ଦେବୀଙ୍କୁ ରାଜ ପ୍ରାସାଦରେ ପ୍ରତିଷ୍ଠିତ କରି ସେ ଦୁର୍ଗାପୂଜା ଆରମ୍ଭ କରିଥିଲେ ।


ବାଙ୍କମଠରେ ଦେବୀଙ୍କ ପ୍ରତୀକ... ପବିତ୍ର ଲାଠି

ଦେବୀଙ୍କୁ ସନ୍ତୁଷ୍ଟ କରିବା ସକାଶେ ନରବଳି ଦିଆଯାଉ ଥିଲା । ବୀର ବିକ୍ରମ ରାଜା ହେବା ପରେ ନିଜ ରାଜଧାନୀକୁ ନନ୍ଦପୁରରୁ ଜୟପୁର ରାଜ୍ୟକୁ ଉଠାଇ ଆଣିଥଲେ । ରାଜା ବିକ୍ରମଦେବ ବର୍ମା ନରବଳି ପ୍ରଥା ଉଠାଇଦେଇ ପୋଡୁଅ ବଳି ଓ ଛାଗବଳି ପ୍ରଥା ପ୍ରଚଳନ କରିଥିଲେ । ଅଷ୍ଟମୀ ଦିନ କନକ ଦୁର୍ଗା ମନ୍ଦିର ବେଢ଼ା ଭିତରେ ଏବଂ କାଳିକା ମନ୍ଦିରରେ ପୋଡୁଅ (ମହିଷ) ବଳି ଦିଆଯାଉଥିଲା କିନ୍ତୁ ଭଗବତୀ ମନ୍ଦିରରେ ଛାଗବଳି ଦିଆଯାଉଥିଲା । ଡାରେଙ୍ଗନା ଗ୍ରାମର ଶିଶାମେରିଆ ପୁଷ୍ପର ମାଳ ପଶୁ ବେକରେ ଲମ୍ବାଇ ମଣିଷ ଭଳି ପଶୁକୁ କ୍ଷୌର ଓ ସ୍ନାନାଦି କରି କନକ ଦୁର୍ଗା ମନ୍ଦିରକୁ ନେଉଥିଲା । ମହାରାଜା ଓଷ୍ଟୋପକ୍ଷୀ ପର ଖଚିତ ମାଣିକ୍ୟ ଯୁକ୍ତ ମୁକୁଟ ପିନ୍ଧି ଲାଲରଙ୍ଗର ବସ୍ତ୍ର ପରିଧାନ କରି ମହାରାଣୀ ପାଟ ମହାଦେଈଙ୍କ ସାଥିରେ ମନ୍ଦିର ବେଢ଼ାରେ ପ୍ରବେଶ କରି ଦେବୀଙ୍କ ପୂଜାର୍ଚ୍ଚନା କରୁଥିଲେ, ଆଉ ରାତିରେ ପଶୁବଳି ଦିଆଯାଉଥିଲା । ସେହିଦିନ ରାଜା ଦରବାରରେ ସୁବର୍ଣ୍ଣପୁଟି ଦିଆଯାଇଥିବା ପାଟଳ ରଙ୍ଗର ସିଂହାସନରେ ବସି ଜନସାଧାରଣଙ୍କୁ ଦର୍ଶନ ଦେଉଥିଲେ । ସାନ ଓ ବଡ଼ ସିଂହାସନ ଦୁଇଟି ଦଶହରା ସମୟରେଏବଂ ରାଜକୁମାରଙ୍କ ଅଭିଷେକ ସମୟରେ ବ୍ୟବହୃତ ହେଉଥିଲା । ରାଜତନ୍ତ୍ର ଥିବା ପର୍ଯ୍ୟନ୍ତ କାଳିକା ମନ୍ଦିରରେ ମହିଷବଳି ପ୍ରଥା ଅପରିବର୍ତ୍ତିତ ଥିଲା । ଅଷ୍ଟମୀ ଦିନରେ ପରିବେଶ ଭୟାନକ ଏବଂ ଗମ୍ଭୀର ହେଉଥିଲା । ଦଶହରା ସମୟରେ ରାଜ୍ୟର ପ୍ରଧାନ ଆକର୍ଷଣ ଥିଲା ରାଜପ୍ରାସାଦର ବୈଭବ ପ୍ରଦର୍ଶନ । ରାଜପ୍ରାସାଦର ବିଶାଳ ପ୍ରାଣୀ ସଂଗ୍ରହାଳୟ ଓ ତାପ କମାଣ, ବିଭିନ୍ନ ଆକୃତିର ଘୋଡ଼ାଗାଡ଼ି, ସୂର୍ଯ୍ୟ ଘଡ଼ି ଜୟପୁର ରାଜ୍ୟର ଶୋଭାମଣ୍ଡନ କରୁଥିଲା । ତୋପ ଫୁଟିବା ସମୟରେ ବାଘ ଭଣ୍ଡାରରୁ ବାଘର ଗର୍ଜନ ଶୁଣାଯାଉଥିଲା । ସେ ସମୟରେ ଶହ ଶହ ସଂଖ୍ୟାରେ ଏକପ୍ରକାର ଚଟିଆ ସୂର୍ଯ୍ୟମହଲ ଓ ରାଜମହଲକୁ ଆସି ପରିବେଶକୁ ମୁଖରିତ କରୁଥିଲେ । ରାଜ ରାସ୍ତାରେ ଧାଡ଼ି ଧାଡ଼ି ହୋଇ ବିଭିନ୍ନ କିସମର ପଶୁପକ୍ଷୀର ଗୋବର କଣ୍ଢେଇ ବିକ୍ରୟ କରାଯାଉଥିଲା । ରାଜ କର୍ମଚାରୀମାନେ ଆଖପାଖ ଅଞ୍ଚଳରୁ ଖଜଣା ଆଦାୟ କରି ଫେରୁଥିଲେ ଏବଂ ନାକଟିଡ଼ଙ୍ଗର ପାହାଡ଼ର

ପାଦ ଦେଶରେ ଥିବା ହାତୀଶାଳଠାରୁ ପାଞ୍ଜିଆଗୁଡ଼ା ମେଘମାଳ ତୋଟା ପର୍ଯ୍ୟନ୍ତ ଜଗନ୍ନାଥ ସାଗରର ଚାରିଆଡ଼େ ଅସ୍ଥାୟୀ ଡେରା ପକାଉ ଥିଲେ । ନନ୍ଦପୁରର କୁଟୁଣିମାଳ ପାହାଡ଼ରେ ଧାନଚାଷ କରାଯାଉଥିଲା । ସେଠାରେ ଦାରିଙ୍ଗୀ ଗାଁର ଶିଶାମାନେ ଧାନ ଅମଳ କରି କୁଟୁଣୀ କୁଣ୍ଡରେ କୁଟି ଚାଉଳ ମହାରାଜାଙ୍କୁ ଭେଟି ଦେଉଥିଲେ ଏବଂ ରାଜ ପରିବାରର ସଦସ୍ୟ ଦଶହରା ଦିନ ନୂଆ ଖାଉଥିଲେ । ଦଶହରା ଦିନ ଜୟପୁର ରାଜ୍ୟର ଆଖପାଖ ଗାଁର ଗ୍ରାମବାସୀମାନେ ନିଜ ନିଜ ଗ୍ରାମ ଦେବଦେବୀଙ୍କ ପ୍ରତୀକ ବିଭିନ୍ନ ରଙ୍ଗବେରଙ୍ଗ ବାନାଯୁକ୍ତ ବାଉଁଶଲାଠି ଧରି ଗାଁର ମୁଖିଆ, ନାଏକ, ବାରିକ, ଶିଶା, ପୂଜାରୀଙ୍କ ଗହଣରେ ନୃତ୍ୟ, ଗୀତ, ଢ଼ୋଲ, ମହୁରୀ, ତୂରୀ ସହିତ ବିଶାଳ ଜନସମାଗମରେ ଆଦିବାସୀ ଅଣ ଆଦିବାସୀ ରାଜପ୍ରାସାଦ ସମ୍ମୁଖରେ ଏକତ୍ର ହେଉଥିଲେ । ସେଠାରେ ରାଜା ପୂଜାର୍ଚ୍ଚନା କରୁଥିଲେ, ପରେ ମହାରାଜା ପାଲିଙ୍କିରେ ରାଜକର୍ମଚାରୀ ଏବଂ ନିମନ୍ତ୍ରଣ ଅତିଥିବୃନ୍ଦ ହାଉଦା ଓ ହମ୍ବାରୀରେ ବସି ବିଶାଳ ଜନସମାଗମ ସହ ଦଶହରା ପଡ଼ିଆକୁ ଯାଉଥିଲେ । ସେଠାରେ ଅପରିଜିତା ପୂଜା ପରେ ନାନା ପ୍ରକାର ନୃତ୍ୟ ଗୀତ ପରିବେଷଣ କରାଯାଉଥିଲା । ବହୁ ଆଡ଼ମ୍ବରସହ ପୂଜା ସମ୍ପାଦନା କରାଯାଉଥିଲା । ବର୍ତ୍ତମାନ ମଧ୍ୟ ଜୟପୁର ସହରରେ ମା' ଭଗବତୀ ମା' ଦକ୍ଷିଣକାଳୀ, ମା' ସନ୍ତୋଷୀ, ମା' ଝାଙ୍କର ଦେଈଙ୍କ ପୀଠ ସମେତ ସହରର ବିଭିନ୍ନ ସ୍ଥାନରେ ଦୁର୍ଗାପୂଜା ବହୁ ଜାକଜମକରେ ପାଳିତ ହେଉଅଛି । ପୂର୍ବ ପ୍ରଚଳିତ ପ୍ରଥା ଅନୁସାରେ ବୈପାରୀଗୁଡ଼ାରୁ ବୀରଖମ୍ବ, ଉମରକୋଟରୁ ମା' ପେଣ୍ଡ୍ରାଣୀ, ବରିଗୁମ୍ମାରୁ ବୁଢ଼ା ଭୈରବ ଲାଠି ସହିତ ୫୭ଟି ପୀଠରୁ ବିଭିନ୍ନ ଗ୍ରାମ ଦେବଦେବୀଙ୍କ ପ୍ରତୀକ ରଙ୍ଗୀନବାନାଯୁକ୍ତ ବାଉଁଶ ଲାଠି ହାତରେ ଧରି ମୁଖିଆ, ପୂଜକ ଜୟପୁର ସହରକୁ ଆସିଥାନ୍ତି । ରାତିରେ ସେମାନେ ଲାଠି ସହିତ ବାଙ୍କ ମଠରେ ଅବସ୍ଥାନ କରିଥାନ୍ତି । ବିଜୟା ଦଶମୀ ଦିନ ସମସ୍ତ ଲାଠିକୁ ପୂଜା କରିବା ପରେ ଶୋଭାଯାତ୍ରାରେ ପୁରୁଣାଗଡ଼ସ୍ଥିତ କାଳୀ ମନ୍ଦିରକୁ ଢ଼ୋଲ, ମହୁରୀ, ତୂରୀ ବଜାଇ ନିଆଯାଇଥାଏ । ସମସ୍ତ ଲାଠିକୁ ସେଠାରେ ପାରମ୍ପରିକ ରୀତିରେ ପୂଜାର୍ଚ୍ଚନା ପରେ ଛାଗବଳି ଦିଆଯାଏ । ତା'ପରେ ଭଗବତୀ ମନ୍ଦିରକୁ ସମସ୍ତ ଲାଠିକୁ ଅଣାଯାଇ ସେଠାରେ ପୂଜାର୍ଚ୍ଚନା କରାଯାଏ । ଭଗବତୀ ମନ୍ଦିରଠାରୁ ସମସ୍ତ ଲାଠି ସହିତ ଏକ ବିରାଟ ପଟୁଆରରେ ଦଶହରା ପଡ଼ିଆକୁ ଅଣାଯାଇଥାଏ । ଦଶହରା ପଡ଼ିଆରେ ଅପରାଜିତା ପୂଜା କରାଯାଏ । ଆତସବାଜି, କର୍ପୂର ଧୂପ, ଝୁଣାର ସୁଗନ୍ଧ ଓ ମନ୍ତ୍ର ଧ୍ୱନିରେ ଜୟପୁର ସହର ମୁଖରିତ ହୋଇ ଉଠେ । ଏହି ସମୟରେ ରାବଣ ପୋଡ଼ି କରାଯାଇଥାଏ । **ଦଶହରା ପୂଜା ହେଉଛି ଆଦିବାସୀ ଓ ଅଣଆଦିବାସୀ ସଂସ୍କୃତିର ଏକ ଅପୂର୍ବ ମିଳନ ।** ଦଶହରା ପଡ଼ିଆରେ ସଂଗୀତ ନୃତ୍ୟର ଆସର, ଭଜନ ସନ୍ଧ୍ୟା, ଯୋଡ଼ା ଶଙ୍ଖ ନୃତ୍ୟ, ଢେମସା ନାଚ, ବନାଟି ସମର ନାଚ, ଲୋକନୃତ୍ୟ ପରିବେଷଣ କରାଯାଏ । ବର୍ତ୍ତମାନ ଦଶହରା ପଡ଼ିଆକୁ ନୂତନ ନାମକରଣ କରାଯାଇଛି- ବିକ୍ରମ ଦେବ ଷ୍ଟାଡ଼ିୟମ । ଏହି ପଡ଼ିଆରେ ଦଶହରା ଉତ୍ସବ ପାଳନ କରାଯାଏ । ବିଭିନ୍ନ ପୀଠର ଲାଠି ବାହାକମାନଙ୍କୁ, ବିଭିନ୍ନ ସାହିର ବ୍ୟକ୍ତିବିଶେଷଙ୍କୁ ଦଶହରା ଦିନ ଶିରପା, ଉପଢୌକନ, ମାନପତ୍ର ଦେଇ ସମ୍ମାନିତ କରାଯାଏ । ଦଶହରା ପର୍ବ ପରେ ଲାଠି ବାହାକମାନେ ନିଜ ନିଜ ଗ୍ରାମ ଦେବୀଙ୍କ ଲାଠି ଧରି ନିଜ ଅଞ୍ଚଳକୁ ପ୍ରତ୍ୟାବର୍ତ୍ତନ କରିଥାନ୍ତି । ଦଶହରା ପର୍ବରେ ଲାଠିଯାତ୍ରାର ବିଶେଷତ୍ୱ ପ୍ରତିପାଦନ କରାଯାଏ । ଆଜି ମଧ୍ୟ ବୈପାରିଗୁଡ଼ା ବୀରଖମ୍ବ ଠାକୁରାଣୀ ପୀଠରୁ ପାରମ୍ପରିକ ଫୁଲ ଚାଙ୍ଗୁଡ଼ି ଅପରାଜିତା ପୂଜା ପାଇଁ ଆସେ । ପୂର୍ବ ପ୍ରଥା ଅନୁସାରେ ପ୍ରାଚୀନ ରାଜଧାନୀ ନନ୍ଦପୁରରୁ ପ୍ରତୀକ ନୀଳ ପତାକା ସହ ବିଧି ପ୍ରକାର ନୂଆଁ ଧାନର ଚାଉଳ ଭାର ନେଇ ତିନି ଦଳରେ ବିଭକ୍ତ ହୋଇ ପଦଯାତ୍ରାରେ ସେବାୟତମାନେ ଆସନ୍ତି । ବର୍ଣ୍ଣାଢ଼୍ୟ ପରିବେଶ ଭିତରେ ଦାଶହରା ପର୍ବ ବହୁ ଆଡ଼ମ୍ବର ସହକାରେ ସମାପନ ହୋଇଥାଏ । ହଶହରା ମହୋତ୍ସବ ଜୟପୁର ସହରର ଏକ ଗୌରବାବହ ପରମ୍ପରା । ଯେଉଁଠି ରହିଛି ଅତୀତର ଗୌରବ, ପରମ୍ପରାର ଐତିହ୍ୟ ଏବଂ ବର୍ତ୍ତମାନର ସ୍ୱାଭିମାନ ଓ ଭବିଷ୍ୟତର ସଂସ୍କୃତି ସୁରକ୍ଷାର ଅକ୍ଷୟ କବଚ ।

> ଦଶହରା ପର୍ବ ପରେ ଲାଠି ବାହାକମାନେ ନିଜ ନିଜ ଗ୍ରାମ ଦେବୀଙ୍କ ଲାଠି ଧରି ନିଜ ଅଞ୍ଚଳକୁ ପ୍ରତ୍ୟାବର୍ତ୍ତନ କରିଥାନ୍ତି । ଦଶହରା ପର୍ବରେ ଲାଠିଯାତ୍ରାର ବିଶେଷତ୍ୱ ପ୍ରତିପାଦନ କରାଯାଏ ।

ପ୍ରାଧ୍ୟାପିକା ଓ ଶିକ୍ଷା ବିଭାଗୀୟ ମୁଖ୍ୟ
ଖଲ୍ଲିକୋଟ (ସ୍ୱୟଂଶାସିତ) ମହାବିଦ୍ୟାଳୟ
ବ୍ରହ୍ମପୁର



# କେନ୍ଦ୍ରାପଡ଼ା ଅଞ୍ଚଳର ପ୍ରସିଦ୍ଧ ଦେବାଦେବୀ

ଡକ୍ଟର କାଙ୍ଗାଳି ଚରଣ ନାୟକ

**ପ**ବିତ୍ର ଉତ୍କଳ ଭୂମିରେ ବହୁ ପୁରାତନ କାଳରେ ରାଜା, ମହାରାଜା, ଧନୀ ଜମିଦାରଙ୍କ ବଦାନ୍ୟ ଓ ସହଯୋଗରେ ଅସଂଖ୍ୟ ସୂକ୍ଷ୍ମ କାରୁକାର୍ଯ୍ୟ ବିଭୂଷିତ ମନ୍ଦିର ନିର୍ମିତ ହୋଇଛି । ସେଥିମଧ୍ୟରୁ କେତେକ ଭଗ୍ନ ଅବସ୍ଥାରେ ପଡ଼ିଥିବାବେଳେ କେତେକ ପ୍ରାଚୀନ ମନ୍ଦିରର ଆଖ୍ୟା ଲାଭ କରି ବହୁ ଚର୍ଚ୍ଚିତ ଓ କେତେକ ଲୋକଲୋଚନର ଅନ୍ତରାଳରେ ରହି ଅବହେଳିତ ଏବଂ ପରିତ୍ୟକ୍ତ ହୋଇରହିଛି । ଏହିପରି ଭାବରେ କେନ୍ଦ୍ରାପଡ଼ା ଜିଲ୍ଲା ଉପକୂଳ ଅଞ୍ଚଳରେ ବହୁତଗୁଡ଼ିଏ ଦେବାଦେବୀ ଦେଖାଯାଆନ୍ତି । ସେଥିମଧ୍ୟରୁ ରାମଚଣ୍ଡୀ, ମା' ଅଲେଖ ନାହାକାଣୀ, ପଞ୍ଚବରାହୀ, ରିଘାଗଡ଼ର ବଳଦେବ ଜୀଉ, ଚନ୍ଦନନଗରର ଚନ୍ଦ୍ରମୌଳି ପ୍ରଭୃତି ଅନ୍ୟତମ । ଏକଦା ଏହି ଦେବାଦେବୀମାନେ ଖ୍ୟାତିଲାଭ କରିଥିବା ବେଳେ ଏବେ ଅବହେଳିତ ଅବସ୍ଥାରେ ପଡ଼ି ରହିଛନ୍ତି । ଏହି ଦେବାଦେବୀଙ୍କ ସମ୍ବନ୍ଧରେ ନିମ୍ନରେ ଆଭାସ ଦିଆଗଲା ।

### ରାମଚଣ୍ଡୀ ମନ୍ଦିର

'ରାମଚଣ୍ଡୀ'ଙ୍କ ମନ୍ଦିର କେନ୍ଦ୍ରାପଡ଼ା ଜିଲ୍ଲାର ମହାକାଳପଡ଼ା ଥାନାରେ ଅବସ୍ଥିତ । ଏହା ପୁରୀ ଜିଲ୍ଲାର ପ୍ରସିଦ୍ଧ ରାମଚଣ୍ଡୀ ମନ୍ଦିର ନୁହେଁ । ପାରାଦୀପଠାରୁ ଜଳପଥରେ ପ୍ରାୟ ୧୧ କି.ମି. ଦୂର ଅଟେ । ପାରାଦୀପ ବନ୍ଦର ନିକଟରେ ଥିବା ମହାନଦୀର ଶାଖାନଦୀ ସାହାଯ୍ୟରେ ଯାଇ ଫଲସ୍ ପଏଣ୍ଟ ବତୀଘର ବା ହୁକ୍‌ଟେଲା ବତୀଘର ଓ ସେହି ସ୍ଥାନରୁ ଅନ୍ୟ ଏକ ନଦୀରେ ଯାଇ ରାମଚଣ୍ଡୀ ମନ୍ଦିର ନିକଟରେ ପହଞ୍ଚିହେବ । ଏବେ ଦୈତାରୀରୁ ପାରାଦୀପକୁ ଯାଇଥିବା ୫(କ) ଜାତୀୟ ରାଜପଥରୁ ଏକ ପିଚୁରାସ୍ତା ମାର୍ଶାଘାଇ ଦେଇ ପୂର୍ବାଭିମୁଖୀ ହୋଇ ରାମଚଣ୍ଡୀଙ୍କ ପର୍ଯ୍ୟନ୍ତ ନିର୍ମାଣ ହୋଇଛି । ସଦର କେନ୍ଦ୍ରାପଡ଼ା ସହରଠାରୁ ଏହା ପ୍ରାୟ ୩୫ କି.ମି. ଦୂର ହେବ । କଳାପାହାଡ଼କୁ ଦୁଆରେ ବସାଇ ପାଣି ଆଣିବାକୁ ଯାଇ ଠକି ଦେଇ ଚାଲିଯାଇଥିବା କିମ୍ବା କବି ନୀଳକଣ୍ଠ ଦାସଙ୍କୁ ଆକୃଷ୍ଟ କରିଥିବା ପୁରୀ ଜିଲ୍ଲାର ରାମଚଣ୍ଡୀଙ୍କଠାରୁ ଏ ରାମଚଣ୍ଡୀ ଭିନ୍ନ । ଆଗେ ରାମଚଣ୍ଡୀ ବଣରେ ରହି ପୂଜା ପାଉଥିଲେ । ଏବେ ବଙ୍ଗଳାଦେଶରୁ ଶରଣାର୍ଥୀମାନେ ଆସିବା ସହିତ ରାମନଗର, ଖରନାସୀ, ବତୀଘର, ବରକୋଳି ଖଳା ଓ ଟୁବୀ ପ୍ରଭୃତି ଜନବସତି ଗଢ଼ି ଉଠିବା ସହିତ ଦେବୀଙ୍କର ପୂଜା ଓ ଯାତ୍ରା ବଢ଼ିଚାଲିଛି ।

ପାରାଦୀପ ଅଦୂରବର୍ତ୍ତୀ ହୁକ୍‌ଟେଲା ପୂର୍ବରୁ ଏକ ବନ୍ଦର ଥିଲା । ଏବେ ଏହାର ଧ୍ୱଂସାବଶେଷ ଦେଖିବାକୁ ମିଳେ । ତେଣୁ ଅନୁମାନ କରାଯାଏ ପ୍ରାଚୀନ ଓଡ଼ିଶାର ନୌବାଣିଜ୍ୟ ସମୟରେ ଏହି ଦେବୀ ହୋଇ ପୂଜା ପାଇ ଆସୁଥିଲେ । ହୁକ୍‌ଟେଲା ବତୀଘର ବା ଫଲସ୍ ପଏଣ୍ଟ ବତୀଘର ହେଉଛି ଓଡ଼ିଶାର ସର୍ବପ୍ରାଚୀନ ବତୀଘର । ଏହି ବତୀଘରକୁ ଇଂରେଜ ସରକାର ତିଆରି କରିଥିଲେ । 'ରାମଚଣ୍ଡୀଙ୍କ ମନ୍ଦିର ଶହେ ବର୍ଷରୁ ଊର୍ଦ୍ଧ୍ୱ ହେବ ବୋଲି ଅନୁମାନ କରାଯାଏ । କିନ୍ତୁ ମନ୍ଦିରରେ ଥିବା ମୂର୍ତ୍ତି ବହୁଦିନର ବୋଲି ଶୁଣାଯାଏ । ମନ୍ଦିର ବେଢ଼ାର ଲମ୍ବ ୩୨ ଫୁଟ, ଚଉଡ଼ା ୨୬ ଫୁଟ ଓ ଉଚ୍ଚତା ୨୦ ଫୁଟ । ଗୋବରୀ ନଦୀ ଏହି ମନ୍ଦିର ନିକଟରେ ତା'ର ପଥ ବଦଳାଇଛି । ଏହି ନଦୀ ଖୁବ୍ ଗଭୀର ଓ ଅଣଓସାରିଆ । ନଦୀରେ ଡଙ୍ଗା ଯିବାବେଳେ ମଧ୍ୟ ଲୋକମାନେ ଖୁବ୍ ସାବଧାନରେ ପାରି ହୋଇଥାନ୍ତି । ରାମଚଣ୍ଡୀ ଲୋକମାନଙ୍କ ଡାକ ଶୁଣନ୍ତି ଓ ଡଙ୍ଗା ନେଇ ଯିବା ଲୋକ ଆଶ୍ଚର୍ଯ୍ୟଜନକ ଭାବରେ ବିପଦରୁ ରକ୍ଷା ପାଇଥାନ୍ତି । ଏହାର ପ୍ରମାଣ ଅନେକ ଅଛି ଓ ରାମଚଣ୍ଡୀ ମନ୍ଦିରରେ ଡଙ୍ଗାର ଚିତ୍ରମାନ ଦେଖିବାକୁ ମିଳେ । ଠାକୁରାଣୀ ଡଙ୍ଗା ମଙ୍ଗରେ ବସିଛନ୍ତି ।'(୧) ଏଥିରୁ ଓଡ଼ିଶାର ପ୍ରାଚୀନ ନୌବାଣିଜ୍ୟ ସହିତ ରାମଚଣ୍ଡୀ ମନ୍ଦିର କିପରି ଜଡ଼ିତ ତାହା ସହଜରେ ଅନୁମେୟ । ପୂର୍ବରୁ କେନ୍ଦ୍ରାପଡ଼ା ଅଞ୍ଚଳର ଲୋକମାନେ ଡଙ୍ଗାଦ୍ୱାରା ପାରାଦୀପରେ ଧାନ ବେପାର କରୁଥିବା ବେଳେ ଏହି ବାଟେ ଯାଉଥିଲେ ଓ ଦେବୀଙ୍କର ପୂଜା ଅର୍ଚ୍ଚନା କରୁଥିଲେ । ଏବେ ସେ ଧାନ ବେପାର ନାହିଁ କିମ୍ବା ଲୋକମାନେ ସେହି ବାଟେ ଡଙ୍ଗାରେ ଯାଉ ନାହାନ୍ତି । ମାତ୍ର ଦେବୀଙ୍କର ପୂଜା, ଆରାଧନା କରିବା ସହିତ ତାଙ୍କର ପର୍ବପର୍ବାଣିକୁ ଆଗ୍ରହର ସହିତ ଏଠାରେ ପାଳନ କରାଯାଉଛି ।

ମା' ମଙ୍ଗଳାଙ୍କ ପରି ଦେବୀଙ୍କ ମୁକୁଟ କଳାରଙ୍ଗର ଓ ତିନିଇଞ୍ଚ ମାତ୍ର । ଦେବୀଙ୍କ ମନ୍ଦିରରେ ଦେବୀଙ୍କ ସମ୍ମୁଖରେ ଏକ ଶିବମୂର୍ତ୍ତି ଅଛି । ଶାରଳାଙ୍କ ରାଉଳ ଓ ଘଣ୍ଟ ପାଟୁଆଙ୍କ ପରି ରାମଚଣ୍ଡୀଙ୍କର ରାଉଳ ଓ ଘଣ୍ଟପାଟୁଆମାନେ ଦେବୀଙ୍କ କଳସକୁ କାଠଦଣ୍ଡ ଉପରେ ରଖି ତାକୁ ମୁଣ୍ଡରେ ମୁଣ୍ଡାଇ ପାଦରେ ରଣପା ପିନ୍ଧି ସ୍ତ୍ରୀଲୋକଙ୍କର ବେଶ ପିନ୍ଧି ଗାଁ ଗାଁ ବୁଲି ଭିକ୍ଷା ମାଗୁଥିଲେ । ଏବେ ଏମାନେ ବିଶେଷ ଭାବେ ଦେଖାଯାଉନାହାନ୍ତି । ପଣା ସଂକ୍ରାନ୍ତିରେ ଦେବୀଙ୍କର ପ୍ରଧାନ ମେଳା ହୁଏ ।

ପୂର୍ବରୁ ଜଙ୍ଗଲ କଟା ଯାଉଥିଲେ ମଧ୍ୟ ଏବେ ସେଠାରେ ଝାଉଁ ଜଙ୍ଗଲ ଓ କାଜୁ ଜଙ୍ଗଲ ସୃଷ୍ଟି କରାଯାଉଛି । ରାମଚଣ୍ଡୀଙ୍କ ପାଖରେ ବୋହି ଯାଉଥିବା ନଦୀକୁ ରାମଚଣ୍ଡୀ ନଈ କୁହାଯାଏ । ଅଧିକାଂଶ ସମୟରେ ଡଙ୍ଗା ଦୁର୍ଘଟଣା ହେଲେ ମଧ୍ୟ ଆଶ୍ଚର୍ଯ୍ୟଜନକ ଭାବେ ଠାକୁରାଣୀଙ୍କ ଦୟାରୁ ଲୋକେ ଉଦ୍ଧାର ପାଇଛନ୍ତି । ସେହି ନଈରେ ଅଧିକାଂଶ ସମୟରେ ବଉଳା କୁମ୍ଭୀର ଦେଖାଯାନ୍ତି । କଥିତ ଅଛି, ସେହି କୁମ୍ଭୀରମାନଙ୍କ ମୁଣ୍ଡରେ ଦେବୀଙ୍କ ସିନ୍ଦୂର ଲାଗିଥାଏ । ତେଣୁ ଲୋକମାନେ କୁମ୍ଭୀରଙ୍କୁ ନମସ୍କାର କରିବାବେଳେ ସେମାନେ ମଧ୍ୟ ଲୋକଙ୍କର କ୍ଷତି କରିନଥାନ୍ତି । କାଠୁରିଆ ଜଙ୍ଗଲକୁ କାଠ କାଟିବାକୁ ଗଲାବେଳେ ରାମଚଣ୍ଡୀଙ୍କୁ ସୁମରଣା କରି ଯାଇଥାନ୍ତି । କେହି ଅବଜ୍ଞା କରି ଗଲେ ଦୁର୍ଘଟଣାର ସମ୍ମୁଖୀନ ହୋଇଥାନ୍ତି ବୋଲି ବିଶ୍ୱାସ କରାଯାଏ ।

ରାମଚଣ୍ଡୀ ଠାକୁରାଣୀ ସମୁଦ୍ର କୂଳରେ ନ ଥିଲେ ହେଁ ସମୁଦ୍ର ଦେବୀଙ୍କଠାରୁ ବେଶୀଦୂର ନୁହେଁ । ପୂର୍ବରୁ ଏହି ଜଙ୍ଗଲରେ ବାଘ, ଭାଲୁ ହିଂସ୍ର ଜନ୍ତୁ ସବୁ ଥିଲେ । ଶରଣାର୍ଥୀମାନଙ୍କଦ୍ୱାରା ଗଢ଼ି ଉଠିଥିବା ଗାଁଗଣ୍ଡାର ଜନବସତି ଘନ ହୋଇଯିବାଦ୍ୱାରା ଆଉ ହିଂସ୍ରଜନ୍ତୁ ଭୟ ନାହିଁ ।

ପୁରୀରେ ବଡ଼ ଦେଉଳର ଜଗନ୍ନାଥ ଓ ରାମଚଣ୍ଡୀଙ୍କ ପରି କୁଜଙ୍ଗଗଡ଼ରେ ଜଗନ୍ନାଥଙ୍କ ପୂଜା ଓ ରଥଯାତ୍ରା ସହ କୁଜଙ୍ଗ ତହସିଲ ପାଖରେ ବହି ଯାଉଥିବା ନଦୀକୂଳରେ ରାମଚଣ୍ଡୀ ପୂଜା ପାଇଥାନ୍ତି । ପୁରୀର ଜଗନ୍ନାଥଙ୍କ ଦାରୁ ମୂର୍ତ୍ତିକୁ ବିଶର ମହାନ୍ତି ପାଇ କୁଜଙ୍ଗଗଡ଼ରେ ରଖିଥିବା ପ୍ରାୟ ସମସ୍ତଙ୍କୁ ଜଣା । ତେଣୁ ପୁରୀ ପରି ଏଠି ଜଗନ୍ନାଥ ଓ ରାମଚଣ୍ଡୀ ପୂଜା ପାଇବା ସ୍ୱାଭାବିକ କଥା । 'ମୁସଲମାନ ଦାଉରୁ ରକ୍ଷା ପାଇବା ପାଇଁ ଗଡ଼ କୁଜଙ୍ଗର ଷଣ୍ଢରାଜା ଜଗନ୍ନାଥ ଓ ରାମଚଣ୍ଡୀଙ୍କୁ ଅଗମ୍ୟ ସ୍ଥାନମାନଙ୍କରେ ସ୍ଥାପନ କରି ଶହ ଶହ ଏକର ଜମି ଓ ମୂଲ୍ୟବାନ ଅଳଙ୍କାର ଦେବଦେବୀଙ୍କ ପାଇଁ ଦାନ କରିଥିବା ଶୁଣାଯାଏ । ଏବେ ମଧ୍ୟ କୁଜଙ୍ଗର ଜଗନ୍ନାଥଙ୍କ ରଥଟଣା ଓ ରାମଚଣ୍ଡୀଙ୍କୁ ଦର୍ଶନ କରି ଭକ୍ତ ଓ ଦର୍ଶକ ଯୁଗପତ୍ ବିସ୍ମୟାଭିଭୂତ ହୋଇଥାନ୍ତି ।'(୨) ରାମଚଣ୍ଡୀ କେନ୍ଦ୍ରାପଡ଼ା ଓ ଜଗତ୍‌ସିଂହପୁର ଜିଲ୍ଲାରେ ଖ୍ୟାତିଲାଭ କରିଥିବାର ଦେଖାଯାଏ । ପୁରୀ ଜିଲ୍ଲାର ରାମଚଣ୍ଡୀଙ୍କ ପରି ତାହା ମଧ୍ୟ ପ୍ରସିଦ୍ଧି ଲାଭ କରିଛି ।

**ରିଘାଗଡ଼ର ଶ୍ରୀବଳଦେବ ଜୀଉ**

ରିଘାଗଡ଼ କେନ୍ଦ୍ରାପଡ଼ା ଜିଲ୍ଲାର ପୁରୁଣା କନିକା ରାଜ୍ୟର ରାଜଧାନୀ । କେନ୍ଦ୍ରାପଡ଼ା ସହରଠାରୁ ପ୍ରାୟ ୬୦ କି.ମି. ଓ ରାଜନଗରଠାରୁ ପ୍ରାୟ ୧୮ କି.ମି. ଦୂରରେ ବ୍ରାହ୍ମଣୀ ନଦୀକୂଳରେ ଏହା ଅବସ୍ଥିତ । ସେହି ରିଘାଗଡ଼ରେ ପାଞ୍ଚ ଏକର ଜମି ଉପରେ ଦୁଇ ପରସ୍ତ ବେଢ଼ା ସଂଲଗ୍ନ ସପ୍ତଶିଖର ବିଶିଷ୍ଟ ସୁଉଚ୍ଚ ପ୍ରାଚୀନ 'ବଳଦେବ ଜୀଉ ମନ୍ଦିର' ଅବସ୍ଥିତ । ପୂର୍ବ ଉପକୂଳରେ ଶ୍ରୀକ୍ଷେତ୍ର, କୋଣାର୍କ ଓ ତୁଳସୀ କ୍ଷେତ୍ରକୁ ଛାଡ଼ି ଦେଲେ ଏହି ମନ୍ଦିରଟି ଅନ୍ୟ ଦେବ ମନ୍ଦିର ମଧ୍ୟରେ ସର୍ବବୃହତ୍ତମ ଅଟେ । କେନ୍ଦ୍ରାପଡ଼ାରୁ ପଟ୍ଟାମୁଣ୍ଡାଇ ଦେଇ ରାଜନଗର ଓ ସେଠାରୁ ଜରିମୂଳ ଗ୍ରାମ ଦେଇ ଯାଇଥିବା ରାସ୍ତା ବାଟେ ବାଟଶାଳା ନବନିର୍ମିତ ପୋଲ ପାରି ହେବା ପରେ ପ୍ରାୟ ୧୦ କି.ମି. ନଦୀବନ୍ଧ ଅତିକ୍ରମ ପରେ ସେହି ବିଶାଳ ଦେବାନୁଷ୍ଠାନଟି ପଡ଼େ । ରିଘାଗଡ଼ର ଦୁଇପଟରେ ବ୍ରାହ୍ମଣୀ ନଦୀର ଧାର ଦୁଇ ଭାଗରେ ବିଭକ୍ତ ହୋଇ ଯାଇଥିବାରୁ ଏହାର ଦୁଇପଟ ଚିରସ୍ରୋତା ଓ ଗଭୀର । କୁମ୍ଭୀର, ଶାଙ୍କୁଚ ଶିଶୁମାର ଆଦି ବିପଦସଙ୍କୁଳ ଜୀବମାନଙ୍କରେ ତାହା ପରିପୂର୍ଣ୍ଣ ।

ପ୍ରାଚୀନ କନିକା ରାଜବଂଶର ଇତିହାସ ସହିତ ରିଘାଗଡ଼ର ଶ୍ରୀବଳଦେବ ଜୀଉ ମନ୍ଦିର ସମ୍ପର୍କିତ ଇତିହାସ ଓତଃପ୍ରୋତ ଭାବେ ଜଡ଼ିତ, ଯାହାର କି ବର୍ଣ୍ଣନା କରିବାର ଅବକାଶ ଏଠାରେ ନାହିଁ । ୧୭୯୪ ଖ୍ରୀଷ୍ଟାବ୍ଦରେ କନିକା ରାଜା ବଳଭଦ୍ର ଭଂଜ ରିଘାଗଡ଼ସ୍ଥ ରାଜନଅର ସମ୍ମୁଖରେ ବିଶାଳ ବଳଦେବ ଜୀଉ ମନ୍ଦିର ନିର୍ମାଣ କରିଥିଲେ । 'ସାନ ଗେଙ୍ଗୁଟି ନଦୀ ଓ ବ୍ରାହ୍ମଣୀ ନଦୀର ଶାଖା ଦେଇ ସମସ୍ତ ପ୍ରସ୍ତର ରତ୍ନଗିରି ନିକଟସ୍ଥ ପାହାଡ଼ରୁ ଅଣାଯାଇଥିଲା । ଏହି ମନ୍ଦିର ନିର୍ମାଣ ହେବାକୁ ପ୍ରାୟ ଅଢ଼େଇ ବର୍ଷ ସମୟ ଲାଗିଥିଲା ଏବଂ ସେ ସମୟରେ ଅନ୍ତତଃ ସାଢ଼େ ସାତ ଲକ୍ଷ ଟଙ୍କା ବ୍ୟୟ ହୋଇଥିବାର ଅନୁମାନ କରାଯାଏ ।'(୩)

ବଳଭଦ୍ର ଭଂଜ ନିର୍ମାଣ କରିଥିବା ବଡ଼ ଦେଉଳକୁ ଲଗାଇ ତାଙ୍କ ସାନପୁତ୍ର ହରିହର ଭଂଜ ମଝି ମନ୍ଦିର ଓ ଜଗମୋହନ ନିର୍ମାଣ କରିଥିଲେ । ୧୯୦୧ ମସିହାରେ କନିକାର ରାଜା ରାଜେନ୍ଦ୍ର ନାରାୟଣ ଭଂଜଦେବ ଜଗମୋହନକୁ ଲଗାଇ ଚାରି ଶିଖର ବିଶିଷ୍ଟ ଏକ ସୁନ୍ଦର କାରୁକାର୍ଯ୍ୟପୂର୍ଣ୍ଣ ମନ୍ଦିର ମହନ୍ତ ବୈଷ୍ଣବ ଚରଣ ଦାସଙ୍କଦ୍ୱାରା ନିର୍ମାଣ କରାଇଥିଲେ ।

ବର୍ତ୍ତମାନର ରିଘାଗଡ଼ ମନ୍ଦିର ଭଗ୍ନ ରାଜପ୍ରସାଦ ସମ୍ମୁଖରେ ଅବସ୍ଥିତ ଉଭୟ ପୂର୍ବ ଓ ପଶ୍ଚିମ ଦିଗରେ ପ୍ରବେଶ ପଥ ଅଛି । ରିଘାଗଡ଼ ମନ୍ଦିର ସପ୍ତଶିଖର ବିଶିଷ୍ଟ ଶ୍ରୀମନ୍ଦିର ସହିତ ଅନ୍ୟାନ୍ୟ ମନ୍ଦିର ପିଢ଼ ମନ୍ଦିର ଅଛି । ମୁଖ୍ୟ ମନ୍ଦିର ନଅ ପିଢ଼ ବିଶିଷ୍ଟ । ଏହାର ଉଚ୍ଚତା ପ୍ରାୟ ୯୦ ଫୁଟ । ମୁଖ୍ୟ ମନ୍ଦିରର ପ୍ରବେଶ ଦ୍ୱାରରେ ଗଜ-ସିଂହ ବିଦ୍ୟମାନ ଏବଂ ଅପରପକ୍ଷ ଦ୍ୱାରର ଦୁଇପାର୍ଶ୍ୱରେ ଦୁଇଟି ଯୁଦ୍ଧହସ୍ତୀ ବିଦ୍ୟମାନ । ବଡ଼ ମନ୍ଦିରର ତିନି ପାଖରେ ଗଣେଶ, ନୃସିଂହ ଓ ବାମନ ଆଦି ଦିଅଁ ପୂଜା ପାଉଛନ୍ତି । ଏହାଛଡ଼ା ଏକ ପ୍ରାଚୀନ ବରାହ ମୂର୍ତ୍ତି ପରିତ୍ୟକ୍ତ ଅବସ୍ଥାରେ ମନ୍ଦିର ବେଢ଼ାରେ ରହିଛି । ରତ୍ନ ସିଂହାସନ ଉପରେ ଦାରୁରେ ନିର୍ମିତ ତିନି ବିଗ୍ରହ ଶ୍ରୀକ୍ଷେତ୍ର ଶୈଳୀରେ ପୂଜା ପାଉଥିଲେ ହେଁ ଜଗନ୍ନାଥଙ୍କ ମୂର୍ତ୍ତିଠାରୁ ବଳଦେବଙ୍କ ମୂର୍ତ୍ତି ଟିକିଏ ବଡ଼ ।

ରାଜା ହରିହର ଭଂଜ ବଡ଼ପଣ୍ଡାଙ୍କ ପ୍ରଥମ ପୁରୁଷ ଦୀନବନ୍ଧୁ ପଣ୍ଡାଙ୍କୁ ଯାଜପୁରରୁ ଆଣି ନିଷ୍କର ଜମି ଖଞ୍ଜି ଦେଇଥିଲେ । ପଣ୍ଡାମାନଙ୍କୁ

ସେବା କାମରେ ସାହାଯ୍ୟ କରିବା ପାଇଁ ମହାଭୋଇ, ବାରିକ ଓ ମାଳି ଇତ୍ୟାଦି ଅଛନ୍ତି । ଏହି ବ୍ରାହ୍ମଣମାନେ କନିକାରୁ ନଦୀ ପାରି ହୋଇ ଆସି ଏଠାରେ ଛଅମାସ ରହି ଦିଅଁଙ୍କର ପୂଜା କରନ୍ତି । ମନ୍ଦିର ସମ୍ମୁଖରେ ରାଜନଅରର ତିନି ବିଗ୍ରହ ରାଧାକୃଷ୍ଣ ପିତ୍ତଳ ମୂର୍ତ୍ତି, ନୃସିଂହଙ୍କ ପିତ୍ତଳ ମୂର୍ତ୍ତି, ମାର୍ବଲର ଚତୁର୍ଭୁଜ ବିଷ୍ଣୁ ମୂର୍ତ୍ତି ଓ ବହୁ ଦୁଷ୍ପ୍ରାପ୍ୟ ଶାଳଗ୍ରାମ ଓ ତାଳପତ୍ର ପୋଥି ପୂଜା ପାଉଛି ।

ମନ୍ଦିରର ଦିଅଁଙ୍କୁ ଛଅ ଧୂପ ଲାଗି କରାଯାଏ । ସକାଳର ବାଲ୍ୟ ଧୂପରେ ଚାଉଳ ଚୂନାରେ କାକରା, ଖଇ ଏଗାରଟା ଧୂପରେ - ଖେଚୁଡ଼ି, ଡାଲମା, ଭଜା, ବଡ଼ ଧୂପରେ - ଖେଚୁଡ଼ି, ଡାଲି, ତରକାରୀ, ଭଜା, ସନ୍ଧ୍ୟା ଧୂପରେ- ଖଇ, ଦୁଧ, କଦଳୀ ଓ ରାତ୍ରି ଧୂପରେ- ଦହି, ପଖାଳ, ଭଜା, ପୁରୀ, ତରକାରୀ ଏବଂ ବଡ଼ସିଂହାରରେ- ବଡ଼ପିଠା, ଖିରି, ରାବିଡ଼ି ଇତ୍ୟାଦି ନୈବେଦ୍ୟ କରାଯାଏ । ଏଠାରେ ବିଭିନ୍ନ ଯାତ୍ରା ଓ ପର୍ବପର୍ବାଣି ମଧ୍ୟରେ ରଥଯାତ୍ରା, ସ୍ନାନ ପୂର୍ଣ୍ଣିମା ନେତ୍ରୋତ୍ସବ, ଚନ୍ଦନଯାତ୍ରା, ଦୋଳଯାତ୍ରା ଓ ମକର ସଂକ୍ରାନ୍ତି ପ୍ରଭୃତି ପ୍ରଧାନ । ଆଗେ ରଥଯାତ୍ରାକୁ ତିନି ଦିଅଁଙ୍କ ଲାଗି ତିନୋଟି ରଥ ହେଉଥିଲା ଏବଂ ତିନି ବିଗ୍ରହ ରାଜନଅର ନିକଟସ୍ଥ ଆଖଣ୍ଡଳମଣିଙ୍କ ମନ୍ଦିରରୂପୀ ମାଉସୀମା ମନ୍ଦିରକୁ ବିଜେ ହେଉଥିଲେ । ଚନ୍ଦନ ଯାତ୍ରା ବେଳେ ରାଜନଅରର ବିରାଟ ପୁଷ୍କରିଣୀରେ ଚାପ ଖେଳୁଥିଲେ । ଏବେ ତାହା ଆଉ ନାହିଁ । ଏବେ ଏହି ମନ୍ଦିରର ମାଲିକ ଓ ପରିଚାଳକ ହେଉଛନ୍ତି ନିଜେ କନିକା ରାଜା । ୧୯୭୨ ମସିହାରେ ଦିଅଁମାନଙ୍କର ନବକଳେବର ହୋଇଥିଲା । ଆଉ ଦିଅଁମାନଙ୍କର ନବ କଳେବର ଏ ପର୍ଯ୍ୟନ୍ତ ହୋଇପାରିନାହିଁ । ମନ୍ଦିରଟି ୨୦୦ ଶହ ବର୍ଷରୁ ଊର୍ଦ୍ଧ୍ୱ ପୁରୁଣା ହୋଇଥିବାରୁ ବିଭିନ୍ନ ସ୍ଥାନରେ ମରାମତି ଅଭାବରୁ ଭାଙ୍ଗିରୁଜି ଗଲାଣି । ଏହାର ଯତ୍ନ ନକଲେ ଏହି ପ୍ରାଚୀନ ମନ୍ଦିର ଦିନେ କାଳ ଗର୍ଭରେ ଲୀନ ହୋଇଯିବ ଏଥିରେ ସନ୍ଦେହ ନାହିଁ ।

### ମା' ଅଲେଖ ନାହାକାଣୀ

ବଙ୍ଗୋପସାଗରର କୂଳରେ ନରସିଂହପୁର ଗାଁରେ ମା' ଅଲେଖ ନାହାକାଣୀଙ୍କ ବିଜେସ୍ଥଳୀ । ଓଡ଼ିଶାର ପ୍ରାଚୀନ ନୌବାଣିଜ୍ୟ ସହିତ ଏହି ଠାକୁରାଣୀଙ୍କର ସଂପର୍କ ଥିବାର ଅନୁମାନ କରାଯାଏ । ପୂର୍ବେ ଡଙ୍ଗା ବା ନାଆର ମଙ୍ଗ କୋଣରେ ଏହି ଠାକୁରାଣୀଙ୍କୁ ରଖି ପୂଜା କରାଯାଉଥିବାରୁ ଏହି ଠାକୁରାଣୀଙ୍କ ନାମ 'ନାହାକାଣୀ' ବୋଲି କୁହାଯିବାର ସ୍ଥାନୀୟ ଲୋକମାନଙ୍କ ମୁହଁରୁ ଶୁଣାଯାଏ । ରାଜନଗରଠାରୁ ୧୩ କି.ମି. ଦୂରରେ ଏହି ଠାକୁରାଣୀଙ୍କ ମନ୍ଦିର ଅବସ୍ଥିତ । ସମୁଦ୍ରକୂଳବାସୀ ଗ୍ରାମର ଲୋକମାନଙ୍କୁ ସମୁଦ୍ରରୁ ମାଡ଼ି ଆସୁଥିବା ପ୍ରଳୟଙ୍କରୀ ଘୂର୍ଣ୍ଣିବାତ୍ୟା ଓ ଲୁଣାରୁ ଏହି ଠାକୁରାଣୀ ରକ୍ଷା କରିଥାନ୍ତି । **୧୯୭୧ ମସିହା ଓ ୧୯୯୯ ମହାବାତ୍ୟା ବେଳେ ବିପନ୍ନ ଲୋକମାନଙ୍କୁ ଠାକୁରାଣୀ ରକ୍ଷା କରିଥିବାର ସ୍ଥାନୀୟ ଲୋକମାନଙ୍କ ମୁଖରୁ ଶୁଣାଯାଏ ।** ସମୁଦ୍ରରେ ବାରୁଣୀ ସ୍ନାନ ପକାଇବାକୁ ଯାଇ ଏହି ଦେବୀଙ୍କ ମନ୍ଦିରରେ ଲୋକଙ୍କର ଭିଡ଼ ଦେଖାଯାଏ । ବାରୁଣୀ ଅମାବାସ୍ୟା ବେଳକୁ ଠାକୁରାଣୀଙ୍କର ଯାତ୍ରା ହୁଏ । ଠାକୁରାଣୀଙ୍କ ଦକ୍ଷିଣରେ ହୁକ୍‌ଟୋଲା ବତୀଘର (ଫଲସ୍ ପଏଣ୍ଟ ବତୀଘର)ର ଜଙ୍ଗଲ, ଉତ୍ତରରେ ଚମ୍ପାଗଡ଼ ନଗରୀ (ବର୍ତ୍ତମାନ ରାଜନଗର ବ୍ଲକ୍ ଅନ୍ତର୍ଗତ ପେଣ୍ଠ) ରାଜ୍ୟର ଜଙ୍ଗଲ ଥିଲା । ଏବେ ସେହି ଜଙ୍ଗଲ କଟାଯାଇ ସେଠାରେ ଚିଙ୍ଗୁଡ଼ି ଚାଷ କରାଯାଉଛି । ଏହାର ପଶ୍ଚିମରେ ଭୋପାଳ ଇତ୍ୟାଦି ଗ୍ରାମ ଓ ପୂର୍ବରେ ବିସ୍ତୀର୍ଣ୍ଣ ବଙ୍ଗୋପସାଗର । ଠାକୁରାଣୀଙ୍କ ପାଖରେ ପ୍ରତିଦିନ ରନ୍ଧା ଭୋଗ କରାଯାଏ । ଏହି ଠାକୁରାଣୀଙ୍କ ଉପରେ ଏଠାରେ ଗୋଟିଏ ଲୋକକଥା ଶୁଣାଯାଏ । ତାହା ଏଠାରେ ସଂକ୍ଷେପରେ ପ୍ରଦାନ କରାଗଲା । ଚମ୍ପାଗଡ଼ ନଗରୀ ପୁରାଣ ପ୍ରସିଦ୍ଧ ଜମ୍ବୁଦୀପର ରାଜଧାନୀ ଥିଲା । ଥରେ ଏହାର ରାଜା ପାରିଧି କରିବାକୁ ଯାଇ ଜଙ୍ଗଲରେ କୌଣସି କାରଣରୁ ମୃତ୍ୟୁବରଣ କରିବା ପରେ ମନ୍ତ୍ରୀ ରାଣୀଙ୍କ ଉପରେ ପାପ ଦୃଷ୍ଟି ପକାନ୍ତେ ରାଣୀ କିଛି ଉପାୟ ନପାଇ ସମୁଦ୍ରକୁ ଡେଇଁ ପ୍ରାଣ ବିସର୍ଜନ କରନ୍ତି, ସେ ସମୁଦ୍ରକୁ ଡେଇଁବା ପୂର୍ବରୁ ତାଙ୍କର ଅନୁରୋଧରେ ସମୁଦ୍ର ରାଜ୍ୟକୁ ଭସାଇ ନେବା ପାଇଁ ପ୍ରବଳ ବେଗରେ ମାଡ଼ି ଆସେ । ସମୁଦ୍ର ମାଡ଼ି ଆସିବାର ଦେଖି ମା' ଅଲେଖ ନାହାକାଣୀ ଠାକୁରାଣୀ ତାଙ୍କର ପୂଜକକୁ ତାଙ୍କୁ ବୋହି ନେବା ପାଇଁ ଆଦେଶ କରନ୍ତି, ପୂଜକ ଠାକୁରାଣୀଙ୍କୁ ନେବା ସମୟରେ ନିଜର ପ୍ରାଣକୁ ରକ୍ଷା କରିବାକୁ ଯାଇ ଠାକୁରାଣୀଙ୍କୁ ପକାଇ ଦେଇ ଚାଲିଯାଏ । ଠାକୁରାଣୀ ଯେଉଁଠି ପଡ଼ି ରହିଲେ ସମୁଦ୍ର ସେହି ପର୍ଯ୍ୟନ୍ତ ମାଡ଼ି ଆସି ଚମ୍ପାଗଡ଼ ନଗରୀ ରାଜ୍ୟକୁ ଭସାଇ ନିଏ ଓ 'ମା' ଅଲେଖ ନାହାକାଣୀ' ଠାକୁରାଣୀ ସେହିଠାରେ ରହି ପୂଜା ପାଇ ଆସୁଛନ୍ତି । ଏହି ମନ୍ଦିର ଅତି ପ୍ରାଚୀନ ଓ ଓଡ଼ିଶା ପ୍ରାଚୀନ ନୌବାଣିଜ୍ୟର ସ୍ମୃତିକୁ ଧରି ମୂକସାକ୍ଷୀ ରୂପେ ଏହା ଦଣ୍ଡାୟମାନ ହୋଇରହିଛି । ଏହାର ମରାମତି ନ ହେଲେ କେତେବେଳେ ଏହା ସମୁଦ୍ର ଗର୍ଭରେ ଲୀନ ହୋଇଯିବ ତାହା କହିହେବ ନାହିଁ ।

### ମା' ପଞ୍ଚବରାହୀ

ବଙ୍ଗୋପସାଗର କୂଳେ ସାତଭାୟା ଗ୍ରାମରେ 'ପଞ୍ଚବରାହୀ' ଠାକୁରାଣୀଙ୍କର ବିଜେସ୍ଥଳୀ । ଏହା ରାଜନଗରଠାରୁ ପ୍ରାୟ ୨୫ କି.ମି. ଦୂରରେ ଅବସ୍ଥିତ । ମଣିଷ ପରି ଦେବୀମାନଙ୍କର ଦେହରେ ବରାହର ମୁଣ୍ଡ ଅଛି । ଯାଜପୁର ଓ ଆଳିର ବିଷ୍ଣୁଙ୍କର ବରାହ ମୂର୍ତ୍ତି ପରି ଏଠାରେ ପାଞ୍ଚଟି ବରାହୀ ମୂର୍ତ୍ତି ଦେଖାଯାଏ । ବିଷ୍ଣୁଙ୍କର ବରାହ ରୂପକୁ ପୂଜା କରାଯିବା ବେଳେ ପରମ ବୈଷ୍ଣବୀ ବା ନାରାୟଣୀଙ୍କୁ ବରାହୀ ରୂପରେ ଏଠି ପୂଜା କରାଯାଉଛି । ଯାଜପୁରର ବରାହନାଥଙ୍କ ପରି ଏହାକୁ ଭୌମ ଯୁଗୀୟ କୀର୍ତ୍ତି ଭାବରେ ଗ୍ରହଣ କରାଯାଇପାରେ । ଚାରୋଟି ବରାହୀ ମୂର୍ତ୍ତି ବା ଚାରି ବଡ଼ ଭଉଣୀଙ୍କ ପାଖରେ ପିଲାପିଲି ସ୍ଥାନ ପାଇଥିବା ବେଳେ ଶେଷ ବରାହୀ ମୂର୍ତ୍ତି ବା ସାନ ଭଉଣୀ ପାଖରେ ଆଦୌ ପିଲାପିଲି ସ୍ଥାନ ପାଇନାହାନ୍ତି । କଥିତ ଅଛି, ବଡ଼ ଭଉଣୀମାନେ

ତାଙ୍କର ପିଲାପିଲିଙ୍କୁ ଲୁଚାଇ ଦେଇ ସାନ ଭଉଣୀଙ୍କୁ ସେମାନଙ୍କର ପିଲାପିଲିଙ୍କୁ ଖାଇବାକୁ ଦେଲେ ବୋଲି କହିବାରୁ ସାନ ଭଉଣୀ ସେମାନଙ୍କ କଥାରେ ପଡ଼ି ତାର ପିଲାପିଲିଙ୍କୁ ଖାଇ ଦେଲା । ସାନ ଭଉଣୀ ପିଲାମାନଙ୍କୁ ଖାଇ ସାରିବା ପରେ ପରେ ଅନ୍ୟମାନେ ତାଙ୍କର ପିଲାମାନଙ୍କୁ ବାହାର କଲେ । ତେଣୁ ସାନ ଭଉଣୀ ସବୁବେଳେ କାନ୍ଦୁଛି ବୋଲି ଲୋକମୁଖରୁ ଶୁଣାଯାଏ ।

ପଞ୍ଚୁ ବରାହୀଙ୍କୁ ସେଠାକାର ସ୍ଥାନୀୟ ଲୋକେ 'ପଞ୍ଚୁରାଇ' ବୋଲି କହିଥାନ୍ତି । ଲୋକମାନଙ୍କ ମତରେ ଏହି ପାଞ୍ଚମୂର୍ତ୍ତି ସମୁଦ୍ରରୁ ଆସି ପୂଜା ପାଉଛନ୍ତି । ପ୍ରକୃତରେ ସମୁଦ୍ରର ଗତିପଥ ପରିବର୍ତ୍ତନ ହେବାରୁ ଦେବୀମାନଙ୍କର ଆସ୍ଥାନ ପରିବର୍ତ୍ତନ କରିବାକୁ ପଡ଼ିଛି । କଳା ମାର୍ବଲ ପଥରରେ ପ୍ରାଚୀନ କଳାରେ ଏହା ନିର୍ମିତ । 'ଜଣାଯାଏ ୧୮୪୩ ମସିହାରେ ତତ୍କାଳୀନ କନିକାର ରାଜା ବିନାୟକ ଭଂଜଦେଓ ମାଆଙ୍କ ପାଇଁ ଏକ କ୍ଷୁଦ୍ର ମନ୍ଦିର ନିର୍ମାଣ କରିଥିଲେ ।'(୪)

ଏହି ପାଞ୍ଚଭଉଣୀ ସହ 'ନାହାକାଣୀ' ଓ ଜଞ୍ଜାଳିକୁ ମିଶାଇ ଏମାନେ ସାତ ଭଉଣୀ ସମୁଦ୍ର ଗର୍ଭରେ ଥିଲେ । ଏମାନେ ଜଞ୍ଜାଳି ଭଉଣୀର ଜଞ୍ଜାଳ ସହି ନପାରି ସମୁଦ୍ରରୁ ଚାଲି ଆସିବା ପରେ ଏକା ଜଞ୍ଜାଳି ସମୁଦ୍ର ମଧ୍ୟରେ ପୃଥିବୀକୁ ମୁଣ୍ଡାଇ ଧରିଛି । ସେ ଟିକେ ମୁଣ୍ଡ ହଲାଇ ଦେଲେ ପୃଥିବୀ ଓଲଟି ଯିବ ବୋଲି ଏଠିକାର ସ୍ଥାନୀୟ ବାସିନ୍ଦାଙ୍କର ବିଶ୍ୱାସ ଅଛି । ପଞ୍ଚବରାହୀ ମୂର୍ତ୍ତି ଅତି ପ୍ରାଚୀନ କାଳରୁ ସାତଭାୟାରେ ପୂଜା ପାଇ ଆସୁଛି । ଅନୁମାନ କରାଯାଏ ଓଡ଼ିଆ ସାଧବପୁଅମାନେ ବାଣିଜ୍ୟ କରିବାକୁ ଯିବାବେଳେ ଏହି ଠାକୁରାଣୀଙ୍କୁ ପୂଜା କରି ଯାଉଥିଲେ । ସାତଭାୟା ନିକଟରେ ନୌବାଣିଜ୍ୟର କେନ୍ଦ୍ରମାନ ଥିଲା । 'ଦ୍ୱିତୀୟ ଶତାବ୍ଦୀରେ ଟଲେମୀ ଯେଉଁ ମାଡ଼ୈରା ବା ଇଂରେଜ ସାହେବ ବୁଟନ ଯେଉଁ ମାଲକାଣ୍ଡି ବନ୍ଦର ବିଷୟରେ ଟିପ୍‌ପଣୀ ଦେଇଛନ୍ତି ତାହା ସାଂପ୍ରତିକ ରାଜନଗର ବ୍ଲକ୍ ଅନ୍ତର୍ଗତ ସାତଭାୟା ନିକଟସ୍ଥ ମାଇପୁର ଆଦି ଅଞ୍ଚଳ ନୌବାଣିଜ୍ୟର ମୁଖ୍ୟ କେନ୍ଦ୍ରମାନ ଥିଲା ।'(୫) **ଏହି ଠାକୁରାଣୀଙ୍କୁ ଅବମାନନା କରି ପୂଜକ ବ୍ରାହ୍ମଣ ପୋଖରୀ ତୁଠରେ ପଥର ହୋଇ ପଡ଼ିଥିବାର ଲୋକମୁଖରୁ ଶୁଣାଯାଏ । ଏହି ଠାକୁରାଣୀଙ୍କ ଦର୍ଶନ କରିବା ପାଇଁ ଦୂରଦୂରାନ୍ତରରୁ ଦର୍ଶକମାନେ ଆସିଥାନ୍ତି ।**

## ଚନ୍ଦ୍ରମୌଳି ମନ୍ଦିର

ପଟ୍ଟାମୁଣ୍ଡାଇ ଥାନା ଅନ୍ତର୍ଗତ ଚନ୍ଦନ ନଗର ଗାଁରେ 'ଚନ୍ଦ୍ରମୌଳି'ଙ୍କ ମନ୍ଦିର ଅବସ୍ଥିତ । ଏହି ମନ୍ଦିର ଅତି ପୁରାତନ । ପଟ୍ଟାମୁଣ୍ଡାଇଠାରୁ ଏହା ପ୍ରାୟ ୧୨ କି.ମି. ଦୂର । ପୂର୍ବକାଳରେ ଉତିକଣ ପ୍ରଗଣାର ମଉଡ଼ମଣି ରୂପରେ ଚନ୍ଦ୍ରମୌଳିଙ୍କର ଅତ୍ୟନ୍ତ ପ୍ରସିଦ୍ଧ ଥିଲା । ମାଟି ତଳୁ ଏହି ଶିବଲିଙ୍ଗ ଉଦ୍ଧାର କରାଯିବା ସମ୍ବନ୍ଧରେ ଏକ ଲୋକକଥା ସ୍ଥାନୀୟ ବାସିନ୍ଦାଙ୍କ ମୁହଁରୁ ଶୁଣାଯାଏ । ସେହି ଲୋକକଥାଟି ନିମ୍ନରେ ପ୍ରଦାନ କରାଗଲା -

ଚନ୍ଦନନଗର ନିକଟସ୍ଥ ଦଳବାହାଡ଼ ଗ୍ରାମରେ ଜଣେ ଗଉଡ଼ର ଗୋଟିଏ ଦୁଧିଆଳୀ ଗାଇ ଥିଲା । ଗାଈଟି ପ୍ରଚୁର କ୍ଷୀର ଦିଏ । ଗାଈଟି ସନ୍ଧ୍ୟାରେ ଫେରି କ୍ରମାଗତ ତିନି ଦିନ ଧରି କ୍ଷୀର ନ ଦେବାରୁ ଗଉଡ଼ର ମନରେ ସନ୍ଦେହ ସୃଷ୍ଟି ହେଲା । ସେ ଭାବିଲା ତା' ଗାଈଠାରୁ କିଏ ବୋଧେ କ୍ଷୀର ଦୁହିଁ ନେଉଛି । ତେଣୁ ସେ ଗାଈର ପଛରେ ଲୁଚି କରି ଅନୁସରଣ କଲା । ଗାଈ ସନ୍ଧ୍ୟାବେଳକୁ ଚରି ଘରକୁ ଫେରିବା ଆଗରୁ ଗୋଟିଏ ସ୍ଥାନରେ (ଏବେ ମନ୍ଦିର ଥିବା ସ୍ଥାନରେ) ଯାଇ ଠିଆ ହେଲା ଓ ତା'ର ପହ୍ନାରୁ ଆପେ ଆପେ କ୍ଷୀର ବୋହିଗଲା । ଗଉଡ଼ଟି ଏଥିରେ ଉତ୍‌କ୍ଷିପ୍ତ ହୋଇ ସେହି ସ୍ଥାନରେ କ'ଣ ଅଛି ବୋଲି ତାହାର ସାଥୀମାନଙ୍କ ସହିତ ମାଟି ଖୋଳନ୍ତେ ଏକ ପାତାଳି ଫୁଟା ଶିବଲିଙ୍ଗ ପାଇଲେ । ଖବର ପାଇ ଉତିକଣର ରାଜା ବ୍ରଜକିଶୋର ସିଂହ ସେଠାରେ ମନ୍ଦିର ନିର୍ମାଣ କରିଥିଲେ । ମନ୍ଦିରଟି ଅତି ପ୍ରାଚୀନ ଓ ପ୍ରାୟ ୨୦୦ ବର୍ଷରୁ ଉର୍ଦ୍ଧ୍ୱ । ସେଠାରେ ମକର ସଂକ୍ରାନ୍ତି, ଶିବରାତ୍ରି, ରଜସଂକ୍ରାନ୍ତି ପ୍ରଭୃତି ପର୍ବପର୍ବାଣିରେ ଲୋକମାନଙ୍କର ପ୍ରବଳ ଭିଡ଼ ହୁଏ । ରକ୍ଷଣାବେକ୍ଷଣ ଓ ମରାମତି ଅଭାବରୁ ଏହା ଏବେ ଭଙ୍ଗାରୁଜା ଅବସ୍ଥାରେ ପଡ଼ିଛି ।

କେନ୍ଦ୍ରାପଡ଼ା ଜିଲ୍ଲାର ଏହିସବୁ ପ୍ରାଚୀନ ମନ୍ଦିରଗୁଡ଼ିକ ଏକଦା ଖ୍ୟାତି ଅର୍ଜନ କରିଥିଲେ ମଧ୍ୟ ଏବେ ପ୍ରାୟ ପରିତ୍ୟକ୍ତ ଅବସ୍ଥାରେ ପଡ଼ିଛି । ସ୍ଥାନୀୟ ବାସିନ୍ଦା, ଆଖପାଖ ଅଞ୍ଚଳର ବଦାନ୍ୟ ଲୋକମାନେ ଓ ମନ୍ଦିରର କର୍ତ୍ତୃପକ୍ଷଙ୍କ ସହଯୋଗ, ସାହାଯ୍ୟ, ସହାନୁଭୂତି ନେଇ ପ୍ରାଚୀନ ମନ୍ଦିରଗୁଡ଼ିକପ୍ରତି ଦୃଷ୍ଟି ଦେଲେ ଏହାର ରକ୍ଷଣାବେକ୍ଷଣ ସହ ପ୍ରାଚୀନ କୀର୍ତ୍ତିଗୁଡ଼ିକ ମଧ୍ୟ ରକ୍ଷା ପାଇପାରନ୍ତା ।

## ପାଠ୍ୟ ସହାୟକ ସୂଚୀ


୧. ପୂର୍ବ ଉପକୂଳର ରାମଚଣ୍ଡୀ - ଶ୍ରୀ ନିଶାକର ମୁଦୁଲି, ଓଡ଼ିଶାର ଦେବଦେବୀ (ପ୍ରଥମ ସ୍ତବକ) ସଂକଳକ - ଶ୍ରୀ ବ୍ରଜମୋହନ ମହାନ୍ତି, ଓଡ଼ିଶା ବୁକ୍‌ଷ୍ଟୋର ୧୯୮୦, ପୃ.୨୦୨/୨୦୩

୨. ତତ୍ରୈବ, ପୃ.୨୦୪

୩. ରିଘାଗଡ଼ର ଶ୍ରୀ ବଳଦେବ ଜୀଉ - ନିରଞ୍ଜନ ମେକାପ

ପ୍ରଜାତନ୍ତ୍ର ସାପ୍ତାହିକୀ, ୧୫-୨୧ ଜୁନ୍-୨୦୦୩ ଏକଦଶ ବର୍ଷ, ୧୩ ସଂଖ୍ୟା, ପୃ.୧୪

୪. ସାତଭାୟାର ପଞ୍ଚବରାହୀ - ଶତ୍ରୁଘ୍ନ ତରାଇ ରାଜହଂସୀ-୨୦୦୭, ପୃ.୨୦

୫. ଜମ୍ବୁଦ୍ୱୀପର ଐତିହାସିକ ବତୀଘର - ନିରଞ୍ଜନ ମେକାପ, ସାପ୍ତାହିକ ସମୟ, ସପ୍ତମ ବର୍ଷ, ୩୩ତମ ସଂଖ୍ୟା, ୦୧-୦୭ ଫେବୃଆରୀ, ୨୦୦୪, ପୃ.୩୧



ଓଡ଼ିଆ ଅଧ୍ୟାପକ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ମାର୍ଗ, କରାପଲ୍ଲୀ
ପୋ: ନାରାୟଣପୁର, ଗୋପାଳପୁର, ଗଞ୍ଜାମ

# ଭକ୍ତକବି ସାଲବେଗ ଓ ଶ୍ରୀଜଗନ୍ନାଥ

ଡଃ ପ୍ରସନ୍ନ କୁମାର ସ୍ୱାଇଁ



**ସା**ଲବେଗ ଭକ୍ତ କବି । ଓଡ଼ିଆ ଭଜନ ଓ ଜଣାଣ ରଚନା କ୍ଷେତ୍ରରେ ସେ ଓଡ଼ିଶାର ଏକ ଲୋକପ୍ରିୟ ଓ ସୁପରିଚିତ ନାମ । ମଧ୍ୟଯୁଗୀୟ ସାହିତ୍ୟରେ ନାନା ପରୀକ୍ଷାନିରୀକ୍ଷା କାଳରେ ସ୍ରଷ୍ଟାଙ୍କର ଆବିର୍ଭାବ ଓ ଜାତି ଓ ଜନତାଙ୍କ ପାଇଁ ଏକ ଶୁଭ ଲକ୍ଷଣ । ଏକଥା କବିଙ୍କ ଜୀବନୀ ଓ ସାହିତ୍ୟ ଅନୁଧ୍ୟାନ କଲେ ଆମେ ଖୁବ୍ ସହଜରେ ହୃଦୟଙ୍ଗମ କରିଥାଉଁ । ସାଲବେଗ ଥିଲେ ଜାତିରେ ଯବନ । ମାତ୍ର ତାଙ୍କ ସମକାଳରେ ଯବନ ଶାସକମାନେ ହିନ୍ଦୁମାନଙ୍କ ଉପରେ ଯେପରି ଅତ୍ୟାଚାର କରୁଥିଲେ ତାହା ସାଲବେଗ ସହ୍ୟ କରିପାରିନାହାନ୍ତି । ନିଜ ସୃଷ୍ଟି ମଧ୍ୟରେ ନିଜ ଜାତିକୁ ବାରମ୍ବାର ନିନ୍ଦା କରି ହିନ୍ଦୁ ସମାଜ ଓ ଦେବଦେବୀଙ୍କ ସହିତ ସେ ଏକ ଅନାବିଳ ଓ ଆତ୍ମିକ ସଂପର୍କ ସ୍ଥାପନ କରିଛନ୍ତି । ହିନ୍ଦୁ ଦେବଦେବୀଙ୍କ ଉଦ୍ଦେଶ୍ୟରେ ସେ ରଚନା କରିଛନ୍ତି ରାଶି ରାଶି ଭଜନ ଓ ଜଣାଣ । **ସ୍ରଷ୍ଟା ନିଜ ଜୀବଦ୍ଦଶାରେ ଧର୍ମକୁ ନେଇ ହିନ୍ଦୁମାନଙ୍କଦ୍ୱାରା ବାରମ୍ବାର ଲାଞ୍ଛିତ ଓ ଅପମାନିତ ହୋଇଛନ୍ତି । ଏହାସତ୍ତ୍ୱେ ସେ ହିନ୍ଦୁ ଦେବଦେବୀଙ୍କୁ ପ୍ରାର୍ଥନା କରିବାରୁ କ୍ଷଣେ ମାତ୍ର ନିବୃତ୍ତ ହୋଇନାହାନ୍ତି । ବରଂ ତାଙ୍କର ସମଗ୍ର ଜୀବନରେ ସେ ବିଶ୍ୱର ପ୍ରତ୍ୟେକ ଜନତାଙ୍କ ନିମିତ୍ତ ଉତ୍ସର୍ଗ କରିଛନ୍ତି । ଧର୍ମନିରପେକ୍ଷତା ଓ ସହିଷ୍ଣୁତା ପ୍ରଭୃତି ଅଲୌକିକ ଗୁଣର ସେ ହୋଇଛନ୍ତି ମୂର୍ତ୍ତିମନ୍ତ ଓ ସାକାର ବିଗ୍ରହ ।**

ଓଡ଼ିଶାର ଇତିହାସ ଓ କିମ୍ବଦନ୍ତୀ ସହିତ ଭକ୍ତକବି ସାଲବେଗଙ୍କ ସଂପର୍କ ଅତୀବ ନିବିଡ଼ । ସେ ହେଉଛନ୍ତି ଆମ ସାହିତ୍ୟର ଅଦ୍ୱିତୀୟ ଭଜନକାର । ତାଙ୍କ ସମୟ ହେଉଛି ଓଡ଼ିଶା ଇତିହାସର ଏକ ସଂକଟମୟ କାଳ । ଏହି କବିଙ୍କର ଜନ୍ମ ହେଉଛି ଷୋଡ଼ଶ ଶତାବ୍ଦୀର ଶେଷ ଦଶକ । ତାଙ୍କ ଜନ୍ମ ହେଉଛି ଆକସ୍ମିକ, ଅସାମାଜିକ ମିଳନର ଏକ ବାସ୍ତବ ରୂପ । ସାଲବେଗଙ୍କ ପିତାଙ୍କ ନାମ ଲାଲବେଗ । ସେ ୧୫୯୨ ଖ୍ରୀ:ଅ: ବେଳକୁ ଓଡ଼ିଶା ଆସି ଖୋରଧା ରାଜା ରାମଚନ୍ଦ୍ର ଦେବଙ୍କ ବିରୋଧରେ ସେ ଯୁଦ୍ଧ ଘୋଷଣା କରିଥିଲେ । ପରବର୍ତ୍ତୀ କାଳରେ ପୁରୀ ଜିଲ୍ଲାର ଦାଣ୍ଡମୁକୁନ୍ଦପୁର ଦେଇ ଯିବା ଅବକାଶରେ ସେ ସ୍ନାନରତା ଜଣେ ସୁନ୍ଦରୀ ବିଧବା ନାରୀର ସଂସ୍ପର୍ଶରେ ଆସିଥିଲେ । ତାହାକୁ ସେ ଅପହରଣ କରିବା ସହିତ ନିଜର ପତ୍ନୀ ଭାବରେ ଗ୍ରହଣ କରିଥିଲେ । ସେହି ନାରୀର ସଙ୍ଗମୁଖରୁ ଘଟଣାର ବର୍ଷେ ଦୁଇ ବର୍ଷ ମଧ୍ୟରେ ସାଲବେଗ ଜନ୍ମଗ୍ରହଣ କରିଥିବା ସମ୍ଭବ । ୧୬୦୬ ଖ୍ରୀ:ଅ:ରେ ଲାଲବେଗଙ୍କର ମୃତ୍ୟୁ ହୋଇଥିଲା । ସେତେବେଳକୁ ସାଲବେଗଙ୍କୁ ୧୪/୧୫ ବର୍ଷ ବୟସ ହୋଇଥିଲା । ଯବନ କୂଳରେ ଜାତ ହୋଇଥିବାରୁ ସାଲବେଗ କୈଶୋରାବସ୍ଥାରେ ଅଶ୍ୱାଦି ଆରୋହଣ କରିବା ସହିତ ଯୁଦ୍ଧବିଦ୍ୟାରେ ମଧ୍ୟ ପାରଙ୍ଗମ ଥିଲେ । ଏସବୁ କଥା କବି ରାମ ଦାସଙ୍କ 'ଦାଢ଼ୟତା ଭକ୍ତି ରସାମୃତ'ରୁ ଜଣାଯାଏ । ପିତା ଲାଲବେଗ ଯୁଦ୍ଧକୁ ଯିବା ଅବସରରେ ସାଲବେଗ ମଧ୍ୟ ତାଙ୍କ ସହିତ ଯୁଦ୍ଧକୁ ଯାଉଥିଲେ । ଏକଦା ଶତ୍ରୁ ପକ୍ଷର ସମ୍ମୁଖୀନ ହେବା ଫଳରେ ତାଙ୍କ ଶରୀରରେ ଗଭୀର କ୍ଷତ ସୃଷ୍ଟି ହୋଇଥିଲା ।

ସାଲବେଗଙ୍କ ପିତା ଥିଲେ ମୁସଲମାନ ଓ ମାତା ଥିଲେ ହିନ୍ଦୁ ବ୍ରାହ୍ମଣୀ । ମାତା ହିନ୍ଦୁ ଥିବାରୁ ସାଲବେଗଙ୍କର ହିନ୍ଦୁ ଧର୍ମପ୍ରତି ଗଭୀର ଆସ୍ଥା ଓ ବିଶ୍ୱାସ ରହିଥିଲା । ପୁନଶ୍ଚ ଯୁଦ୍ଧ ବିକ୍ଷତ ସାଲବେଗଙ୍କୁ ରୋଗମୁକ୍ତ କରିବାକୁ ଯାଇ ତାଙ୍କର ମାତା ଶ୍ରୀଜଗନ୍ନାଥଙ୍କୁ ଭକ୍ତିରେ ପୂଜା କରିବାକୁ ପରାମର୍ଶ ଦେଇଥିଲେ । ଫଳତଃ ତାଙ୍କର ଦୁରାରୋଗ୍ୟ ବ୍ୟାଧି ଦୂର ହେବା ସହିତ ସେ ଜଗନ୍ନାଥଙ୍କ କୃପାରୁ ଆମ ସାହିତ୍ୟର ଜଣେ ଶ୍ରେଷ୍ଠ ଭଜନାକାର ହେବାର ଯଶ ଲାଭ କରିଥିଲେ ।

ଶୈଶବରୁ ହିଁ ପିତା ଲାଲବେଗ ସାଲବେଗ ଓ ତାଙ୍କର ମାତାଙ୍କୁ ସବୁଦିନ ପାଇଁ ପରିତ୍ୟାଗ କରି ଚାଲି ଯାଇଥିଲେ । ଫଳତଃ ମାତା ସାଲବେଗଙ୍କର ଶିକ୍ଷାର ଭାର ଗ୍ରହଣ କରିଥିଲେ । ଏହି ସୁଯୋଗରେ ସେ ସାଲବେଗଙ୍କୁ ଶ୍ରୀକୃଷ୍ଣଙ୍କଠାରୁ ଶ୍ରୀଜଗନ୍ନାଥଙ୍କ ପର୍ଯ୍ୟନ୍ତ ଦେବଦେବୀ,

ବିଭିନ୍ନ ମଠ ମନ୍ଦିର, ହିନ୍ଦୁ ପୁରାଣ ପ୍ରଭୃତି ଯିବାକୁ ସମାଜ ବାରଣ କରିଥିଲା । ଫଳତଃ ଦୁଃଖ ଓ କ୍ଷୋଭରେ ସାଲବେଗ ନିଜକୁ ଖୁବ୍ ଧିକ୍କାର କରିବା ସହିତ ନିଜକୁ ହୀନ ଭାବରେ ଚିତ୍ରଣ କରିଥିଲେ ।

ଚତୁର୍ଦ୍ଦଶ ଶତାବ୍ଦୀରେ ଭାରତୀୟ ସାହିତ୍ୟର ଭକ୍ତି ସାହିତ୍ୟରେ ସ୍ରୋତ ପ୍ରବାହିତ ହୋଇଥିଲା । ଓଡ଼ିଆ ସାହିତ୍ୟରେ ତାହାର ଅପ୍ରତିହତ ପ୍ରଭାବ ପଡ଼ିଥିଲା । ସାରଳା ଦାସଙ୍କଠାରୁ ଆରମ୍ଭ କରି ଅଷ୍ଟାଦଶ ଶତକର କବିମାନଙ୍କ ପର୍ଯ୍ୟନ୍ତ ସ୍ରଷ୍ଟାମାନେ ଏହି ଧାରାରେ ଆକର୍ଷିତ ହୋଇ ଅସଂଖ୍ୟ ଭଜନ ଓ ଜଣାଣ ରଚନା କରିଥିଲେ । ଭାରତୀୟ ଜନତାଙ୍କ ମଧ୍ୟରେ ଭକ୍ତିଭାବନା ସୃଷ୍ଟି କରିବା ଏହି କାଳର କବିମାନଙ୍କର ଲକ୍ଷ୍ୟ ଥିଲା । ତ୍ୟାଗ ଥିଲା ଏହି ଧାରାର ମୂଳ ମନ୍ତ୍ର । ସର୍ବଭାରତୀୟ ସ୍ତରରେ କବୀର, ନାନକ, ମୀରାବାଈ, ତୁଳସୀ ଦାସ ପ୍ରଭୃତି ସ୍ରଷ୍ଟାଙ୍କ ପରି ଆମ ସାହିତ୍ୟରେ କବି ସାଲବେଗ ଥିଲେ ଏହି ଧାରାର ଜଣେ ଯଶସ୍ୱୀ ସ୍ରଷ୍ଟା ।

ସାଲବେଗ ଜନ୍ମରୁ କବି ନଥିଲେ । ପରିସ୍ଥିତି ଓ ପରିବେଶ ହିଁ ତାଙ୍କୁ କବି ହେବାର ସୁଯୋଗ ଆଣି ଦେଇଥିଲା । ଶତ୍ରୁ ପକ୍ଷର ସୈନ୍ୟଙ୍କଦ୍ୱାରା ଆଘାତପ୍ରାପ୍ତ ହୋଇ ଦୀର୍ଘ ଦିନ ଧରି ଅସୁସ୍ଥ ରହିବା କାରଣରୁ ସାଲବେଗ ମାତାଙ୍କ ଉପଦେଶ ଅନୁସାରେ ବୃନ୍ଦାବନଚନ୍ଦ୍ରଙ୍କର ଶରଣାପନ୍ନ ହୋଇଥିଲେ । ବୃନ୍ଦାବନଚନ୍ଦ୍ରଙ୍କ କୃପାରୁ ଆରୋଗ୍ୟ ଲାଭ କରିବାରୁ ତାଙ୍କ ହୃଦୟରେ ଗଭୀର ପରିବର୍ତ୍ତନ ଆସିଥିଲା । ଜୀବନ ମରଣ ସମସ୍ୟାର ସମ୍ମୁଖୀନ ହୋଇ ଶ୍ରୀକୃଷ୍ଣଙ୍କୁ ପ୍ରାର୍ଥନା କରି ଆରୋଗ୍ୟ ଲାଭ କରିଥିବାରୁ ସେହି ଶ୍ରୀକୃଷ୍ଣ-ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ପରବର୍ତ୍ତୀ କାଳରେ ସେ ବହୁ ଭଜନ ଓ ଜଣାଣ ରଚନା କରିଥିଲେ । ନିଜ ପିତାଙ୍କ ସହିତ ଯୁଦ୍ଧାଭିଯାନ କାଳରେ ସାଲବେଗଙ୍କ ଶରୀରରେ ଗଭୀର କ୍ଷତ ସୃଷ୍ଟି ହୋଇଥିଲା । ଏହା ତାଙ୍କର ବୃନ୍ଦାବନ ଯାତ୍ରା ପୂର୍ବରୁ ହିଁ ଘଟିଥିଲା । ବୃନ୍ଦାବନରେ ଅବସ୍ଥାନ କାଳରେ ଯେତେବେଳେ ରଥଯାତ୍ରା ସମୟ ଆସିଛି, ତାଙ୍କର ସ୍ୱତଃ ଜଗନ୍ନାଥଙ୍କ କଥା ମନେ ପଡ଼ିଛି । ବୃନ୍ଦାବନରୁ ପୁରୀ ପ୍ରାୟ ସାତଶହ ପଚାଶ କୋଶ ବାଟ କିପରି ସେ ଏତେ ଦୀର୍ଘପଥ ତାଙ୍କର ଅସୁସ୍ଥ ଶରୀର ଧରି ଅତିକ୍ରମ କରିବେ ? କିଛି ଭାବିପାରି ନାହାନ୍ତି ସାଲବେଗ । ତେଣେ ପୁରୀରେ ରଥଯାତ୍ରା ଆରମ୍ଭ ହୋଇଯାଇଥାଏ । ପୁରୀରେ ପହଞ୍ଚି ରଥ ଦଉଡ଼ି ଟାଣିବେ ଓ ଜଗନ୍ନାଥଙ୍କୁ ଦର୍ଶନ କରିବେ ବୋଲି ଖୁବ୍ ବ୍ୟସ୍ତ ହୋଇ ତରତରରେ ଚାଲୁଥାନ୍ତି ସାଲବେଗ । ପୁରୀ ଯିବା ବାଟରେ ନାନା ପ୍ରତିବନ୍ଧକ, ଅସଂଖ୍ୟ ନଦୀ ନାଳ, ଅସୁସ୍ଥତା ହେତୁ ଦେହ ନିଃସ୍ତେଜ । ତଥାପି ଦୃଢ଼ ମନରେ ସେ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ପ୍ରାର୍ଥନା କରୁଥାନ୍ତି-

'ଜଗବନ୍ଧୁ ହେ ଗୋସାଇଁ !
ତୁମ୍ଭ ଶ୍ରୀଚରଣ ବିନୁ ଅନ୍ୟ ଗତି ନାହିଁ ।
ସାତଶ ପଞ୍ଚାଶ କୋଶ ଦିଗ ଦିଶୁନାହିଁ,
ମୋହ ଯିବା ଯାଏଁ ନନ୍ଦିଘୋଷେ ଥିବ ରହି ।।'

ଜଗନ୍ନାଥ ଭଗବାନ - ସାଲବେଗ ତାଙ୍କର ପ୍ରକୃତ ଭକ୍ତ । ତେଣୁ ଭକ୍ତ ସାଲବେଗ ପୁରୀରେ ଆସି ପହଞ୍ଚିବା ପର୍ଯ୍ୟନ୍ତ ବଡ଼ଦାଣ୍ଡରେ ଜଗନ୍ନାଥଙ୍କ ରଥ ଅଟକି ରହିଲା । **ଭକ୍ତ ସାଲବେଗଙ୍କର ଜଗନ୍ନାଥଙ୍କ ପ୍ରତି ଆର୍ତ୍ତ ଚିତ୍କାରରେ କୁଆଡ଼େ ଭୀଷଣ ଝଡ଼ବର୍ଷା ବି କେଉଁଆଡ଼େ ଅପସରିଗଲା । ଗଭୀର ଅନ୍ଧକାର ମଧ୍ୟରେ ଚତୁର୍ଦ୍ଦିଗ ଆଲୋକିତ ହୋଇଗଲା ପରି ସେ ଅନୁଭବ କଲେ ।** ସାଲବେଗଙ୍କ ଶରୀରରେ ଶତଗୁଣ ଶକ୍ତି ସଂଚରିତ ହେଲା । ଅପୂର୍ବ ପୁଲକ ଓ ସାହସରେ ସାଲବେଗ ଜଗନ୍ନାଥ ଧାମକୁ ଗମନ କଲେ । ସେ ବଡ଼ଦାଣ୍ଡରେ ଆସି ପହଞ୍ଚିବା ପରେ ହିଁ ପୁନର୍ବାର ରଥ ଚାଲିବାକୁ ଲାଗିଲା ।

ଯବନ ହୋଇଥିଲେ ହେଁ ସାଲବେଗ ଥିଲେ ଜଗନ୍ନାଥଙ୍କର ପରମ ଭକ୍ତ । ସାଲବେଗଙ୍କର ମାତା ପୁରୁଷୋତ୍ତମ ପୀଠର ଅନତି ଦୂର ଜଗନ୍ନାଥ ସଡ଼କ କଡ଼ରେ ଥିବା ଦାଣ୍ଡ ମୁକୁନ୍ଦପୁରର ବାସିନ୍ଦା ଥିଲେ । ପିତା ଲାଲବେଗ କୌଣସି କାରଣରୁ ପତ୍ନୀ ଓ ପୁତ୍ର ସାଲବେଗଙ୍କୁ ସବୁଦିନ ପାଇଁ ଛାଡ଼ି ଚାଲି ଯାଇଥିଲେ । ପରବର୍ତ୍ତୀ କାଳରେ ମାତା ଓ ପୁତ୍ର ଉଭୟ ହିନ୍ଦୁ ଧର୍ମ ଓ ହିନ୍ଦୁ ଦେବଦେବୀଙ୍କ ପ୍ରତି ଆକର୍ଷିତ ହୋଇ ପଡ଼ିଥିଲେ । ଏଥିପାଇଁ ସଂସାରରେ କେତେକ ନୀଚମନା ସ୍ୱାର୍ଥାନ୍ଧ ବ୍ୟକ୍ତି ସାଲବେଗଙ୍କୁ ପ୍ରଥମେ ଘୋର ବିରୋଧ କରିଥିଲେ । ଦେବ ମନ୍ଦିରରେ ପ୍ରବେଶ କାଳରେ ତାଙ୍କୁ ବହୁ ବାଧାବିଘ୍ନର ସମ୍ମୁଖୀନ ହେବାକୁ ପଡୁଥିଲା । ଜଗନ୍ନାଥଙ୍କ ପ୍ରତି ସାଲବେଗଙ୍କ ଭକ୍ତିର ଡୋରୀ ଏତେ ଦୃଢ଼ ଥିଲା ଯେ, ତାହା କୌଣସି ପରିସ୍ଥିତିରେ ଖଣ୍ଡିତ ହୋଇନଥିଲା । **ବରଂ ସାଲବେଗଙ୍କ ମୃତ୍ୟୁ ପରେ ତାଙ୍କୁ ପୁରୀ ବଡ଼ଦାଣ୍ଡର ବଡ଼ଛତା ମଠଠାରେ ସମାଧି ଦିଆଯିବା ସହିତ ତାହା ଉଭୟ ହିନ୍ଦୁ ଓ ମୁସଲମାନଙ୍କ ନିମିତ୍ତ ଏକ ଆଦର୍ଶ ତୀର୍ଥସ୍ଥଳରେ ରୂପାନ୍ତରିତ ହୋଇଯାଇଥିଲା । ଶ୍ରୀକ୍ଷେତ୍ର ଇତିହାସରେ ସାଲବେଗଙ୍କ ପରି ଜଣେ ମୁସଲମାନଙ୍କୁ ବଡ଼ଦାଣ୍ଡରେ ସମାଧି ଦିଆଯିବା ଥିଲା ପ୍ରଥମ ଓ ଅଭୁତପୂର୍ବ ଘଟଣା ।**

ଏକ ସମୟରେ ଉତ୍କଳ ବ୍ୟତୀତ ସମଗ୍ର ଭାରତବର୍ଷ ମୁସଲମାନ ଶାସନାଧୀନ ଥିଲା । ଜଗନ୍ନାଥଙ୍କୁ ଆକ୍ରମଣ କରି ଶ୍ରୀମନ୍ଦିର ଓ ଶ୍ରୀଜଗନ୍ନାଥଙ୍କୁ ଅଧିକାର କରି ନେଲେ ସମଗ୍ର ଉତ୍କଳକୁ ଜୟ କରିହେବ ବୋଲି ମୁସଲମାନ ଶାସକମାନେ ଅନୁଭବ କରୁଥିଲେ । ଏଥିପାଇଁ ମଧ୍ୟଯୁଗରେ ଜଗନ୍ନାଥ ଓ ଶ୍ରୀମନ୍ଦିର ଉପରେ ମୁସଲମାନ ଶାସକମାନେ ବାରମ୍ବାର ଆକ୍ରମଣ କରିଥିଲେ । ଏହି ଆକ୍ରମଣରୁ ଜଗନ୍ନାଥଙ୍କୁ ରକ୍ଷା କରିବା ନିମିତ୍ତ ପୁରୀ ପଣ୍ଡାଙ୍କସମେତ ଗଜପତି ମହାରାଜା ତାଙ୍କୁ ଚିଲିକା ନିକଟସ୍ଥ ବିଭିନ୍ନ ସ୍ଥାନକୁ ନେଇଥିଲେ । ଅହମ୍ମଦ ବେଗ୍‌ଙ୍କ ଶାସନକାଳରେ ଜଗନ୍ନାଥଙ୍କ ଉପରେ ଯବନମାନଙ୍କର ଅତର୍କିତ ଆକ୍ରମଣ ଫଳରେ ଶ୍ରୀମନ୍ଦିରର ପବିତ୍ରତା ଘେନି ସମଗ୍ର ଓଡ଼ିଶାବାସୀ ଭୟଭୀତ ହୋଇ ପଡ଼ିଥିଲେ । ଶ୍ରୀମନ୍ଦିର ତ୍ୟାଗ କରି ଜଗନ୍ନାଥ ଅନ୍ୟତ୍ର ଯିବେ ଓ କେଉଁଠି ଆତ୍ମଗୋପନ କରିବେ ବୋଲି ଭକ୍ତ ସାଲବେଗ ସହ୍ୟ କରିପାରୁନଥିଲେ । ତେଣୁ ଭକ୍ତି ଓ ଦୁଃଖରେ ତାଙ୍କ ହୃଦୟରୁ ପ୍ରକାଶ ପାଉଥିଲା -

'କେଣେ ଘେନିଯାଉଛ ଜଗନ୍ନାଥଙ୍କୁ
ଆମ୍ଭେ ଦର୍ଶନ କରିବୁ କାହାକୁ ?'

ସାଲବେଗ ଥିଲେ ମୁଖ୍ୟତଃ କବି । ପ୍ରାଚୀନ ଭଜନ ଓ ଜଣାଣ ରଚନା କ୍ଷେତ୍ରରେ ଓଡ଼ିଆ ସାହିତ୍ୟରେ ସେ ଏକ ଗୁରୁତ୍ୱପୂର୍ଣ୍ଣ ଆସନର ଅଧିକାରୀ ଥିଲେ । ଜାତିରେ ଯବନ ହୋଇଥିଲେ ହେଁ ଓଡ଼ିଆ କାବ୍ୟ କବିତାର ବିକାଶ ଦିଗରେ ତାଙ୍କର ଭୂମିକା ଥିଲା ଅତୀବ ଗୁରୁତ୍ୱପୂର୍ଣ୍ଣ । ଏଥିପାଇଁ ସେ ଉଭୟ ଜଗନ୍ନାଥ ଓ କୃଷ୍ଣଙ୍କ କୃପା ଲାଭ କରିଥିଲେ । ସାଲବେଗଙ୍କ ମାତା ହିନ୍ଦୁ ଥିବାରୁ ସେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତି ପ୍ରତି ଆକର୍ଷିତ ହୋଇପଡ଼ିଥିଲେ । ପିତା ମୁସଲମାନ ହୋଇଥିବାରୁ ସେହି ସୁଯୋଗରେ ଶୈଶବରୁ ସାଲବେଗ ଉର୍ଦ୍ଦୁ ଓ ପାର୍ଶି ଭାଷା ଅଧ୍ୟୟନ କରିଥିଲେ । ଓଡ଼ିଆ ସମେତ ବଙ୍ଗଳା, ବ୍ରଜବୋଲୀ ଭାଷାରେ ତାଙ୍କର ଅସାଧାରଣ ଦକ୍ଷତା ରହିଥିଲା । ରକ୍ଷଣଶୀଳ ହିନ୍ଦୁ ସମାଜର ତାଙ୍କପ୍ରତି ରହିଥିବା ବିରୋଧ ମନୋଭାବକୁ ସେ ତାଙ୍କ ଜୀବନର ଏକ ଆହ୍ୱାନ ଭାବରେ ଗ୍ରହଣ କରିଥିଲେ । କୃଷ୍ଣ ଓ ଜଗନ୍ନାଥଙ୍କ କୃପାରୁ ଦୁରାରୋଗ ବ୍ୟାଧିରୁ ମୁକ୍ତିଲାଭ କରିଥିବାରୁ ସାଲବେଗ ଇସ୍‌ଲାମ ସଂସ୍କୃତିକୁ ସଂପୂର୍ଣ୍ଣ ରୂପେ ଭୁଲିଯାଇ କୃଷ୍ଣ ଓ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ପରବର୍ତ୍ତୀ କାଳରେ ଅସଂଖ୍ୟ ଭଜନ ଓ ଜଣାଣ ରଚନା କରିଥିଲେ । ସ୍ରଷ୍ଟାଙ୍କର ରଚିତ ଭଜନ ଓ ଜଣାଣକୁ ମୁଖ୍ୟତଃ- (କ) ରାଧାକୃଷ୍ଣ ଲୀଳାଭିତ୍ତିକ ପଦାବଳୀ, (ଖ) ଶ୍ରୀଜଗନ୍ନାଥ ଭଜନ ଓ ଜଣାଣ, (ଗ) ଶିବ ଭଜନ, (ଘ) ଦେବୀ ଭଜନ, (ଙ) ରାମ ଭଜନ, (ଚ) ଭକ୍ତି ଭାବନା ସମ୍ବଳିତ ପଦାବଳୀ, (ଛ) ବ୍ରଜବୋଲୀ ପଦାବଳୀ, (ଜ) କଳି ଭାରତ ଭାବରେ ବିଭକ୍ତ କରାଯାଇଥାଏ । ରାଧାକୃଷ୍ଣ ଲୀଳାଭିତ୍ତିକ କବିଙ୍କର ଭଜନ ମଧ୍ୟରେ ପ୍ରଧାନ ହେଉଛି 'ଅତି ଯତନରେ ବଂଶୀ ଗଢ଼ାଇଲି', 'ଆହେ କୃଷ୍ଣ ମୁରଲୀଧର', 'କଳାକାହ୍ନୁ ନାମକୁ ବହି', 'କାହିଁ ଗଲେ ମୁରଲୀ ଫୁଙ୍କା', 'କାହ୍ନୁ ହେ, 'ବଂଶୀ କେ ଦେଲା ତୋତେ', 'ତରୁ ତଳେ କେ ବଂଶୀ ବଜାଇଲା', 'ଶ୍ରୀକୃଷ୍ଣ ବଂଶୀ ଧ୍ୱନି ଶୁଣି', 'ଦୂତୀ ଗୋ, ବଂଶୀ କାହ୍ନୁଁ ଆଣିଲେ' ଇତ୍ୟାଦି । ବଂଶୀକୁ ନେଇ କବିଙ୍କର ରଚନା ହେଉଛି 'ବୃନ୍ଦାବନେ କେ ବଂଶୀ ବଜାଇଲା', 'ବଂଶୀ କଲା ପ୍ରମାଦ ଗୋ', 'ଶ୍ରୀକୃଷ୍ଣଙ୍କ ବଂଶୀ ଧ୍ୱନି ଶୁଣି', 'ତରୁ ତଳେ କେ ବଂଶୀ ବଜାଇଲା', 'କାଳିଆ କାହ୍ନୁ ମୋହନ ବେଣୁ' ପ୍ରଭୃତି । ଜଗନ୍ନାଥଙ୍କୁ ନେଇ ସାଲବେଗଙ୍କ ରଚିତ ଭଜନ ମଧ୍ୟରେ ମୁଖ୍ୟ ହେଉଛି- 'ଆହେ ନୀଳ ଶଇଳ', 'ଜଗବନ୍ଧୁ ହେ ଗୋସାଇଁ', 'ଜଗନ୍ନାଥ ହେ କିଛି ମାଗୁନାହିଁ ତୋତେ', 'ଚାଲ ସଖୀ ଆମ୍ଭେ ଦର୍ଶନ କରିବା ନୀଳଗିରି କାଳିଆକୁ', 'ଆହେ ନୀଳଗିରି', 'ବାଛି କେ ନାମ ଦେଲା ତୁମରି', 'ଏକା ତୋ ଭକତ ଜୀବନ', 'ବାଛି କେ ନାମ ଦେଲା ଦଇତାରି, ଦୟାନିଧି' ଇତ୍ୟାଦି ।

'କଳି ଭାରତ' ଭକ୍ତକବି ସାଲବେଗଙ୍କ ଜଗନ୍ନାଥଙ୍କ ଭବିଷ୍ୟ ସଂପର୍କିତ ଏକ କ୍ଷୁଦ୍ର ମାଳିକା । ଆମ ସାହିତ୍ୟରେ ପୁରାଣ ପଞ୍ଚସଖା ଯୁଗରେ ମାଳିକା ରଚନାର ଯେଉଁ ପରମ୍ପରା ଆରମ୍ଭ ହୋଇଥିଲା 'କଳି ଭାରତ' ହେଉଛି ସେହି ଧାରାରେ ରଚିତ ଏକ ପ୍ରସିଦ୍ଧ ରଚନା । ଗ୍ରନ୍ଥଟିରେ ଜଗନ୍ନାଥଙ୍କ ଉପରେ ଯବନ ଆକ୍ରମଣ, ତାଙ୍କର ଉତ୍‌ଥାନ ପତନର କାହାଣୀ ବର୍ଣ୍ଣିତ ।

କବି ନିଜ ଜୀବନର ଶେଷକାଳ ଶ୍ରୀକ୍ଷେତ୍ରରେ ଅତିବାହିତ କରିଥିଲେ ମଧ୍ୟ ଶ୍ରୀଜଗନ୍ନାଥଙ୍କ ଦୟା ଓ କରୁଣାରୁ ବଂଚିତ ହୋଇଥିଲେ । ଏହା ସତ୍ତ୍ୱେ ସଂସାରୀ ମଣିଷ ପରି ଜଗନ୍ନାଥଙ୍କୁ ତାଙ୍କ ପ୍ରତି ସମ୍ବେଦନ ହୋଇ କିଛି ବରଦାନ ନିମିତ୍ତ ଗୁହାରି କରୁନଥିଲେ । ଜଗନ୍ନାଥଙ୍କ ଭଜନ ବ୍ୟତୀତ ତାଙ୍କ କର୍ଣ୍ଣ ଅନ୍ୟ କିଛି ଶୁଣିବାକୁ ଆଗ୍ରହ ପ୍ରକାଶ କରୁନଥିଲା । ତାଙ୍କ ମୁଖରୁ ସର୍ବଦା ଜଗନ୍ନାଥଙ୍କ ଭଜନ ହିଁ ନିର୍ଗତ ହେଉଥିଲା । ତେଣୁ ସେ ତାଙ୍କର ଶେଷ ଜୀବନ ପୁରୀରେ ବିତାଇବା ପାଇଁ ଜଗନ୍ନାଥଙ୍କଠାରେ ଗୁହାରି କରିଛନ୍ତି ଓ ଶରଧା ବାଲିରୁ ମାତ୍ର ହାତେ ପାଇବା ପାଇଁ ପ୍ରାର୍ଥନା କରିଛନ୍ତି ।

'ଜଗନ୍ନାଥ ହେ, କିଛି ମାଗୁ ନାହିଁ ମୁଁ ତୋତେ
ଧନ ମାଗୁନାହିଁ, ଜନ ମାଗୁନାହିଁ,
ମାଗୁଛି ଶରଧା ବାଲିରୁ ହାତେ ।'

ସାଲବେଗ ଥିଲେ ଜଗନ୍ନାଥଙ୍କର ଅଦ୍ୱିତୀୟ ଓ ପ୍ରିୟ ଭକ୍ତ । ଜଗନ୍ନାଥଙ୍କୁ ସେ ଖୁବ୍ ଭକ୍ତି କରୁଥିଲେ ଓ ଭଲ ପାଉଥିଲେ । ବିପଦରେ ପଡ଼ି ଆର୍ତ୍ତ କଣ୍ଠରେ ସେ ଜଗନ୍ନାଥଙ୍କୁ ପ୍ରାର୍ଥନା କରୁଥିଲେ । ଏହି ଉଦ୍ଦେଶ୍ୟରେ ସେ ରଚନା କରିଥିଲେ ଅସଂଖ୍ୟ ଭଜନ ଓ ଜଣାଣ । ଏସବୁ ଜଣାଣ ଓ ଭଜନ ବ୍ୟତୀତ କବିଙ୍କ ରଚିତ 'ଶିବ ଜଣାଣ', 'ଦେବୀ ଭଜନ' ସହିତ କିଛି ବଙ୍ଗଳା ଭଜନ ମଧ୍ୟ ଆମର ଦୃଷ୍ଟି ଗୋଚର ହୁଏ । ସ୍ରଷ୍ଟାଙ୍କର ବଙ୍ଗଳା ଭଜନ ମଧ୍ୟରେ 'ନବଘନ କାଳିଆ', 'ଜୟ ଜୟ ରାଧେ ଗୋପାଳ', 'ନାଗରୀ ନାଗରୀ ନାଗରୀ', 'ମୁରଲୀ ତୋ ନିଲ ପ୍ରାନ୍ ହରିୟାରେ' ପ୍ରଧାନ ହୋଇଥିଲାବେଳେ ବ୍ରଜବୋଲି ଭାଷାରେ 'ଭଲା ସେ ନବଘନ କାଳିଆ', 'ବାୟେ ସଖୀଗଣ ବିବିଧ ବାଜଣ' ପ୍ରଭୃତି ପ୍ରଧାନ ଥିଲା ।

'କଳି ଭାରତ' ଭକ୍ତକବି ସାଲବେଗଙ୍କ ଜଗନ୍ନାଥଙ୍କ ଭବିଷ୍ୟ ସଂପର୍କିତ ଏକ କ୍ଷୁଦ୍ର ମାଳିକା । ଆମ ସାହିତ୍ୟରେ ପୁରାଣ ପଞ୍ଚସଖା ଯୁଗରେ ମାଳିକା ରଚନାର ଯେଉଁ ପରମ୍ପରା ଆରମ୍ଭ ହୋଇଥିଲା 'କଳି ଭାରତ' ହେଉଛି ସେହି ଧାରାରେ ରଚିତ ଏକ ପ୍ରସିଦ୍ଧ ରଚନା । ଗ୍ରନ୍ଥଟିରେ ଜଗନ୍ନାଥଙ୍କ ଉପରେ ଯବନ ଆକ୍ରମଣ, ତାଙ୍କର ଉତ୍‌ଥାନ ପତନର କାହାଣୀ ବର୍ଣ୍ଣିତ । ରାମଚନ୍ଦ୍ର ଦେବଙ୍କ ଶାସନକାଳରେ ଉତ୍କଳର ଚତୁର୍ଦ୍ଦିଗରେ ମୋଗଲମାନଙ୍କର ଅତ୍ୟାଚାର ଭୀଷଣାକାର ଧାରଣ କରିଥିଲା । ଉତ୍କଳର ଆତ୍ମାପୁରୁଷ ଶ୍ରୀଜଗନ୍ନାଥଙ୍କୁ କବଳିତ କରି ଦେଲେ

ସମଗ୍ର ଓଡ଼ିଆ ଜାତି ପରାଧୀନ ହୋଇଯିବ ବୋଲି ମୋଗଲମାନେ ବିଶ୍ୱାସ କରୁଥିଲେ । ଏହି ହେତୁ ଅତ୍ୟାଚାରୀ ଶାସକମାନେ ଜଗନ୍ନାଥଙ୍କ ଉପରେ ବାରମ୍ବାର ଆକ୍ରମଣ କରିଥିଲେ । ଫଳତଃ ଜଗନ୍ନାଥଙ୍କ ବିଗ୍ରହକୁ ବାରମ୍ବାର ବିଭିନ୍ନ ସ୍ଥାନରେ ଲୁଚାଇ ରଖିବାକୁ ପଡ଼ିଥିଲା ଓ ପ୍ରସଙ୍ଗ 'କଳି ଭାରତ'ରେ ସ୍ରଷ୍ଟା ନିମ୍ନ ଭାବରେ ବ୍ୟକ୍ତ କରିଛନ୍ତି ।

'ଦଶ ଅଙ୍କେଣ ନୃପନାଥ । ଘେନି ଆସିବେ ଜଗନ୍ନାଥ ॥
ଏଗାର ଅଙ୍କେ ଏବେ ଜାଣ । ପୁଣି ଯେ ଘେନି ଯିବେ ରାମ ॥
ପ୍ରଭୁଙ୍କୁ ଘେନି କରି ଯିବ । ନିଶ୍ଚଳ ଭାବେ ସେ ରହିବ ॥
ଏଗାର ଅଙ୍କଠାରେ ଜାଣ । ଉତ୍ତରେ ତର୍କର ଗମନ ॥'
(କଳି ଭାରତ)

ଜଣାଣ ମଧ୍ୟରେ କବିଙ୍କର ଅନ୍ତଃରୂପ ପ୍ରତିଫଳିତ ହୋଇଅଛି । ସାଲବେଗଙ୍କ ରଚିତ ଜଣାଣ ମଧ୍ୟରେ ଆମେ ତାହା ହିଁ ଲକ୍ଷ୍ୟ କରୁଁ । ସ୍ରଷ୍ଟାଙ୍କ ଜୀବନର ଦୁଃଖ ଓ ଦାରିଦ୍ର୍ୟ ତାଙ୍କ ଭଜନ ଓ ଜଣାଣ ମଧ୍ୟରେ ଯେପରି ଫୁଟି ଉଠିଛି, ତାହାର ତୁଳନା ନାହିଁ । କବି ଜୀବନରେ ଅଭାବ ଅନଟନ ମଧ୍ୟରେ ତାଙ୍କ ବ୍ୟକ୍ତିତ୍ୱର ଏହି ଦିଗଟି ଉଜ୍ଜ୍ୱଳ ହୋଇଉଠିଛି । ସ୍ରଷ୍ଟାଙ୍କ ରଚିତ ଏହିପରି କବିତା ହେଉଛି 'ଆହେ ନୀଳଗିରି', 'ଆହେ ନୀଳ ଶଇଳ', 'କଳାକାହ୍ନୁ ନାମକୁ ବହି', 'କହ ଗୋ କି ବୁଦ୍ଧି କରିବି', 'କାଳିଆ ଧନ, ବାରେ ନଦେଲୁ ଦରଶନ', 'କାଳିଆ ଧନ, ତୋଲାଗି ଯାଉ ଏ ଜୀବନ' ପ୍ରଭୃତି ।

> ଦୀର୍ଘ ଚାରିଶହ ବର୍ଷ ପୂର୍ବରୁ ତାଙ୍କ ଭଜନ ଓ ଜଣାଣ ରଚିତ ହୋଇଥିଲେ ହେଁ ସଂପ୍ରତି ଓଡ଼ିଆ ଲୋକ ଜୀବନକୁ ତାହା ଗଭୀର ଭାବରେ ସ୍ପର୍ଶ କରିଛି ।

ଜାତିରେ ଯବନ ହୋଇଥିଲେ ମଧ୍ୟ ଆମ ସମାଜରେ ସାଂପ୍ରଦାୟିକ ସଦ୍‌ଭାବନା ପ୍ରତିଷ୍ଠା କରିବା ପାଇଁ ସେ ଉଦ୍ୟମ କରିଛନ୍ତି । ଜଗନ୍ନାଥଙ୍କ ବାସି ମହାପ୍ରସାଦରୁ ପ୍ରସ୍ତୁତ ଟଙ୍କ ତୋରାଣି ପିଇ ସେ ଆତ୍ମତୃପ୍ତି ପାଇଛନ୍ତି । ତେଣୁ ସେ ଉଲ୍ଲେଖ କରିଛନ୍ତି -

'ବଡ଼ ଦାଣ୍ଡ ଦେଖି ହେଲି ତୋଷ,
ରେଣୁ ମାତ୍ର ତେଣୁ କଲି ଗ୍ରାସ,
କ୍ଷୀରି ଖେଚଡ଼ିରେ ମନ ନ ବୋଧଇ ଟଙ୍କ ତୋରାଣିରେ ମନତୋଷ ।'

ମହାନୁଭବତା ସହିତ ମାନବିକ ମୂଲ୍ୟବୋଧ ତାଙ୍କର 'ଆହେ ନୀଳଗିରି' କବିତା ମଧ୍ୟରେ ପ୍ରକାଶ ପାଇଛି ।

ସାଲବେଗ ଜଗନ୍ନାଥ ଓ କୃଷ୍ଣଙ୍କ ମଧ୍ୟରେ କିଛି ପ୍ରଭେଦ ଦେଖି ନାହାନ୍ତି । ତାଙ୍କ ଭଜନ ଓ ଜଣାଣ ମଧ୍ୟରେ ସେ ନିଜକୁ ସେହି ଜଗନ୍ନାଥଙ୍କ ପାଦପଦ୍ମରେ ସମର୍ପଣ କରି ତାଙ୍କରି ଆଶୀର୍ବାଦ କାମନା କରିଛନ୍ତି ।

ଯବନ ଅତ୍ୟାଚାରୀ କାଳରେ ଉତ୍କଳର ସଂଗୀତ କବି ଥିଲେ ସାଲବେଗ । ଓଡ଼ିଶୀ ସଂଗୀତ ପରମ୍ପରାରେ ତାଙ୍କ ଭଜନର ଭୂମିକା ଥିଲା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସେ ତାଙ୍କର ବହୁ ଭଜନ ଓ ଜଣାଣକୁ ଓଡ଼ିଶୀ ଢାଞ୍ଚାରେ ରଚନା କରି ଉତ୍କଳର ସଂଗୀତ ପରମ୍ପରାକୁ ସମୃଦ୍ଧ କରିଥିଲେ । ପ୍ରାଚୀନ ଉତ୍କଳର ଦେବ ମନ୍ଦିରସବୁ ସେହି ପରମ୍ପରାର ପ୍ରତିବିମ୍ବ ବହନ କରିଥିଲା । ସ୍ରଷ୍ଟାଙ୍କର ଭଜନ ଓ ଜଣାଣ ଶାସ୍ତ୍ରୀୟ ପଦ୍ଧତି ଉପରେ ପର୍ଯ୍ୟବସିତ ଥିବାରୁ ସେ ସବୁ ବିଭିନ୍ନ ସ୍ୱର ଓ ରାଗଯୁକ୍ତ ହୋଇଥିଲା । ଅତୀତରେ ଏ ସଂପର୍କରେ ବିଶେଷ ଚର୍ଚ୍ଚା ହେଉନଥିଲା । ସଂପ୍ରତି ସ୍ରଷ୍ଟାଙ୍କର ଭଜନ ଓ ଜଣାଣସବୁ ଉତ୍କଳୀୟ ଶୈଳୀ ଓ ଓଡ଼ିଶୀ ରାଗ ବହନ କରି ସଭାସମିତିଠାରୁ ଆରମ୍ଭ କରି ବିଭିନ୍ନ ସାଂସ୍କୃତିକ ଉତ୍ସବମାନଙ୍କରେ ପରିବେଷିତ ହେଉଛି । ଏହି ସଂଗୀତ ଉତ୍କଳରେ ନିଜସ୍ୱ ଓଡ଼ିଶୀ ଧାରା ସୃଷ୍ଟିରେ ମହତ୍ତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି ।

ମଧ୍ୟଯୁଗୀୟ ଓଡ଼ିଆ ଭଜନ ଓ ଜଣାଣ ରଚନା କ୍ଷେତ୍ରରେ କବି ସାଲବେଗଙ୍କ ସ୍ଥାନ ସ୍ୱତନ୍ତ୍ର । ମାତ୍ର ତାଙ୍କ ଜନ୍ମ ଓ ଜୀବନୀ ଏବେବି ଅନ୍ଧକାରାଚ୍ଛନ୍ନ ଓ ରହସ୍ୟାବୃତ୍ତ । ତାଙ୍କ ଜନ୍ମ ସମ୍ପର୍କରେ ଓଡ଼ିଶାର ଇତିହାସ ସଂପୂର୍ଣ୍ଣ ନୀରବ । ବିଶିଷ୍ଟ କବି ରାମ ଦାସ ତାଙ୍କର 'ଦାର୍ଢ୍ୟତା ଭକ୍ତି ରସାମୃତ' ଗ୍ରନ୍ଥର ଦ୍ୱିତୀୟ ଭାଗରେ 'ଲାଲବେଗ ଓ ସାଲବେଗ ସମ୍ବାଦ' ଶୀର୍ଷକରେ କବି ସାଲବେଗଙ୍କ ସଂପର୍କରେ କିଛି ତଥ୍ୟ ପ୍ରଦାନ କରିଛନ୍ତି । ଏହା ଇତିହାସର ଭିତ୍ତି ଉପରେ ପର୍ଯ୍ୟବସିତ ନହେଲେ ମଧ୍ୟ ଆମ ସାହିତ୍ୟରେ ସାଲବେଗଙ୍କ ସମୟ ଓ ସ୍ଥାନ ନିରୂପଣ କରିବାରେ ତାହା ଏକ ମୁଖ୍ୟ ଆୟୁଧ ହୋଇଛି । ପରବର୍ତ୍ତୀ କାଳରେ ସାଲବେଗଙ୍କ ସଂପର୍କରେ ଅଧିକ ଜଣାଇବା ନିମିତ୍ତ ଆମ ସାହିତ୍ୟର ଯେଉଁ ସୁଧୀ ଆଲୋଚକ ଓ ଗବେଷକମାନେ ପଥିକୃତ ଉଦ୍ୟମ କରିଛନ୍ତି, ସେମାନଙ୍କ ମଧ୍ୟରେ ପ୍ରମୁଖ ହେଉଛନ୍ତି ଡଃ ବଂଶୀଧର ମହାନ୍ତି, ପଣ୍ଡିତ ନୀଳମଣି ମିଶ୍ର, ଡଃ ଅମୂଲ୍ୟକୃଷ୍ଣ ମିଶ୍ର, ଡଃ ନିରଞ୍ଜନ ମହାନ୍ତି ଓ ଡଃ ପ୍ରସନ୍ନ କୁମାର ସ୍ୱାଇଁ । ଡଃ ଅମୂଲ୍ୟକୃଷ୍ଣ ମିଶ୍ର ସାଲବେଗଙ୍କ ସାହିତ୍ୟ କୃତିକୁ ନେଇ ଯେଉଁ ଗବେଷଣାତ୍ମକ ସନ୍ଦର୍ଭ ରଚନା କରିଛନ୍ତି ତାହା ହେଉଛି - 'ଜାତୀୟ ସଂହତିର ପ୍ରତୀକ ଭକ୍ତ କବି ସାଲବେଗ : ଏକ ଅନ୍ତରଙ୍ଗ ପର୍ଯ୍ୟାଲୋଚନା' (୧୯୯୫) । ଏସବୁ ସତ୍ତ୍ୱେ ସାଲବେଗ ଓ ଶ୍ରୀଜଗନ୍ନାଥଙ୍କ ସଂପର୍କରେ ଅଧିକ ଗବେଷଣାର ଆବଶ୍ୟକତା ରହିଛି ।

ସାଲବେଗ ତାଙ୍କ ରଚନା ମଧ୍ୟରେ ମଣିଷ ଜାତି ଭିତରେ ଥିବା ଅନ୍ଧକାରକୁ ଦୂର କରି ସେମାନଙ୍କୁ ଆଲୋକର ପଥ ଦେଖାଇଛନ୍ତି । ମଣିଷ ଭିତରେ ଥିବା ଜାତିପ୍ରଥାର ଉତ୍ତୁଙ୍ଗ ପ୍ରାଚୀରକୁ ସେ ଭାଙ୍ଗି ଦେଇଛନ୍ତି । ସେଥିପାଇଁ ଦୀର୍ଘ ଚାରିଶହ ବର୍ଷ ପୂର୍ବରୁ ତାଙ୍କ ଭଜନ ଓ ଜଣାଣ ରଚିତ ହୋଇଥିଲେ ହେଁ ସଂପ୍ରତି ଓଡ଼ିଆ ଲୋକ ଜୀବନକୁ ତାହା ଗଭୀର ଭାବରେ ସ୍ପର୍ଶ କରିଛି । ଫଳତଃ ତାଙ୍କ ରଚନାବଳୀ ହୋଇଛି ଏ ଜାତି ପାଇଁ ଆଶାର ଆଲୋକବର୍ତ୍ତିକା ।

ପ୍ରାଧ୍ୟାପକ
ସ୍ନାତକୋତ୍ତର ଓଡ଼ିଆ ବିଭାଗ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ବ୍ରହ୍ମପୁର-୭୬୦୦୦୭

# ଉତ୍କଳୀୟ ସଂସ୍କୃତିରେ ଉପବାସ, ବ୍ରତ ଓ ଓଷା

ଡକ୍ଟର ସୋମା ଚାନ୍ଦ

**ଉ**ତ୍କଳୀୟ ସଂସ୍କୃତିରେ ଉପବାସ, ବ୍ରତ ତଥା ଓଷାର ରହିଛି ଅନନ୍ୟ ଭୂମିକା । ଏସବୁର ଇତିହାସ ଅତୀବ ପ୍ରାଚୀନ ଓ ପରିସର ଅତ୍ୟନ୍ତ ବ୍ୟାପକ । ବିସ୍ତୃତି କାହିଁ କେତେ ଦୂର ! ପ୍ରାଚୀନ ସଭ୍ୟତାର ପୃଷ୍ଠା ଉନ୍ମୋଚନ କଲେ ଦେଖିବାକୁ ମିଳେ ଯେ ସଭ୍ୟତାର ବିକାଶ ସହିତ ତାଳ ମିଳାଇ ଏପ୍ରକାର ଚିନ୍ତା ଚେତନାର ଅଭିବୃଦ୍ଧି କ୍ରମଶଃ ମଣିଷ ମନରେ ଘଟିଛି । ପ୍ରଥମେ ଆସିଛି ପ୍ରକୃତିର ଅଲୌକିକ ଶକ୍ତି ପ୍ରତି ଶ୍ରଦ୍ଧା ଓ ସମ୍ମାନ ଜଣାଇବାର ପ୍ରବଣତା । ଏହି ପ୍ରବଣତାରୁ ଆସିଛି ବିଶ୍ୱାସ ଓ ଭକ୍ତି ।

ଏଥିପାଇଁ ଅବଶ୍ୟ ପାରିପାର୍ଶ୍ୱିକ ଅବସ୍ଥାକୁ ଲକ୍ଷ୍ୟ କରାଯାଇପାରେ । ସଭ୍ୟତାର ବିକାଶ ସହିତ ଜୀବନ, ଜୀବିକା ଓ ପରିବେଶ ବିଚାରରେ ଆବଶ୍ୟକତା ଦୃଷ୍ଟିରୁ ରୋଗ, ଶୋକ, ଅନିଷ୍ଟ ଆଶଙ୍କାଦି କାରଣରୁ ସୁଖଶାନ୍ତି, ଆନନ୍ଦ, ଉଲ୍ଲାସର ଅପରିହାର୍ଯ୍ୟତା ଯୋଗୁଁ ବା ଲକ୍ଷ୍ୟ ପୂରଣରେ ସଫଳତା ଓ ବିଫଳତା ନିର୍ଦ୍ଧାରଣରୁ ଅଲୌକିକ ଦୈବୀ ଶକ୍ତିର ପ୍ରତୀତି ମନୁଷ୍ୟର ଚିର ସହଚର ହୋଇଆସିଛି ।(୧) ଯେପରି ବୃକ୍ଷ ବିଭିନ୍ନ ପ୍ରକାରେ ମଣିଷ ଜୀବନ ଧାରଣରେ ସହାୟତା କରି ସାଧାରଣ ମଣିଷ ଆଖିରେ ଦେବତା ଓ ଉପାସନାଯୋଗ୍ୟ ସେହିପରି ଭୂତ, ପ୍ରେତ ଅଦୃଷ୍ଟ ବିପଦକାରକ ଶକ୍ତି ସମୂହ ପ୍ରତି ଭୟଭାବ ହେତୁ ସେମାନେ ମଧ୍ୟ ସମଭାବରେ ପୂଜନୀୟ । ଏହି ପ୍ରସଙ୍ଗରେ ମୋନିଅର ଉଇଲିୟମ କହନ୍ତି- 'ସ୍ୱର୍ଗ ମର୍ତ୍ତ୍ୟରେ ଏପରି କୌଣସି ବସ୍ତୁ ନାହିଁ ଯାହାକୁ ହିନ୍ଦୁମାନେ ପୂଜା କରନ୍ତି ନାହିଁ - ସୂର୍ଯ୍ୟ, ଚନ୍ଦ୍ର, ତାରା : ମାଟି, ଗୋଡ଼ି, ପଥର : ବୃକ୍ଷ, ଲତା, ତୃଣ : ନଦୀ, ପୁଷ୍କରିଣୀ, ସାଗର : ନିଜର ବୃତ୍ତିଗତ ଉପକରଣ, ଉପକାରୀ ଜୀବଜନ୍ତୁ : ଭୟଙ୍କର ସରୀସୃପ : ଅସାଧାରଣ ବ୍ୟକ୍ତିତ୍ୱ : ମୃତ ପୂର୍ବପୁରୁଷ, ଭୂତ ପ୍ରେତ ପିଶାଚ : ସପ୍ତ ସ୍ୱର୍ଗ ଓ ସପ୍ତ ପାତାଳର ଅଧିବାସୀ, ଅର୍ଦ୍ଧ ମାନବ ତଥା ଅର୍ଦ୍ଧ ପଶୁ ସମ୍ମିଳିତ ଜୀବ - ଏମାନେ ସମସ୍ତେ ହିନ୍ଦୁ ଧର୍ମଧାରାରେ ଅଧିକାର କରିଛନ୍ତି ଏକ ପ୍ରମୁଖ ସ୍ଥାନ ।'

ଏ ପ୍ରକାର ଭାବନା ଓ ଚିନ୍ତାଧାରା ହିନ୍ଦୁଧର୍ମର ଉତ୍ସ ବିନ୍ଦୁ ସମୟର ପ୍ରବାହରେ ଏହି ଧର୍ମଚେତନାରେ ଧୀରେ ଧୀରେ ଆଶ୍ରୟ ନେଇଛି ଅନେକ ପ୍ରକାରର ଅନ୍ଧବିଶ୍ୱାସ, ଅଗଣିତ କୁସଂସ୍କାର ଓ ଅଜସ୍ର ଭ୍ରାନ୍ତି । ମଣିଷ ମନର ଏ ପ୍ରକାର ଭୟଭାବ, ଅସହାୟତା, ସୌନ୍ଦର୍ଯ୍ୟବୋଧ, ବିମୁଗ୍ଧତା, କୃତଜ୍ଞତା, ଆତ୍ମସମର୍ପଣତା ସବୁକିଛିରୁ ସୃଷ୍ଟି ହୋଇଥିଲା ଧର୍ମର ଏକ ବଳିଷ୍ଠ ରୂପରେଖ । ଅଧିକନ୍ତୁ କ୍ଷୀର ସହିତ ନୀର ପରି ବଉଦ ସହିତ ବିଜୁଳି ପରି, ନଦୀ ସହିତ ସାଗର ପରି ଧର୍ମ ସଂପୃକ୍ତ ହୋଇଥିଲା । ସାଧାରଣ ମଣିଷଙ୍କ ସାଂସ୍କୃତିକ ଅଭିବ୍ୟକ୍ତି ଯାହା ଆମର ଲୋକ ସଂସ୍କୃତି ଭାବେ ପରିଗଣିତ, ସାଧାରଣ ମଣିଷର ସେହି ଚିନ୍ତାଧାରା ମୂଳରେ ଜଡ଼ିତ ରହିଛି ଅନେକ ମୂଲ୍ୟବାନ ଉପାଦେୟ ତଥ୍ୟ, ସାମାଜିକ ମୂଲ୍ୟବୋଧ ଓ ସାଂସ୍କୃତିକ ପରମ୍ପରା । ଜୀବନ ରହସ୍ୟର ବହୁ ସୂତ୍ର ନିହିତ ରହିଛି ଆମର ଏଇ ଲୋକ ସଂସ୍କୃତି ଐତିହ୍ୟରେ ।

ଏହି ପୃଷ୍ଠଭୂମିରେ ଉପବାସ, ବ୍ରତ ଏବଂ ଓଷା ଆମ ସଂସ୍କୃତିର ଅନନ୍ୟ ବିଭବ । ପ୍ରାକ୍ ଆର୍ଯ୍ୟ ଓ ଆର୍ଯ୍ୟ କାଳରୁ ଆଚରିତ ଏଇ ଭାବଧାରାରେ ପ୍ରାକ୍-ଆର୍ଯ୍ୟ ବା ଆର୍ଯ୍ୟୋତ୍ତର ସଂସ୍କୃତିର ନିଦର୍ଶନ ପ୍ରତିଭାତ ହୋଇଥାଏ । ଭାରତୀୟ ଲୋକ ଜୀବନ ଓ ପୁରାଣରେ ଏହାର ପ୍ରଭାବ ଓ ପ୍ରତିଷ୍ଠା କଥା ବେଶ ଜଣାଶୁଣା । ଏଥିରେ ପ୍ରାଗୈତିହାସିକ ଯୁଗର ଉର୍ବରତାବାଦ, ଗୂହ୍ୟଯାଦୁ ବା ଐନ୍ଦ୍ରଜାଲିକ କ୍ରିୟାର ପ୍ରଭାବ ପ୍ରଚ୍ଛନ୍ନ ଭାବରେ ବିଦ୍ୟମାନ । ଏଠାରେ କିନ୍ତୁ ଯେଉଁ ଐନ୍ଦ୍ରଜାଲିକ କ୍ରିୟା ବା ଗୂହ୍ୟ-ଯାଦୁକ୍ରିୟା କଥା କୁହାଯାଇଛି ତାହା ଏକପ୍ରକାର ପ୍ରାକୃତ ଧର୍ମାଚାର ବା ମନ୍ତ୍ର ।(୨) ପ୍ରକୃତିର ଅନିଶ୍ଚିତତାକୁ ଜୟ କରିବା ଲାଗି ଆଦିମ ମାନବ ଏହାର ଉପଯୋଗ କରୁଥିଲା । ଏଥିରେ ଶକ୍ତିକୁ ଆୟତ୍ତ କରି ତଦ୍ୱାରା ଅଭୀଷ୍ଟ ସାଧନ କରିବାର ପ୍ରୟାସ ଲକ୍ଷ୍ୟ କରାଯାଏ । ଏହିପରି ଭାବରେ ବିଭିନ୍ନ ଅଞ୍ଚଳରେ ଧର୍ମକୃତ୍ୟ ଭାବେ ଉପବାସ, ବ୍ରତ ଓ ଓଷାର ବିକାଶ ଘଟିଛି ।

ପ୍ରାଚୀନ ପୁରାଣ ଶାସ୍ତ୍ରମାନଙ୍କରେ ସେମାନଙ୍କର ପାଳନ ସମୟ, ବିଧି ଓ ବ୍ୟବସ୍ଥା ବିଷୟରେ ପୂର୍ଣ୍ଣାଙ୍ଗ ଆଲୋଚନା କରାଯାଇଛି । ଅଧିକାଂଶ ଉପବାସ ଓ ବ୍ରତ ସ୍ତ୍ରୀ ପୁରୁଷ ଉଭୟଙ୍କଦ୍ୱାରା ପାଳନୀୟ ହେଉଥିବାବେଳେ କେତେକ କେବଳ କୁମାରୀ, ସଧବା, ବିଧବା ବା କେବଳ ପୁରୁଷଙ୍କ ପାଇଁ ଉଦ୍ଦିଷ୍ଟ । ଏହାଛଡ଼ା ବିଭିନ୍ନ ଗୋଷ୍ଠୀ ଓ ସମ୍ପ୍ରଦାୟର ରହିଛି କେତେକ ନିର୍ଦ୍ଦିଷ୍ଟ ଉପବାସ, ବ୍ରତର ଆଚରଣ ବିଧି ।

ଅଧିକନ୍ତୁ କୃଷି ପ୍ରଧାନ ରାଜ୍ୟରେ କୃଷିର ସଦୁପଯୋଗ ପାଇଁ ବୀଜବପନଠାରୁ ଆରମ୍ଭ କରି ଫସଲ ଅମଳ ପର୍ଯ୍ୟନ୍ତ ବିଭିନ୍ନ ଅବସରରେ ନିର୍ବିଘ୍ନ ପରିସମାପ୍ତି ଉଦ୍ଦେଶ୍ୟରେ ଓ ଆମୋଦ ପ୍ରମୋଦ କରିବା ପାଇଁ ସୃଷ୍ଟି ହୋଇଛି ବହୁ ଓଷା, ବାର, ବ୍ରତ ।(୩)

ତେଣୁ ସାମଗ୍ରିକ ଭାବେ ଦେଖିବାକୁ ଗଲେ ସାରା ଦେଶରେ ବିଶେଷ କରି ଆମ ରାଜ୍ୟରେ ବହୁପ୍ରକାର ଉପବାସ, ବ୍ରତ ଓ ଓଷାବିଧିର ପ୍ରଚଳନ ରହିଛି । ଏଠାରେ ଗୋଟିଏ କଥା ଲକ୍ଷ୍ୟ କରାଯାଇପାରେ ଯେ ଉପବାସ ଶବ୍ଦଟି ବ୍ରତ ଏବଂ ଓଷା ସହିତ ସଂପୃକ୍ତ ଥିଲେ ମଧ୍ୟ ଉପବାସ ପ୍ରଥା ନିଜସ୍ୱ ପରିଧିରେ ଏକ ପ୍ରଚଳିତ ଜନପ୍ରିୟ ସଂସ୍କୃତି ।

**ଉପବାସ**

ଉପବାସ ସମ୍ବନ୍ଧରେ ଆୟୁର୍ବେଦରେ କଥାଟିଏ ଅଛି । ଜଣେ ଆୟୁର୍ବେଦବିତ୍ ଆଉ ଜଣେ ବୈଦ୍ୟଙ୍କୁ ନିମ୍ନମତେ ପ୍ରଶ୍ନ କରିଥିଲେ -

'ଅଭୂମିଜଂ ନିରାକାରଂ ପଥ୍ୟଂ ଷଡ୍ରସବର୍ଜିତମ୍
ଚରକେଣ ସମାଖ୍ୟାତଂ ବଦ ବୈଦ୍ୟ କିମୌଷଧମ୍ ।'

ଅର୍ଥାତ୍ ଭୂଇଁରୁ ଜନ୍ମି ନାହିଁ, ଆକାର ଶୂନ୍ୟ, ଛଅ ପ୍ରକାରର ପଥ୍ୟରସ ମଧ୍ୟରୁ କୌଣସି ରସଯୁକ୍ତ ନୁହଁ, ତେଣୁ ରସହୀନ- ଏପରି କେଉଁ ଔଷଧର ବର୍ଣ୍ଣନା ଚରକ ତାଙ୍କ ସଂହିତାରେ କରିଛନ୍ତି । ଉତ୍ତରରେ ବୈଦ୍ୟ ମହାଶୟ କହିଥିଲେ - 'ଲଂଘନଂ' ବା ଉପବାସ ।

ବୈଦ୍ୟଙ୍କଠାରୁ ଆରମ୍ଭ କରି ବୈଜ୍ଞାନିକମାନେ ସମସ୍ତେ ଉପବାସ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । ଧର୍ମପ୍ରାଣ ବ୍ୟକ୍ତିଙ୍କ ମତରେ ଏହା ହେଉଛି ସ୍ୱର୍ଗୀୟ ଜୀବନଧାରାର ପ୍ରଥମ ପାହାଚ । ଉପବାସ ଓ ତୃପ୍ତିକର ଭୋଜନ ଉଭୟ ମନୁଷ୍ୟ ପକ୍ଷରେ ଆଶୀର୍ବାଦ ସ୍ୱରୂପ । ସମ୍ପୂର୍ଣ୍ଣ ଭୋଜନ ଯେଉଁ ତୃପ୍ତି ପ୍ରଦାନ କରେ ତାହା କ୍ଷଣସ୍ଥାୟୀ । କିନ୍ତୁ ଉପବାସ ଭିତରେ ନିହିତ ଅଛି ଅନ୍ୟ ଏକ ପ୍ରକାରର ଶାନ୍ତି ।(୪)

ସ୍ୱାସ୍ଥ୍ୟ ଆମର ଅତ୍ୟନ୍ତ ମୂଲ୍ୟବାନ ସମ୍ପଦ ହୋଇଥିବାରୁ ପ୍ରାଚୀନ ମାନବଠାରୁ ଆଧୁନିକ ମାନବ ସମସ୍ତେ ସ୍ୱାସ୍ଥ୍ୟ ପ୍ରତି ସଚେତନ ମନୋଭାବ ପୋଷଣ କରି ଆସିଛନ୍ତି । ତେଣୁ ପ୍ରାଚୀନ ଭାରତରେ ଚାରିବେଦ ପରେ ଆୟୁର୍ବେଦ ପଞ୍ଚମ ବେଦ ଭାବରେ ପ୍ରକାଶ ଲାଭ କରି ମଣିଷର କାୟିକ, ମାନସିକ ଓ ତାତ୍ତ୍ୱିକ ବିକାଶ ଉପରେ ଗୁରୁତ୍ୱ ଦେଇଛି । ଏଥିରେ ବିଭିନ୍ନ ଦୋଷ ଦୁର୍ଗୁଣର ନିରାକରଣ ପାଇଁ ଉପବାସକୁ ପ୍ରଥମ ତଥା ସଫଳ ମାଧ୍ୟମ ଭାବେ ଗ୍ରହଣ କରାଯାଇଛି । ଉପବାସ ମଣିଷକୁ ଶକ୍ତିବାନ କରାଇ ବହୁରୋଗରୁ ରକ୍ଷା କରେ ।

ମଣିଷ ଜୀବନ କର୍ମମୟ । କର୍ମରୁ ଆସେ ସାଧନାର ପ୍ରବୃତ୍ତି । ସାଧନା ପାଇଁ ଦରକାର ସୁସ୍ଥ ଦେହ ଓ ସୁସ୍ଥ ମନ । **ଉପବାସ ଶରୀର ଓ ମନକୁ ସୁସ୍ଥ ରଖିବାରେ ସାହାଯ୍ୟ କରେ ।** ଜୀବଜଗତରେ ପଶୁପକ୍ଷୀମାନେ ପ୍ରକୃତି ଉପରେ ନିର୍ଭର କରି ଜୀବନଧାରଣ କରନ୍ତି । ସେମାନଙ୍କୁ କୌଣସି ରୋଗ ହେଲେ ପ୍ରକୃତିଗତ ଉପାୟ ଯଥା- ସୂର୍ଯ୍ୟକିରଣ, ବିଶୁଦ୍ଧ ପବନ, ଉପବାସ ଓ ବିଶ୍ରାମଦ୍ୱାରା ସେମାନେ ନିଜକୁ ରୋଗମୁକ୍ତ କରନ୍ତି । ଏପ୍ରକାରର ସମସ୍ୟା ଏଡାଇବା ପାଇଁ ପ୍ରାଚୀନ ମନିଷୀଗଣ ଉପବାସ ପ୍ରଥା ଉପରେ ସବିଶେଷ ଗୁରୁତ୍ୱ ଆରୋପ କରିଥିଲେ ।

ଆଧୁନିକ ମଣିଷ ମଧ୍ୟ ନିଜସ୍ୱ ଚିନ୍ତାଧାରା ଓ ପରିଧିରେ କିଛି କମ୍ ନୁହଁ । ସିଏ ମଧ୍ୟ ଶରୀରର ଉପଯୁକ୍ତ ରକ୍ଷଣାବେକ୍ଷଣ ଓ ଭାରସାମ୍ୟ ପାଇଁ ଉପବାସର ଗୁରୁତ୍ୱକୁ ଉପଲବ୍ଧି କରିଛି । ମଣିଷର ଏହି ଉପଲବ୍ଧିରୁ ଜନ୍ମ ନେଇଛି ବିଭିନ୍ନ ତିଥି, ବାର, ନକ୍ଷତ୍ରରେ ପାଳିତ ହେଉଥିବା ନାନାପ୍ରକାରର ଉପବାସ ପ୍ରଥା ।

ପୃଥିବୀର ଆବର୍ତ୍ତନ ଓ ବିବର୍ତ୍ତନ ସହିତ ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ନକ୍ଷତ୍ରଙ୍କ ଅବସ୍ଥିତି ମଣିଷ ଶରୀର ଉପରେ ଗଭୀର ପ୍ରଭାବ ପକାଇଥାଏ । ଏସବୁକୁ ଲକ୍ଷ୍ୟରେ ରଖି ଶାସ୍ତ୍ର, ପୁରାଣ, ଲୋକ ସଂସ୍କୃତିରେ ପ୍ରଚଳନ ରହିଛି ବିଭିନ୍ନ ପ୍ରକାର ଉପବାସ ପ୍ରଥାର । ଉପବାସରୁ ଆସେ ସଂଯମ । ସଂଯମରୁ ଆତ୍ମାନୁଶୀଳ । ସର୍ବୋପରି ନିଜସ୍ୱ ଉପଲବ୍ଧି । ଏହି ପରିପ୍ରେକ୍ଷୀରେ ଗାନ୍ଧିଜୀଙ୍କର ସପ୍ତାହରେ ଦିନେ ଉପବାସ ରହି ଫଳାହାର କରିବାର ପଦ୍ଧତିକୁ ଉଦାହରଣ ହିସାବରେ ନିଆଯାଇପାରେ ।

ଶୁଦ୍ଧପୂତ ରୀତିରେ ଉପବାସ କଲେ ରାଗ, ରୋଗ, ଅହଙ୍କାର, ଶଠତା, ଶତ୍ରୁତା, ହିଂସା, ଦ୍ୱେଷ, ଅବିଚାର ଆଦି ଅସତ୍‌ଗୁଣ ଓ ଅସତ୍‌ଚିନ୍ତା ଦୂରୀଭୂତ ହୁଏ । ମାନବବାଦୀ ପବିତ୍ର କାର୍ଯ୍ୟକଳାପ ପାଇଁ ଅନ୍ତରରେ ଆଗ୍ରହ ଆସେ । ଅନେକେ ବାରମାସୀ ଏକାଦଶୀ ଓ ଦ୍ୱାଦଶୀ ଉପବାସ ପାଳନ କରୁଥିବା ବେଳେ ଆଉ କେତେକ ନିର୍ଦ୍ଦିଷ୍ଟ ପ୍ରକାରର ଏକାଦଶୀ ଓ ଦ୍ୱାଦଶୀ ପାଳନ କରନ୍ତି । ସେଗୁଡ଼ିକ ହେଲା- ଆଷାଢ଼ ଶୁକ୍ଳ ଏକାଦଶୀ, କାର୍ତ୍ତିକ ଶୁକ୍ଳ ଏକାଦଶୀ, ମାଘ ଶୁକ୍ଳ ଏକାଦଶୀ ଓ ବୈଶାଖ ଶୁକ୍ଳ ଏକାଦଶୀ । ଏକାଦଶୀ ଉପବାସ ପାଳନ କରି ଦ୍ୱାଦଶୀରେ ପାରଣା କରିବାର ବିଧି ମଧ୍ୟ ଶାସ୍ତ୍ରରେ ରହିଛି । ଏହାଛଡ଼ା ବାରମାସୀ ଦ୍ୱିତୀୟା, ଚତୁର୍ଦ୍ଦଶୀ, ଅମାବାସ୍ୟା, ପୂର୍ଣ୍ଣିମା, ମାସନ୍ତ, ସଂକ୍ରାନ୍ତି ଉପବାସ କଥା ଉଲ୍ଲେଖଯୋଗ୍ୟ । କ୍ଷେତ୍ର ବିଶେଷରେ ଏହା କେତେକ ନିର୍ଦ୍ଦିଷ୍ଟ ତିଥି ମଧ୍ୟ ହୋଇପାରେ । ସୂର୍ଯ୍ୟପରାଗ ଓ ଚନ୍ଦ୍ରଗ୍ରହଣ ଉପବାସ ମଧ୍ୟ ଏହି ପରିପ୍ରେକ୍ଷୀରେ ବିଜ୍ଞାନସମ୍ମତ । ଏହିଦିନ ପାରିପାର୍ଶ୍ୱିକ ପ୍ରଭାବରୁ ହଜମ କ୍ରିୟା ବ୍ୟାହତ ହୁଏ । ଅନେକ କ୍ଷେତ୍ରରେ ଏହି ଉପବାସ ପୂର୍ଣ୍ଣ ବା ଆଂଶିକ ହୋଇଥାଏ । ସାତ୍ତ୍ୱିକ ଖାଦ୍ୟ ଫଳାହାର, ଶୁଦ୍ଧ ଆଚାର, ପବିତ୍ର ବିଚାର - ଏସବୁ ଉପବାସର ଆନୁଷଙ୍ଗିକ ଅଂଶବିଶେଷ ।

ଉପବାସ ପାଳନ ପଛରେ କୌଣସି ଧର୍ମୀୟ ଭାବନା ଥାଉ ଅବା ନଥାଉ ନିତ୍ୟ ପୂଜାର୍ଚ୍ଚନା, ଦୈନନ୍ଦିନ ନିତ୍ୟକର୍ମ ପରି ଉପବାସର

ବିଶେଷ ଦିନଗୁଡ଼ିକ ଲୋକ ସଂସ୍କୃତିର ବଳିଷ୍ଠ ଅଙ୍ଗ ହିସାବରେ ସମାଜରେ ସୁପ୍ରତିଷ୍ଠିତ ହୋଇପାରିଛି । ଭାରତୀୟ ଧର୍ମଧାରାର ଦୁଇଟି ସ୍ରୋତ- ଧର୍ମବିଶ୍ୱାସ ବା ଧର୍ମଧାରଣା, ଅପରଟି ଧର୍ମକୃତ୍ୟ । ଏହି ସାଧାରଣ ନିୟମ ଅନୁସାରେ ଉପବାସ ପଦ୍ଧତିରେ ବିଶ୍ୱାସର ଭିତ୍ତିଭୂମି ବିଶେଷ ସୁସଙ୍ଗଠିତ କାରଣ ବିଶ୍ୱାସ ଲୋକଙ୍କ ଚିନ୍ତା ଚେତନାକୁ ପ୍ରଭାବିତ କରେ । ଆଉ ଧର୍ମକୃତ୍ୟ ମଣିଷର କର୍ମକୁ ନିୟନ୍ତ୍ରଣ କରେ । ତେଣୁ ସାଧାରଣ ଉପବାସ ସଂସ୍କୃତି ଆମର କାୟିକ, ମାନସିକ ତଥା ତାତ୍ତ୍ୱିକ ଶାନ୍ତି ପାଇଁ ବିଶେଷ ଉଲ୍ଲେଖଯୋଗ୍ୟ ।

**ବ୍ରତ ଓ ଓଷା**

ସାଧାରଣ ଉପବାସ ବ୍ୟତିରେକ ଆମ ସଂସ୍କୃତିରେ ଅନ୍ୟ ଦୁଇ ପ୍ରକାର ଉପବାସର ପ୍ରଚଳନ ରହିଛି ଯାହାକି ବ୍ରତ ଓ ଓଷା ନାମରେ ଖ୍ୟାତ ।

କେତେକଙ୍କ ମତରେ ବ୍ରତ ଓ ଓଷା ଭିତରେ ବସ୍ତୁତଃ କୌଣସି କିଛି ପାର୍ଥକ୍ୟ ନାହିଁ । ବ୍ରତ, ଓଷାର ସଂସ୍କୃତ ଶବ୍ଦର ନାମ ବ୍ୟତୀତ ଅନ୍ୟ କିଛି ନୁହଁ ।(୫)

ଅନ୍ୟ ମତରେ ବ୍ରତକଥା ସମ୍ପୂର୍ଣ୍ଣ ଆଦିବାସୀ ସଂସ୍କୃତିର କଥା । ସେଥିପାଇଁ ଏହାର ସାର୍ବଜନୀନତା ଆଉ ନାହିଁ । କ୍ଷେତ୍ର ବିଶେଷରେ ବ୍ରାହ୍ମଣ ପୂଜକ ଓ ସଂସ୍କୃତ ମନ୍ତ୍ରର ଦରକାର ପଡ଼ିଲାଣି । ଆଚରିତ ବ୍ରତ ଓ ଓଷା ସବୁ ଆମ ଭିତରେ ବଦ୍ଧମୂଳ ହୋଇ ରହିଛି । ସମାଜର ଅସହାୟ ମଣିଷକୁ ସହଜରେ ସାନ୍ତ୍ୱନା ଦେବା ଏଗୁଡ଼ିକର ଭିଆଣ । ଆଗରୁ ହୁଏତ ଏସବୁ ସଂସ୍କାର ରୂପେ ରହିଥିଲା । ପୁରାଣ ଯୁଗରେ ଏଗୁଡ଼ିକର ଆନୁଷ୍ଠାନିକ ଜୀବନ୍ୟାସ ହେଲା । ନିୟମ ଓ ନିଷେଧଦ୍ୱାରା ଲୋକ ଜୀବନ ଆୟତନ ସିଦ୍ଧ ହୋଇ ରହିଲା ।(୬)

ବ୍ରତ ଶବ୍ଦଟି ସଂସ୍କୃତର 'ବୃ' ଧାତୁରୁ ଆନୀତ ଯାହାର ଅର୍ଥ ହେଲା ବରଣ କରିବା ବା ପ୍ରାର୍ଥନା କରିବା । ବ୍ରତ ସାଧାରଣତଃ ଯାହାର ଉପବାସ, ନିୟମ, ସଂଯମ, ନିଷ୍ଠା ପ୍ରଭୃତିକୁ ବୁଝାଇଥାଏ । ବ୍ରତ ତିନିଭାଗରେ ବିଭକ୍ତ - ନିତ୍ୟ, ନୈମିତ୍ତିକ ଓ କାମ୍ୟ ବ୍ରତ ।

ଏହା ଭିତରୁ ପ୍ରଥମ ଦୁଇଟି ଅର୍ଥାତ୍ ନିତ୍ୟ ବ୍ରତ ଓ ନୈମିତ୍ତିକ ବ୍ରତ ବ୍ରାହ୍ମଣ୍ୟ ଧର୍ମର ଅନ୍ତର୍ଗତ । ତୃତୀୟ ବ୍ରତ ଅର୍ଥାତ୍ କାମ୍ୟ ବ୍ରତ ଲୋକଧର୍ମୀ ଯାହା ଲୋକଙ୍କଦ୍ୱାରା ପାଳନ କରାଯାଏ । ଅନ୍ୟ ପକ୍ଷରେ ନିତ୍ୟ ଓ ନୈମିତ୍ତିକ ବ୍ରତରେ କୌଣସି ପ୍ରକାରର ତ୍ରୁଟିବିଚ୍ୟୁତି ସମ୍ଭବ ନୁହଁ କିମ୍ବା ବ୍ରାହ୍ମଣର ସହାୟତା ବିନା ଏଗୁଡ଼ିକର ପ୍ରତିପାଳନ ସହଜ ନୁହେଁ । ଏହି ପରିପ୍ରେକ୍ଷୀରେ ଦେଖିବାକୁ ଗଲେ ନିର୍ଦ୍ଦିଷ୍ଟ କାମନାର ସଫଳତା ପାଇଁ କାମ୍ୟ ବ୍ରତ ପାଳନ କରାଯାଏ । ଏଥିରେ ପୁରୋହିତଙ୍କର ଆବଶ୍ୟକତା ଅନିର୍ବାର୍ଯ୍ୟ ନୁହେଁ । ଶାସ୍ତ୍ରଜ୍ଞଙ୍କ ଅନୁସାରେ କାୟିକ ଓ ମାନସିକ ଭେଦରେ କାମ୍ୟ ବ୍ରତ ଦୁଇ ପ୍ରକାରର, ଏହା ଭିତରୁ ଉପବାସାଦିକୁ କାୟିକ କାମ୍ୟ ବ୍ରତ ଓ ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟାଦିକୁ ମାନସିକ କାମ୍ୟ ବ୍ରତ କୁହାଯାଏ ।(୭)

ବ୍ରତର ଅନ୍ୟ ଏକ ସୂଚନା ହିସାବରେ ନିମ୍ନ ଉଦ୍ଧୃତିଟିକୁ ଲକ୍ଷ୍ୟ କରାଯାଇପାରେ - 'ମୋଟାମୋଟି ଭାବରେ ବ୍ରତଗୁଡ଼ିକର ଦିଗନ୍ତ କେତେକ ଦେବଦେବୀ, କେତେକ ଦେଶର କାହାଣୀ, ଅଳ୍ପ କେତେକ ଚରିତ୍ର ଓ ଅଳ୍ପ କେତେକ ଉଦ୍ଦେଶ୍ୟ ମଧ୍ୟରେ ସୀମାବଦ୍ଧ । ଦେବଦେବୀମାନଙ୍କର ବିବର୍ତ୍ତନ କାହାଣୀ ମଧ୍ୟରେ, ଐତିହାସିକ ପଟ୍ଟଭୂମିରେ ବର୍ଣ୍ଣିତ ଦେଶଗୁଡ଼ିକର ଆପେକ୍ଷିକ ଗୁରୁତ୍ୱ ମଧ୍ୟରେ ସମାଜର ବିକାଶ ଧାରାର ପରିପ୍ରେକ୍ଷୀରେ ବର୍ଣ୍ଣିତ ଚରିତ୍ରଗୁଡ଼ିକର ତାତ୍ପର୍ଯ୍ୟ ଓ ବ୍ରତ ପ୍ରୟୋଜନର ଆବଶ୍ୟକତା ମଧ୍ୟରେ ବ୍ରତଗୁଡ଼ିକର ଅନୁବର୍ତ୍ତନ କାହାଣୀ ଅନୁଶୀଳନ କରିବାକୁ ହେବ ।(୮)

ଉପବାସ, ବ୍ରତ, ଓଷା ମଧ୍ୟରୁ ବ୍ରତ ଶବ୍ଦଟିର ବ୍ୟାପକ ପରିଚିତି ଥିବାବେଳେ ଓଷା ଶବ୍ଦଟିର ପରିଚିତି ସୀମିତ ଓ ଉପବାସ ଶବ୍ଦଟି ନିଜ ଭିତରେ ଆବଦ୍ଧ । 'ଓଷା' ଶବ୍ଦଟି 'ଉପବାସ' ଶବ୍ଦରୁ ଆସିଛି ବୋଲି ଅନେକେ ମତବ୍ୟକ୍ତ କରନ୍ତି । ଉପବାସ ଶବ୍ଦଟିର ଅର୍ଥ ହେଲା ଉପ ଅର୍ଥାତ୍ ନିକଟରେ ବାସ କରିବା । ପ୍ରକାରାନ୍ତରେ ଓଷେଇତି, ବ୍ରତଚାରୀ ବା ବ୍ରତଚାରିଣୀ ନିଜ ଆରାଧ୍ୟ ଦେବତାଙ୍କ ନିକଟରେ ବସି ନିଜର ଇଚ୍ଛାପୂରଣ ପାଇଁ ପ୍ରାର୍ଥନା କରିବାକୁ ଉପବାସ କୁହାଯାଏ । ଏହା ଉପବସ୍ତ, ଉପୋଷିତ, ଉପୋଷଣ, ଔପବସ୍ତ, ସୋପାନ ମଧ୍ୟ ଦେଇ ଗତି କରିଥାଏ ।(୯)

ଓଷା ଶବ୍ଦଟି ଗାଉଁଲି ହୋଇଥିବାବେଳେ ବ୍ରତ ଶବ୍ଦଟି ସଂସ୍କୃତ ଓ ମାର୍ଜିତ । ପ୍ରାଚୀନ ସାହିତ୍ୟରୁ ସେମାନଙ୍କ ଆଭାସ ମିଳେ । ଏକାଦଶ ଶତାବ୍ଦୀରେ ରଚିତ 'ଶତାନନ୍ଦ ସଂଗ୍ରହ'ରୁ ଓଷା, ବ୍ରତ ତଥା ଯାତ୍ରାର ଉଲ୍ଲେଖ ମିଳେ ।(୧୦) ସେହିପରି ଚତୁର୍ଦ୍ଦଶ ଶତାବ୍ଦୀରେ ବୃହସ୍ପତିଙ୍କ ରଚିତ 'କୃତ୍ୟକୌମୁଦୀ' ମଧ୍ୟ ଓଷା, ବାରବ୍ରତ, ପର୍ବର ଏକ ବ୍ୟାପକ ଚିତ୍ର ମିଳିଥାଏ ।(୧୧) ଏହାଛଡ଼ା ଦିବ୍ୟସିଂହ ମହାପାତ୍ରଙ୍କ କାଳଦୀପ, ରଘୁନାଥ ଦାସଙ୍କ କାଳନିର୍ଣ୍ଣୟ, ଉପମନ୍ୟୁଙ୍କ ପଞ୍ଚପୂଜାବିଧିରୁ ଏସବୁର ବିସ୍ତୃତ ଆଭାସ ମିଳିଥାଏ ।(୧୨)

ବ୍ରତ ଓ ଓଷା ଉଭୟର ମୂଳଅଙ୍ଗ ହେଲା ନିର୍ଦ୍ଦିଷ୍ଟ କାମନା ପାଇଁ ଉପବାସ । ଓଷାରେ ମାନସିକ ରଖି ପୂଜା କରାଯାଏ ଓ ପୂଜା ପରେ ଓଷେଇତି ସାତ୍ତ୍ୱିକ ଆହାର ଗ୍ରହଣ କରିଥାଏ । ବ୍ରତରେ ବ୍ରତଚାରୀ ବା ବ୍ରତଚାରିଣୀ ଅନେକ ସମୟରେ ଏକ ସୂତ୍ରକୁ ବ୍ରତର ପ୍ରତୀକ ହିସାବରେ ପୂଜା କରି ଧାରଣ କରେ । ଏହାକୁ ମଧ୍ୟ ଏକ ନିର୍ଦ୍ଦିଷ୍ଟ କାମନା ପାଇଁ ପାଳନ କରାଯାଏ ।

ବ୍ରତ ଓ ଓଷା ଅନେକ ପୌରାଣିକ କାହାଣୀ ଉପରେ ଆଧାରିତ । ଏହା ଗଦ୍ୟରେ ବା ପଦ୍ୟରେ ରଚିତ ହୋଇଥାଏ । କେତେକ ମଧ୍ୟ ଗଦ୍ୟପଦ୍ୟ ଉଭୟର ସମନ୍ୱୟରେ ରଚିତ । ଏକ ବା

ଏକାଧିକ ଅଲୌକିକ କାହାଣୀ ମାଧ୍ୟମରେ ବ୍ରତ କିମ୍ବା ଓଷାର ମହିମା ପ୍ରତିପାଦନ ହିଁ ବ୍ରତ କଥା ବା ଓଷାର ମୂଳଲକ୍ଷ୍ୟ ।(୧୩)

ଏଠାରେ ବ୍ରତ ଏବଂ ଓଷା ଭିତରେ କେତୋଟି ନିର୍ଦ୍ଦିଷ୍ଟ ପାର୍ଥକ୍ୟ ଲକ୍ଷ୍ୟ କରାଯାଇପାରେ - କାମନା ପୂରଣ ଉଦ୍ଦେଶ୍ୟରେ ଆଚରଣ ଓ ଖାଦ୍ୟପେୟରେ ଶୁଦ୍ଧ ଏବଂ ସଂଯତ ରହି ନିର୍ଦ୍ଦିଷ୍ଟ ତିଥି, ବାର, ଯୋଗ, ସପ୍ତାହ, ମାସ ବା ସମୟରେ କୌଣସି ଦେବଦେବୀଙ୍କ ସନ୍ତୋଷ ବିଧାନ ଓ ଆନୁକୂଲ୍ୟ ଲାଭ ପାଇଁ ସଂକଳ୍ପବଦ୍ଧ ହୋଇ ନିର୍ଦ୍ଧାରିତ ନିୟମ ଅନୁସାରେ ସମ୍ପାଦିତ ଏକପ୍ରକାରର ଧର୍ମକୃତ୍ୟକୁ ବ୍ରତ କୁହାଯାଏ ।(୧୪) ଏଥିରୁ ସ୍ପଷ୍ଟ ଅନୁମାନ କରି ହୁଏ ଯେ ବ୍ରତ ଶାସ୍ତ୍ରାନୁମୋଦିତ ଏବଂ ଶାସ୍ତ୍ରର ନିୟମକୁ ଆଖିରେ ରଖି ଏହାର ପାଳନବିଧି ଆଚରିତ ହୋଇଥାଏ ।

ଅନ୍ୟପକ୍ଷରେ ବ୍ରତ ପରି ଓଷା ଶାସ୍ତ୍ରାନୁମୋଦିତ ହେବା ଅପରିହାର୍ଯ୍ୟ ନୁହଁ । ଏଥିରେ ବ୍ରାହ୍ମଣର ପୌରୋହିତ୍ୟ ବା କର୍ମକାଣ୍ଡର ପ୍ରାଧାନ୍ୟ ନାହିଁ । ଏହା ନାରୀର ପୌରୋହିତ୍ୟରେ ଅନୁଷ୍ଠିତ ହୁଏ । ବ୍ରତ କଥା ପରି ଓଷାର କଥାଗୁଡ଼ିକ ପୌରାଣିକତାର ଦାବି ରଖେ ନାହିଁ । ଓଷାର କଥା ଓ ଆଚାର ଅନୁଷ୍ଠାନ ସମ୍ପୂର୍ଣ୍ଣ ଭାବେ ଲୌକିକ ।(୧୫) ଏଥିରୁ ଅନୁମିତ ହୁଏ ଯେ ବ୍ରତ ଶାସ୍ତ୍ରସମ୍ମତ ବିଧିବିଧାନ ଅନୁଯାୟୀ ପାଳିତ ହେଉଥିବା ବେଳେ ଓଷା ଲୋକ ସମାଜରେ ଲୌକିକ ରୀତିରେ ପାଳିତ ହୋଇଥାଏ ।

ଓଡ଼ିଶାରେ ପାଳନ କରାଯାଉଥିବା ବିଭିନ୍ନ ବ୍ରତକୁ, ବିଶ୍ଳେଷଣ କରି ଅବନୀନ୍ଦ୍ର ନାଥ ସିଦ୍ଧାନ୍ତ କହନ୍ତି : ବ୍ରତ ହେଉଛି ମନୋସ୍କାମନାର ସ୍ୱରୂପ । ଆଲ୍‌ପନା ବା ଝୋଟି ବ୍ରତର ପ୍ରତିଛବି, ଗୀତିକା ଓ ମହାତ୍ମ୍ୟ ବ୍ରତର ପ୍ରତିଧ୍ୱନି ଓ ନୃତ୍ୟନାଟ୍ୟ ବ୍ରତର ପ୍ରତିକ୍ରିୟା ।(୧୬)

ବ୍ରତର ଶାସ୍ତ୍ରୀୟ ଆଭିମୁଖ୍ୟ ବିବିଧ - ପାପମୁକ୍ତି, ପୁଣ୍ୟାର୍ଜନ, ସନ୍ତାନ, ସମ୍ପଦ, ସୌନ୍ଦର୍ଯ୍ୟ, ସୌଭାଗ୍ୟ, ଦୀର୍ଘାୟୁ, ସଦାଚରଣ, କୀର୍ତ୍ତି, ବିଦ୍ୟା, ଶାନ୍ତି, ଆନନ୍ଦ, ସ୍ୱର୍ଗ ଓ ସର୍ବୋପରି ମୋକ୍ଷଲାଭ ବ୍ରତାଚରଣର ଉତ୍କୃଷ୍ଟ ପରିଣତି । ଉପଯୁକ୍ତ ରୀତିରେ ବ୍ରତପାଳନ କଲେ ବ୍ରହ୍ମଲୋକ, ଶିବଲୋକ ଓ ବୈକୁଣ୍ଠ ପ୍ରାପ୍ତି ସମ୍ଭବ ।

ଆଖ୍ୟାୟିକା ବ୍ରତର ପଞ୍ଜର ସ୍ୱରୂପ ।(୧୭) ପ୍ରତ୍ୟେକ ବ୍ରତର ଆଖ୍ୟାୟିକା ଏକ ନୀତିଶିକ୍ଷା ଉପରେ ପର୍ଯ୍ୟବସିତ । ନିର୍ଦ୍ଦିଷ୍ଟ ଦଣ୍ଡ, ତିଥି, କାଳ ଦ୍ୱାରା ସ୍ଥିରୀକୃତ ବ୍ରତପାଳନ ସମୟରେ ପୂଜା, ଭକ୍ତି, ଶ୍ରବଣ ଓ ଆଚରଣ ଗୁରୁତ୍ୱଲାଭ କରିଥାଏ ।

### ବ୍ରତ ବର୍ଣ୍ଣନା

ଓଡ଼ିଶାରେ ନିମ୍ନଲିଖିତ ବ୍ରତଗୁଡ଼ିକ ଜନସମାଜରେ ବିଶେଷ ପ୍ରଚଳିତ ।

**ବୈଶାଖ ମାସ :** ବୈଶାଖ ମାସ ଶୁକ୍ଳପକ୍ଷ ଏକାଦଶୀ ରବିବାରରେ ପଡ଼ିଲେ ପାଳିତ ହୁଏ ବିରଞ୍ଚି ନାରାୟଣ ବ୍ରତ । ଏହା ଏକ ଯୋଗଜ ବ୍ରତ ଯାହାର ଆରାଧ୍ୟ ଦେବତା ହେଲେ ସୂର୍ଯ୍ୟ ।

ବୈଶାଖ ମାସ ଲୋକ ସଂସ୍କୃତିରେ ପୁଣ୍ୟମାସ ହିସାବରେ ଗୃହୀତ । କେତେକ ବାରମାସୀ ଏକାଦଶୀ ପାଳନ କରୁଥିବା ବେଳେ ଅନେକ ବୈଶାଖ ମାସର ଦୁଇପକ୍ଷର ଏକାଦଶୀ - ମୋହିନୀ ଏକାଦଶୀ ଓ ବରଥିନୀ ଏକାଦଶୀକୁ ବ୍ରତ ହିସାବରେ ପାଳନ କରିଥାନ୍ତି । ଏକାଦଶୀ ମହାତ୍ମ୍ୟରୁ ବୈକୁଣ୍ଠପ୍ରାପ୍ତିର ବିଶ୍ୱାସ ସାଧାରଣରେ ରହିଛି ।

**ଜ୍ୟେଷ୍ଠ ମାସ :** ଏକ ସର୍ବଭାରତୀୟ ବ୍ରତ ରୂପେ ସାବିତ୍ରୀ ବ୍ରତ ଆମ ଜନଜୀବନରେ ବେଶ ସୁପରିଚିତ । ଜ୍ୟେଷ୍ଠ ମାସ ଅମାବାସ୍ୟା ଦିନ ସ୍ୱାମୀଙ୍କ ଅକ୍ଷୟ ଆୟୁ କାମନା କରି ପତ୍ନୀ ଲକ୍ଷ୍ମୀ ନାରାୟଣଙ୍କର ଆରାଧନା କରିଥାଏ । ସ୍କନ୍ଦପୁରାଣ ଓ ଭବିଷ୍ୟ ପୁରାଣର ପୃଷ୍ଠା ସାବିତ୍ରୀ ବ୍ରତର ମହିମା ଗାନରେ ମୁଖରିତ ।

**ଆଷାଢ଼ ମାସ :** ଆଷାଢ଼ ମାସ ଶୁକ୍ଳ ନବମୀ ମଙ୍ଗଳବାରରେ ପଡ଼ିଲେ ଏକ ଯୋଗଜ ବ୍ରତ ହିସାବରେ ତାରିଣୀ ବ୍ରତ ପାଳନ କରାଯାଏ । ଦେବୀ ଦୁର୍ଗାଙ୍କୁ ପୂଜା କରି ପରିବାରକୁ ବିପଦରୁ ରକ୍ଷା କରିବା ପାଇଁ ଗୃହିଣୀମାନେ ବ୍ରତ ଧାରଣ କରି ଦେବୀଙ୍କ ଆଶୀର୍ବାଦ କାମନା କରନ୍ତି ।

**ଭାଦ୍ରବ ମାସ :** ଭାଦ୍ରବ ଶୁକ୍ଳ ତୃତୀୟା ତିଥିର ଗୌରୀ ତୃତୀୟା ବା ହରତାଳିକା ବ୍ରତରେ କନ୍ୟାମାନେ ଉତ୍ତମ ପତି ଓ ନାରୀମାନେ ଅଖଣ୍ଡ ସୌଭାଗ୍ୟ କାମନା କରି ପାଳନ କରନ୍ତି । ଏହା ଅନେକ ସ୍ଥାନରେ ବାଲି ତୃତୀୟା ନାମରେ ମଧ୍ୟ ପରିଚିତ ।

ଭାଦ୍ର ଶୁକ୍ଳ ଚତୁର୍ଥୀର ବିନାୟକ ବ୍ରତରେ କାର୍ଯ୍ୟସିଦ୍ଧି କାମନାରେ ବିଘ୍ନନାଶକ ବିନାୟକଙ୍କୁ ଆରାଧନା କରାଯାଏ ।

'ବକ୍ରତୁଣ୍ଡଂ ମହାକାୟଂ ଗୌରୀପୁତ୍ରଂ ବିନାୟକଂ,<br>ନିର୍ବିଘ୍ନ କୁରୁମେ ଦେବ ସର୍ବକାର୍ଯ୍ୟେ ସୁସର୍ବଦା ।'

ପୁରାଣ ଅନୁସାରେ କୃଷ୍ଣ ଯୁଧିଷ୍ଠିରଙ୍କୁ ବିନାୟକ ବ୍ରତ କରିବାକୁ ପରାମର୍ଶ ଦେଇଥିଲେ ଓ ସେହି ଅନୁସାରେ ଯୁଧିଷ୍ଠିର ନିଜର ହୃତରାଜ୍ୟ ଫେରି ପାଇଥିଲେ ।

ଭାଦ୍ରବ ଶୁକ୍ଳ ପଞ୍ଚମୀ ତିଥିର ଋଷି ପଞ୍ଚମୀ ବ୍ରତରେ କାଶ୍ୟପ, ଅତ୍ରି, ଭରଦ୍ୱାଜ, ବିଶ୍ୱାମିତ୍ର, ଗୌତମ, ଯମଦଗ୍ନି ଓ ବଶିଷ୍ଠ ଆଦି ସପ୍ତଋଷିଙ୍କୁ ଅର୍ଘ୍ୟ ପ୍ରଦାନ କରାଯାଏ । ପାଣ୍ଡବମାନେ ଏହି ବ୍ରତ ପାଳନ କରି କୌରବମାନଙ୍କୁ ପରାସ୍ତ କରିଥିଲେ ବୋଲି କଥିତ ଅଛି ।

ଭାଦ୍ର ଶୁକ୍ଳ ଷଷ୍ଠୀର ସୋମନାଥ ବ୍ରତ ଏକ ଜଣାଶୁଣା ବ୍ରତ । ପଶ୍ଚିମର ସୋମନାଥ ଦେବଙ୍କୁ ଆରାଧ୍ୟ ଦେବତା ହିସାବରେ ପୂଜା କରି ବ୍ରତୀ ରୋଗମୁକ୍ତି, ଦାରିଦ୍ର୍ୟ ସଙ୍କୋଚନ, ଆୟୁ ଓ ଧନବୃଦ୍ଧି କାମନା କରିଥାଏ ।

ଭାଦ୍ରବ ଶୁକ୍ଳପକ୍ଷ ସପ୍ତମୀ ତିଥିରେ ପାଳିତ କୁକ୍‌ଟୀ ବ୍ରତ ବଙ୍ଗ ଏବଂ ଓଡ଼ିଶାରେ ପ୍ରଚଳିତ । ଏହି ବ୍ରତ ଛୋଟନାଗପୁରର ପାର୍ବତ୍ୟ

ଗୋଷ୍ଠୀରୁ ଆସି ହିନ୍ଦୁଧର୍ମରେ ପ୍ରବେଶ କରିଛି । ସେମାନଙ୍କ ଦେବୀ କୁକ୍‌ଟୀ କାଳକ୍ରମେ ଆର୍ଯ୍ୟମାନଙ୍କ ଆରାଧ୍ୟଦେବୀରେ ରୂପାନ୍ତରିତ ହୋଇଛନ୍ତି । ଏହାର ବ୍ରତକଥାରେ ଅଛି :

'ନହୁଷ ନାମେଣ ରାଜା ଥିଲେ ଅଯୋଧ୍ୟାର
ଚନ୍ଦ୍ରମୁଖୀ ନାମେ ଭାର୍ଯ୍ୟା ଅଟଇ ତାହାର ।
ଚନ୍ଦ୍ରମୁଖୀ ରାଣୀ ପୁତ୍ର କଷ୍ଟ ଭୋଗୁଥିଲା,
ଏ ବ୍ରତ କରିଣ ତା'ର ସୁଭାଗ୍ୟ ହୋଇଲା ।'

ଭାଦ୍ର ଶୁକ୍ଳାଷ୍ଟମୀ ରାଧାଙ୍କର ଜନ୍ମ ଦିନ । ତେଣୁ ରାଧାଷ୍ଟମୀ ବ୍ରତରେ ସୁଖ ସମୃଦ୍ଧି କାମନା କରି ରାଧାଙ୍କର ଉପାସନା କରାଯାଏ ।

ଭାଦ୍ରପଦ ଶୁକ୍ଳ ଚତୁର୍ଦ୍ଦଶୀ ଅନନ୍ତ ବ୍ରତ ହିସାବରେ ବ୍ରହ୍ମ, ସ୍କନ୍ଦ ଓ ଭବିଷ୍ୟ ପୁରାଣରେ ବର୍ଣ୍ଣିତ । କେଳାମାନଙ୍କର ନାଗ, ଚିତି, ବୋଡ଼ା ସାପର ବିବରଣୀ ସହିତ ଓଡ଼ିଶାରେ ସର୍ପପୂଜାର ପ୍ରାଚୀନ ପରମ୍ପରା ଏହି ଅନନ୍ତ ବ୍ରତ ସହିତ ସଂପୃକ୍ତ ।

ଭାଦ୍ରବ ମାସ କୃଷ୍ଣପକ୍ଷ ଅଷ୍ଟମୀ ତିଥି ପ୍ରଭୁ କୃଷ୍ଣଙ୍କ ଜନ୍ମଦିନ, ପାଳିତ ହୋଇଥାଏ ।

ସର୍ବଭାରତୀୟ କ୍ଷେତ୍ରରେ ଏହି ଜନ୍ମାଷ୍ଟମୀ ବ୍ରତ ଅତ୍ୟନ୍ତ ଜନପ୍ରିୟ ।

**ଆଶ୍ୱିନ ମାସ :** ଆଶ୍ୱିନ ମାସର ଶୁକ୍ଳପକ୍ଷରେ ପାଳିତ ହେଉଥିବା ବୀରାଷ୍ଟମୀ ବ୍ରତ ଦେବୀ ଦୁର୍ଗାଙ୍କୁ ନିବେଦିତ । କୁହାଯାଏ-

ବୀରାଷ୍ଟମୀ ବ୍ରତଂ ଦିବ୍ୟଂ ଚତୁର୍ବର୍ଗଂ ଫଳଂପ୍ରଦଂ
ଅପୁତ୍ରାୟ ପୁତ୍ର ପ୍ରଦ ସର୍ବପାପ ହରଂ ଶୁଭଂ ।

ଚତୁର୍ବର୍ଗ (ଧର୍ମ, ଅର୍ଥ, କାମ, ମୋକ୍ଷ) ଫଳପ୍ରାପ୍ତି, ପୁତ୍ରଲାଭ ସହ ସର୍ବପାପରୁ ମୁକ୍ତ କରେ ବୀରାଷ୍ଟମୀ ବ୍ରତ । ସାଧାରଣ ଲୋକେ ମଧ୍ୟ ଏହିଦିନ ଦେବୀଙ୍କୁ ପୁଷ୍ପାଞ୍ଜଳି ନିବେଦନ କରନ୍ତି । ପଶ୍ଚିମ ଓଡ଼ିଶାରେ ଏଇ ଦିନଟିରେ ଡାଲଖାଇ ଦେବୀଙ୍କୁ ଆରାଧନା କରାଯାଇ ସର୍ବମଙ୍ଗଳ କାମନା କରାଯାଏ ।

ଡାଲ୍‌ଖାଇ ବୋ
କପାଟ ତଳେ ସିନା ସୁବର୍ଣ୍ଣ ଥାଏ
ସେଦିନ କଥା କାନ୍ତ ମନୁ ନଯାଏ
ପ୍ରଭୁକୁ ପାଇଲି ଜଲ୍‌ରେ ଥାଇ
ଛାଡ଼୍ ବୋଇଲେ ପ୍ରଭୁ ଛାଡ଼ଇ ନାହିଁ
ହେ ମହାପୁରୁ
ଥିଲା ଥିଲା ମୋର ହାତୁ ପଲାଲା ଡାଲ୍‌ଖାଇରେ ।

ଆଶ୍ୱିନ ଅମାବାସ୍ୟାର ବଜ୍ର ମହାକାଳୀ ବ୍ରତରେ ଦେବୀ ବଜ୍ର ମହାକାଳୀଙ୍କୁ ବ୍ରତଚାରିଣୀ ପୂଜା କରିଥାଏ । ଦେବୀ ସୁଖଶାନ୍ତି ଓ ପୁତ୍ରକନ୍ୟା ପ୍ରଦାନ କରନ୍ତି ବୋଲି ବିଶ୍ୱାସ ।

**କାର୍ତ୍ତିକ ମାସ :** କାର୍ତ୍ତିକ ମାସ ଆରମ୍ଭରୁ ପଚିଶ ଦିନ ପର୍ଯ୍ୟନ୍ତ ପାଳିତ ହେଉଥିବା ରାଇଦାମୋଦର ବ୍ରତ ଏକ ସର୍ବଭାରତୀୟ ବ୍ରତ । ମାସର ଶେଷ ପାଞ୍ଚଦିନ ଲକ୍ଷ୍ମୀନାରାୟଣଙ୍କୁ ପୂଜା କରାଯାଏ । ବ୍ରତକଥାରେ ହବିଷ ପାରଣା, ବାଲୁକା ପୂଜା, ଲକ୍ଷ୍ମୀନାରାୟଣଙ୍କର କଉଡ଼ି ଖେଳ ଓ ପଶାଖେଳର ଉଲ୍ଲେଖ ମିଳେ । ବ୍ରତ କଥାରେ ବର୍ଣ୍ଣନା ଅଛି -

'ସିନ୍ଧ ସୁବନ୍ୟରେ ମଣ୍ଡପ ହୀରାମାଣିକ କୋଠି
ରାଇଦାମୋଦର ଖେଳନ୍ତି ହାଥେ କଉଡ଼ି ମୁଠି,
ଏକମୁଠି ଯୁଗ ଖେଳିଲେ ରାମ ହୋଇଲେ ଧନ୍ଦା,
ହସି ବଇଦେହୀ କହନ୍ତି ଦିଅ ମୁଦିକି ବନ୍ଧା ।'

ପାଣ୍ଡବମାନଙ୍କ ବନବାସ ସମୟରେ ନୈମିଷ ଋଷି ମାତା କୁନ୍ତୀଙ୍କୁ କେଦାର ବ୍ରତ ପାଳନର ଉପଦେଶ ଦେଇଥିଲେ । ଏଇ ବ୍ରତର ଦେବତା କେଦାରନାଥ । ଏହା ସୁଖ ସମୃଦ୍ଧିର ବ୍ରତ ।

କାର୍ତ୍ତିକ ଶୁକ୍ଳପକ୍ଷ ଏକାଦଶୀରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ପାଳିତ ବ୍ରତ ପଞ୍ଚକ ବା ବିଷ୍ଣୁ ପଞ୍ଚକ ନାମରେ ବିଶେଷ ପରିଚିତ । ବୈଷ୍ଣବମାନଙ୍କ ଏହି ପର୍ବରେ ପଞ୍ଚକ ବ୍ରତକଥା, କାର୍ତ୍ତିକ ମହାତ୍ମ୍ୟ, ଜଳନ୍ଧର ବଧ ଓ ରାଇଦାମୋଦର କଥା ଇତ୍ୟାଦି ପାଠ କରାଯାଏ ।

**ପୌଷ ମାସ :** ପୌଷ ଶୁକ୍ଳ ଦଶମୀ ତିଥି ଶାମ୍ବ ଦଶମୀ ବା ସମ୍ବର ଦଶମୀ ଭାବେ ପ୍ରସିଦ୍ଧ । ଏହି ଦିନ ବିଭିନ୍ନ ପ୍ରକାର ପିଠାପଣା କରି ମାଆମାନେ ସନ୍ତାନସନ୍ତତିଙ୍କ ମଙ୍ଗଳ କାମନା ଉଦ୍ଦେଶ୍ୟରେ ସୂର୍ଯ୍ୟଦେବଙ୍କୁ ଆରାଧନା କରନ୍ତି ।

ପଶ୍ଚିମ ଓ ଦକ୍ଷିଣ ଓଡ଼ିଶାରେ କୁର୍ମୀ କ୍ଷତ୍ରିୟ ଗୋଷ୍ଠୀର ଝିଅମାନେ ମକର ସଂକ୍ରାନ୍ତି ଦିନ ଟୁଷୁ ବ୍ରତ ପାଳନ କରନ୍ତି । ଟୁଷୁ ବ୍ରତ ଓଡ଼ିଆ, ବଙ୍ଗଳା ଓ ହିନ୍ଦୀ ମିଶ୍ରିତ ଭାଷାରେ ସେମାନେ ଟୁଷୁ ଗୀତ ଗାନ କରନ୍ତି ।

ଶୁଭ୍ରକାନ୍ତି ସରସ୍ୱତୀ ଗୋ ପ୍ରଣମିମା ଚରଣେ,
ପଦ୍ମାବତୀ ସରସ୍ୱତୀ ଗୋ ବନ୍ଦେ ମନେ ମନେ ।
ଟୁଷାଲୁ ମାଏର କାଛେ ଚେୟେଲିବ ବର
ଧନ ପୁତ୍ରେ ଭରୁ ଆମାର ଘର ।

ମକର ସଂକ୍ରାନ୍ତିର କଉଡ଼ିଆ ବିନାୟକ ବ୍ରତ ସାଧାରଣରେ ଆଦୃତ ଏକ ପର୍ବ ଯାହାର ଆରାଧ୍ୟ ଦେବତା ହେଲେ ଈଶ୍ୱର ଓ ପାର୍ବତୀ ।

**ମାଘ ମାସ :** ମାଘ କୃଷ୍ଣ ଚତୁର୍ଥୀର ସଙ୍କଟ ଚଉଠି ବ୍ରତରେ ହରପାର୍ବତୀଙ୍କୁ ବିପଦରୁ ରକ୍ଷା କରିବା ପାଇଁ ପୂଜା କରାଯାଏ । ମାଘ ମାସ ପ୍ରତି ରବିବାର ଦିନ ପାଳିତ ହେଉଥିବା ଅର୍ଥଉଦିଆ ରବିବାର ବ୍ରତ ଅନ୍ୟ ଏକ ଦାରିଦ୍ର୍ୟମୋଚନ ବ୍ରତ ।

ଏକ ଯୋଗଜ ବ୍ରତ ଭାବେ କାମାକ୍ଷୀ ବ୍ରତ ଅନ୍ୟତମ । ଏହାର ବ୍ରତକଥାରେ ଅଛି :

କାମାକ୍ଷୀ ବୋଲି ଅଛି ଯେ ଗୋଟି ଏକ ବ୍ରତ,
ସେ ବ୍ରତ କରିଲେ ଧର୍ମ ହୋଇବ ପ୍ରାପତ ।
ମାଘ କୃଷ୍ଣ ତ୍ରୟୋଦଶୀ ତିଥି ହିଁ ପବିତ୍ର,
ବୃହସ୍ପତି ବାର ଯେ ପୁଣି ପୁଷ୍ୟା ଯେ ନକ୍ଷତ୍ର ।

**ଫାଲଗୁନ ମାସ :** ଫାଲଗୁନ କୃଷ୍ଣ ଚତୁର୍ଦ୍ଦଶୀର ଶିବରାତ୍ରୀର ବ୍ରତ ବା ଜାଗର ଅନ୍ୟତମ ପ୍ରସିଦ୍ଧ ଶୈବ ବ୍ରତ ରୂପେ ଭାରତବିଦିତ ।

**ଚୈତ୍ର ମାସ :** ଶାନ୍ତି ପର୍ବରେ ଭୀଷ୍ମ ଯୁଧିଷ୍ଠିରଙ୍କୁ ଏକାଦଶୀ ପାଳନ କରିବା ପାଇଁ ଉପଦେଶ ଦେଇଥିଲେ । କାରଣ ଏକାଦଶୀ ଧାର୍ମିକର ବ୍ରତ । ଏହାର ଦେବତା ବିଷ୍ଣୁ ଓ ଏହି ବ୍ରତ ମୂଳତଃ ନିଷ୍କାମ ଓ ନିତ୍ୟବ୍ରତ ଯେଉଁଥି ପାଇଁ ଏହା ଉପବାସ ଶ୍ରେଣୀରେ ଅନ୍ତର୍ଭୁକ୍ତ । କିନ୍ତୁ ଚୈତ୍ର କୃଷ୍ଣପକ୍ଷର ପାପମୋଚନୀ ଏକଦଶୀ ଓ ଶୁକ୍ଳପକ୍ଷର କାମନା ଏକାଦଶୀ ଦିବ୍ୟମୁକ୍ତି କାମନାରେ ବ୍ରତ ଆକାରେ ପାଳନ କରାଯାଏ ।

### ଅନ୍ୟାନ୍ୟ ବାରମାସୀ ବ୍ରତ

ରବିବାର ଦିନ ଏକାଦଶୀ ପଡ଼ିଲେ ସୂର୍ଯ୍ୟଙ୍କ ଉଦ୍ଦେଶ୍ୟରେ ପାଳନ କରାଯାଏ ରବିନାରାୟଣ ବ୍ରତ । ଏହା ଏକ ଯୋଗଜ ବ୍ରତ ।

ରବିବାର ଏକାଦଶୀ ହେଲେରେ ନନ୍ଦନ
ରବି ନାରାୟଣ ବ୍ରତ ହୁଅଇ ସେଦିନ ।
କଲେ ତାହା ପଞ୍ଚ ମହାପାତକ ସହିତେ
ସବୁ ପାପ ଲୋପ ହୁଏ ବୁଝ ଧୀର ଚିତ୍ତେ ।

ଶୁଦ୍ଧକାଳ ଓ ଶୁଭଦିନରେ ମଙ୍ଗଳବାର ଦିନ ସଂକ୍ରାନ୍ତି ପଡ଼ିଲେ ପାଳିତ ହୁଏ ମଙ୍ଗଳ ସଂକ୍ରାନ୍ତି ବ୍ରତ । ଗୁରୁବାର ଦିନ ପଞ୍ଚମୀ ପଡ଼ିଲେ ଗୁରୁପଞ୍ଚମୀ ବ୍ରତ ପାଳନ କଥା ପଦ୍ମପୁରାଣରେ ଉଲ୍ଲେଖ ରହିଛି ।

ଅନ୍ୟ ଏକ ଯୋଗଜ ବ୍ରତ ଭାବେ ଗୁରୁବାର ଦିନ ସୂର୍ଯ୍ୟ ଉଦୟ ବେଳକୁ ଶୁକ୍ଳପକ୍ଷ ଏକାଦଶୀ ତିଥି ପଡ଼ିଲେ ପାଳନ କରାଯାଏ ଲକ୍ଷ୍ମୀନାରାୟଣ ବ୍ରତ । ବ୍ରତ କଥାରେ ଅଛି :

ପଞ୍ଚ ଉପଚାରରେ ଭକ୍ତିରେ ପୂଜିବ
ଦୁର୍ବାକ୍ଷତ ଦେଇ ପ୍ରାର୍ଥନା କରିବ ।
ଦଶସୂତ୍ର ଦଶ ଗଣ୍ଠିଯୁକ୍ତ ଡୋର
କୁଙ୍କୁମେ ତାହାକୁ କରି ମନୋହର ।
ବ୍ରତକଥା ଶୁଣି କରିବ ପ୍ରଣାମ,
ଲକ୍ଷ୍ମୀନାରାୟଣେ ହୋଇ ସ୍ଥିରମନ ।

ଉତ୍ତର ଭାରତରେ ବହୁଳ ପାଳିତ ହେଉଥିବା ସନ୍ତୋଷୀମା ବ୍ରତ ଏବେ ଓଡ଼ିଶାରେ ଏକ ନିୟମିତ ବ୍ରତରେ ପରିଣତ ହୋଇସାରିଛି । ପ୍ରତି ଶୁକ୍ରବାର ପାଳିତ ହେଉଥିବା ବ୍ରତଟି ଭାରତୀୟ ସାଂସ୍କୃତିକ ବିନିମୟର ଏକ ବଳିଷ୍ଠ ଉଦାହରଣ ।

ମାସର ଯେକୌଣସି ବାରରେ ପାଳନ କରାଯାଉଥିବା ନିରାକୁଳି ବ୍ରତରେ କଳସ ସ୍ଥାପନ କରି ପଞ୍ଚ ସଧବାଙ୍କୁ ନିମନ୍ତ୍ରଣ କରି ଏଇ ବ୍ରତ ପାଳନ କରାଯାଏ । ସେହିପରି କୌଣସି ନିର୍ଦ୍ଦିଷ୍ଟ ସମୟ ନଥାଇ ସ୍ୱାମୀ ଉଦ୍ଧାର ବ୍ରତ ମଧ ପାଳନ କରାଯାଏ । ଏହାର ଆଖ୍ୟାୟିକାରୁ ମନେହୁଏ କଳ୍ପନାର ପ୍ରାବଲ୍ୟରୁ ବ୍ରତଟିଏ ପ୍ରଚାର କରିବାର ଆକସ୍ମିକ ପ୍ରୟାସରୁ ବୋଧହୁଏ ଏହାର ସୃଷ୍ଟି ।

ସିଂହଭୂମ ଅଞ୍ଚଳରେ ବସବାସ କରୁଥିବା ଓଡ଼ିଆ କୁମ୍ଭାରମାନେ ପାଳନ କରନ୍ତି ଶିରୀସୁନାଥୀ ବ୍ରତ । ଏଥିରେ ବଡ଼ମା ଠାକୁର, ଗାଁ ଶିରୀ ଠାକୁରାଣୀ, ଖିଚିଙ୍ଗେଶ୍ୱରୀ, ଝୁମୁକେଶ୍ୱରୀ, ସମଲେଶ୍ୱରୀ, ମହାମାୟୀ କାଳିକାଙ୍କୁ ଆବାହନ କରାଯାଏ ।

ମାର୍ଗଶିର କୃଷ୍ଣପଞ୍ଚମୀ କୁମ୍ଭାରମାନଙ୍କର କୁରାଳ ପଞ୍ଚମୀ ବ୍ରତ ଭାବରେ ଖ୍ୟାତ । ଦୀନକୃଷ୍ଣଙ୍କ ରଚିତ କୁରାଳ ପୁରାଣରେ ୨୦୯୫ ପଦ, ୧୩୦ ଶ୍ଳୋକ ଓ ୫୦ଟି ମନ୍ତ୍ର ଅଛି । ଏଥିରେ ବ୍ରତକଥା ସ୍ୱତନ୍ତ୍ର ଭାବରେ ରଚିତ ହୋଇନଥିଲେ ମଧ ମୂଳକଥାଟିକୁ ପରବର୍ତ୍ତୀ କାଳରେ ପୁରାଣ ଭାବରେ ରଚନା କରିବାର ପ୍ରୟାସ ହୋଇଛି ।

ଗୀତାର ଷଷ୍ଠ ସ୍କନ୍ଦର ଅଷ୍ଟାଦଶ ଓ ଊନବିଂଶ ଅଧ୍ୟାୟରେ ପୁଂସବନ ବ୍ରତ କଥାର ଉଲ୍ଲେଖ ରହିଛି । ଜଗନ୍ନାଥ ଦାସ ତାହାକୁ ନିମ୍ନମତେ ଅନୁବାଦ କରିଛନ୍ତି -

ପ୍ରଥମ ମାର୍ଗଶିର ମାସ
ଶୁକ୍ଳ ପ୍ରତିପଦ ଦିବସ,
ଭର୍ତ୍ତାର ଆଜ୍ଞା ପରିମାଣେ
ବ୍ରତ କରିବ ସ୍ଥିରିଜରେ,
ବ୍ରତ ଦିଏ ସର୍ବ ସିଦ୍ଧି
ଆଦର କଲେ ଯଥାବିଧି ।

ଏହାଛଡ଼ା ଓଡ଼ିଶାର ପୁରପଲ୍ଲୀ, ସହରବଜାରରେ ସତ୍ୟନାରାୟଣ ଓ ସତ୍ୟପୀରଙ୍କୁ ଅଭେଦ କଳ୍ପନା କରି ସତ୍ୟନାରାୟଣ ବ୍ରତ ଓ ପାଲା କରାଯାଏ । ସ୍କନ୍ଦପୁରାଣର ଭେଦଖଣ୍ଡରେ ଏହି ବ୍ରତର ବର୍ଣ୍ଣନା ରହିଛି ଯାହା ଯେକୌଣସି ଦିନ ପାଳନ କରାଯାଇପାରେ ।

### ଓଷା ବର୍ଣ୍ଣନା

ଓଡ଼ିଶାର ଧର୍ମଧାରାରେ ଆରାଧିତ ବହୁ ଦେବଦେବୀ କାଳକ୍ରମେ ଗଣେଶ, ଭାସ୍କର, ଶିବ, ଦୁର୍ଗା, ବିଷ୍ଣୁ - ଏଇ ପଞ୍ଚଦେବତା ଉପରେ ପର୍ଯ୍ୟବସିତ ହୋଇଛନ୍ତି । ଓଡ଼ିଶାର ସାମାଜିକ ଜୀବନରେ ଶାକ୍ତଧର୍ମର ବ୍ୟାପକ ପ୍ରଭାବ ଫଳରେ ପରବର୍ତ୍ତୀ ସମୟରେ ଶକ୍ତି ବା ଦେବୀଙ୍କ ପାଇଁ ବିଭିନ୍ନ ଉପବାସ, ବ୍ରତ ଏବଂ ଓଷା ସୃଷ୍ଟି ହୋଇ ବିଭିନ୍ନ ଗୋଷ୍ଠୀଦ୍ୱାରା ପାଳିତ ହେବାର ସୂଚନା ମିଳେ ।

ଏବେ ଦେଖିବା ଆମ ସଂସ୍କୃତିରେ ଆଦୃତି ଲାଭ କରିଥିବା କିଛି ଓଷାର କଥା । ବ୍ରତ ପରି ଓଷାର ପୂଜାନୁଷ୍ଠାନରେ ମଧ୍ୟ କଥନ ଓ ପଠନ ସମାହିତ ହୁଏ । ଏଥିରେ ଥାଏ ଓଷାର ମହାତ୍ମ୍ୟ ସହିତ ପାଳନ ବିଧି । ଓଷେଇତି ଭକ୍ତି ଓ ବିଶ୍ୱାସର ସହିତ ପୂଜା କରି ଫଳପ୍ରାପ୍ତି ଆଶା ରଖେ ।

**ବୈଶାଖ ମାସ :** ବୈଶାଖ ମାସ ଶୁକ୍ଳପକ୍ଷ ଶନିବାରରେ ପାଳନ କରାଯାଉଥିବା ଶନି ଓଷା ବା ତୋଟା ଓଷାରେ ଶନିଶ୍ଚର ଦେବତାଙ୍କୁ ଅନିଷ୍ଟନାଶୀ ଓ ଇଷ୍ଟକାରୀ ଶକ୍ତି ରୂପେ ପୂଜା କରାଯାଏ ।

**ଭାଦ୍ର ମାସ :** ବିଭିନ୍ନ ଜନପ୍ରିୟ ଓଷା ଭିତରୁ ଝିଅମାନଙ୍କଦ୍ୱାରା ପାଳିତ ହେଉଥିବା ଖୁଦୁରୁକୁଣୀ ଓଷା ଏକ ସର୍ବାଧିକ ପାଳିତ ଓଷା । ଭାଦ୍ର ମାସର ପ୍ରତି ରବିବାର ଦିନ ଏହା ପାଳିତ ହୁଏ । ଏଥିରେ ଦେବୀଙ୍କ ମୂର୍ତ୍ତି ପୂଜା କରାଯାଏ । ତରୁଣୀମାନେ ବିଭିନ୍ନ ଦଳରେ ବିଭକ୍ତ ହୋଇ ଖୁଦୁରୁକୁଣୀ ପାଳନ କରିବା ଅବସରରେ ନିଜ ନିଜର ଭାଲୁକୁଣୀ ବା ଦେବୀଙ୍କୁ ପ୍ରଶଂସା କରି ଅନ୍ୟଦଳର ଉପାସିତ ଦେବୀଙ୍କୁ ସମାଲୋଚନା କରନ୍ତି ।

ଆମ ଭାଲୁକୁଣୀ ଖାଏ ଖିରି
ତୁମ ଭାଲୁକୁଣୀ ବାଟ ହଗୁରୀ
ଆମ ଭାଲୁକୁଣୀ ରାଣୀ
ତୁମ ଭାଲୁକୁଣୀ ବାଉଁଶ କଣି
ଆମ ଭାଲୁକୁଣୀ ବେକରେ ମାଳି
ତୁମ ଭାଲୁକୁଣୀ ତ୍ରିପଣ୍ଡ କାଳି
ଆମ ଭାଲୁକୁଣୀ ମୁଣ୍ଡରେ ବେଣୀ
ତୁମ ଭାଲୁକୁଣୀ ମୁଣ୍ଡ ଉକୁଣୀ ।

ଭାଦ୍ର ମାସ ପ୍ରତି ବୁଧବାର ସନ୍ଧ୍ୟାରେ ପାଳିତ ବୁଧେଇ ଓଷା, ଦେବୀ ପୂଜାର ଅନ୍ୟ ଏକ ଉଦାହରଣ ।

ଭାଦ୍ରବ ମାସ ବୁଧବାର ଦିନ
କହିବୁ ବୁଧେଇ ଓଷାର ବିଧାନ,
ବିବିଧ ଉପହାର ଦ୍ରବ୍ୟ ବାଢ଼ି
ଲାଗି କରାଇବୁ ମୋ' ନାମ ପଢ଼ି ।

ଭାଦ୍ରପଦର ଶୁକ୍ଳ ଷଷ୍ଠୀ ଷଠୀ ଓଷାର ଦିନ । ଷଠୀ ଠାକୁରାଣୀ ତୁଷ୍ଟ ହେଲେ ସନ୍ତାନର ମଙ୍ଗଳ । ତେଣୁ ସନ୍ତାନର ଶୁଭ କାମନା କରି ମାଆମାନଙ୍କର ଏହି ଓଷା ଭକ୍ତି ସମାଜର ସବୁସ୍ତରରେ ପରିଚିତ ।

ଭାଦ୍ରପଦ ଶୁକ୍ଳ ଷଷ୍ଠୀଠାରୁ ଏକୋଇଶ ଦିନ ଯାଏ ପାଳିତ ମଘା ଓଷା ମଧ୍ୟ ଏକ ଲୌକିକ ଓଷା । ଲକ୍ଷ୍ମୀନାରାୟଣ ଏହାର ଦେବତା ।

ଭାଦ୍ର ମାସ ଶେଷ ବୁଧବାର ଦିନ ରାତି ଅଧରେ ଶିବପାର୍ବତୀଙ୍କ ଉଦ୍ଦେଶ୍ୟରେ ନିବେଦିତ ଚାଉଳଭଜା ଓଷା, ଭାଦ୍ର ପୂର୍ଣ୍ଣିମା ଦିନ ସ୍ତ୍ରୀମାନେ ପତିସୋହାଗିନୀ ହେବା ପାଇଁ କରୁଥିବା ଭୋଦୁଆ ଭୋଦେଇ ଓଷା ଏବେ ପ୍ରାୟ ଲୋପ ପାଇବାକୁ ବସିଲାଣି ।

**ଆଶ୍ୱିନ ମାସ :** ଭାଦ୍ର ପୂର୍ଣ୍ଣିମାଠାରୁ ଆଶ୍ୱିନ ପୂର୍ଣ୍ଣିମା ପର୍ଯ୍ୟନ୍ତ କୁମାରୀମାନେ ତୁଳସୀ ଦେବୀଙ୍କ ନିକଟରେ ପାଳନ କରନ୍ତି ଜହ୍ନି ଓଷା । କାଠପିଢ଼ାରେ ଜହ୍ନି ଫୁଲ ସଜାଇ ଗାଁରେ ଘରେ ଘରେ ବୁଲି ସେମାନେ ଗାଆନ୍ତି -

ଜହ୍ନି ଆଞ୍ଜୁଳି ଗୋ ଜହ୍ନି ଆଞ୍ଜୁଳି
ନିତି ମାଗଉଁ ସାତ ଆଞ୍ଜୁଳି,
ସାତ ଆଞ୍ଜୁଳିକି ପୂରାଇଦେବ
ବଡ଼ ଘରେ ଯାଇ ବୋହୂ ହୋଇବ
କାନକୁ ସୁନା ପେଡ଼ିକୁ କନା
ବାରବରଷର ଧାନ ପୁରୁଣା
କାଖେ ପୁଅ ପଣନ୍ତେ ଝୁଅ
ଜୀବ ଥିଲା ଯାକେ ଅହ୍ୟ ରୁହ
ମରିଗଲେ ବୈକୁଣ୍ଠକୁ ନିଅ ।

ଜହ୍ନି ଓଷାର ଏଇ ପଦଗୁଡ଼ିକରୁ ଫୁଟି ଉଠେ ଉତ୍କଳୀୟ ନାରୀ ମନର ଏକ ସୁଖମୟ କାମନାର ଚିତ୍ର ।

ଜହ୍ନି ଓଷା ସହ ଆଶ୍ୱିନ ଅଷ୍ଟମୀଠାରୁ ଦଶମୀ ପର୍ଯ୍ୟନ୍ତ ପାଳିତ ହେଉଥିବା ନେତ ଓଷା ବାଡୁଅ ଝିଅ ଓ ନବବଧୂଙ୍କ ଓଷା ଲେଖାଯାଇଛି-

ଏବଣ ମାସ କି ସେବଣ ମାସ
ଅଶିଣ ମାସର ନେତ ଉପାସ,
ଆସ ଆସ ପାରବତୀ ଦେଉଳୁ ଓହ୍ଲାଇ
ସୁବର୍ଣ୍ଣର କୁମ୍ଭ ଗୋଟି ଥାପିଛି ଏଠାଇ
ସୁବର୍ଣ୍ଣର କୁମ୍ଭ ଗୋଟି ନୁହେଁ ଭାରଜନ
କଣ୍ଟିଆଳ କାକୁଡ଼ିରେ ପଶିଲି ଶରଣ ।

ଏହାଛଡ଼ା ଶ୍ରାବଣ, ଭାଦ୍ରବ, ଆଶ୍ୱିନ ଓ କାର୍ତ୍ତିକ - ଏଇ ଚାରିମାସର ପ୍ରତି ଗୁରୁବାର ଦିନ ଚାତୁର୍ମାସ୍ୟା ଗୁରୁବାର ଓଷାରେ ଗୃହଲକ୍ଷ୍ମୀମାନେ ଲକ୍ଷ୍ମୀନାରାୟଣ ପୂଜା କରନ୍ତି । ଏହି ଓଷାର ପ୍ରଚଳନ ସାଧାରଣରେ ଅଧିକ ।

ଆଶ୍ୱିନ କୃଷ୍ଣପକ୍ଷ ଅଷ୍ଟମୀର ଦୂତୀବାହନ ଓଷା ଗାଁଗହଳରେ ବିଶେଷ ପରିଚିତ । ଏଥିରେ ଦଧିବାମନ ବା ଦ୍ୱିତୀୟ ବାମନଙ୍କୁ ପୂଜା କରି ମାଆମାନେ ସନ୍ତାନର ଆୟୁ କାମନା କରନ୍ତି । ଏହି ଅଷ୍ଟମୀକୁ ଅନେକେ ମୂଳାଷ୍ଟମୀ ମଧ୍ୟ କହିଥାନ୍ତି ।

ଆଶ୍ୱିନ କୃଷ୍ଣ ଅଷ୍ଟମୀର ପୁଅ ଜୀଉନ୍ତିଆ ଓଷା ଏବଂ ଆଶ୍ୱିନ ଶୁକ୍ଳ ଅଷ୍ଟମୀର ଭାଇଜୀଉନ୍ତିଆ ଓଷା ପଶ୍ଚିମ ଓଡ଼ିଶାରେ ସର୍ବତ୍ର ଆଦୃତ । ତେଣୁ କୁହାଯାଇଛି-

କହିଲେ ଜନନୀ ଆଜିଲୋ ମହା ଅଷ୍ଟମୀ ବ୍ରତ<br>
ଉପବାସେ ଦୁର୍ଗା ପୂଜିଲେ ହୁଏ ଭାଇର ହିତ ।<br>
ଭଉଣୀର ଭାଇ ଭରସା କଥା ସଂସାରେ ଅଛି<br>
ଭାଇ ସୁଖେ ଥିଲେ ତୋଅର ଊଣା ନୋହିବ କିଛି ।

ଆଶ୍ୱିନ ଅମାବାସ୍ୟାକୁ ଅନେକେ ଫୁଲେରୀ ଓଷା ଭାବରେ ପାଳନ କରନ୍ତି । କିଛି ସ୍ଥାନରେ ଏହା ବକ୍ରମହାକାଳୀ ବ୍ରତ ରୂପେ ପାଳିତ ହେଉଥିବା ବେଳେ ସାଧାରଣ ଭାବେ ଫୁଲେରୀ ଓଷା ରୂପେ ପାଳନ କରାଯାଏ ।

ଆଶ୍ୱିନ ଶୁକ୍ଳପକ୍ଷ ମଙ୍ଗଳବାର ଦିନ ନିଶାର୍ଦ୍ଧରେ ସାଧବମାନେ ସାଧବତ୍ୱ, ସନ୍ତାନ ଓ ଧନଧାନ୍ୟ କାମନା କରି ନିଶା ମଙ୍ଗଳବାର ଓଷା କରନ୍ତି । ସର୍ବମଙ୍ଗଳା ଏହାର ଆରାଧ୍ୟ ଦେବୀ । ସେହିପରି କୁମାର ପୂର୍ଣ୍ଣିମାଠାରୁ ଦୋଳପୂର୍ଣ୍ଣିମା ପର୍ଯ୍ୟନ୍ତ ଷୋଳପାଳି ମଙ୍ଗଳବାର ଓଷା ଅନ୍ୟ ଏକ ଲୌକିକ ଓଷା ।

ମାର୍ଗଶିର ଗୁରୁବାରମାନଙ୍କରେ ଲକ୍ଷ୍ମୀଙ୍କର ପ୍ରତୀକ ଭାବେ ଧାନମାଣଟିଏ ସ୍ଥାପନ କରି ପୂଜା କରିବାର ବିଧି ଓଡ଼ିଶାର ନିଜସ୍ୱ ସଂସ୍କୃତି । ପ୍ରଚଳିତ ଲକ୍ଷ୍ମୀପୂଜା ଓ ବିଧିଠାରୁ ଏହା ସମ୍ପୂର୍ଣ୍ଣ ଭିନ୍ନ । ଏହାକୁ ଧାନମାଣିକା ଓଷା କୁହାଯାଏ ।

**କାର୍ତ୍ତିକ ମାସ :** କାର୍ତ୍ତିକ ଶୁକ୍ଳ ଚତୁର୍ଥରେ ପାଳିତ ନାଗଲ ଚଉଠି ଓଷାରେ ପିଙ୍ଗଳ ନାଗ ପୂଜା କରିବାର ବିଧି ଅନେକ ପ୍ରାଚୀନ କାରଣ ଧନ, ଜନ, ଆୟୁଷ ଓ ବର୍ଷାର ପ୍ରତୀକ ଭାବେ ସର୍ପଦେବୀ ସର୍ବତ୍ର ଗୃହୀତ । ଏହି ପ୍ରସଙ୍ଗରେ ଓଲଡ଼୍ହାମ 'ଦି ସନ୍ ଆଣ୍ଡ୍ ଦି ସର୍ପେଣ୍ଟ' ପୁସ୍ତକରେ ଦର୍ଶାଇଛନ୍ତି ଯେ ସୂର୍ଯ୍ୟ ଓ ସର୍ପକୁ ପୂଜା କରିବାର ପରମ୍ପରା ଅତୀବ ପ୍ରାଚୀନ ।(୧୯)

ମହାନଦୀ ଗର୍ଭରେ ଥିବା ଧବଳେଶ୍ୱର ପୀଠରେ କାର୍ତ୍ତିକ ପୂର୍ଣ୍ଣିମା ଦିନ ପାଳିତ ବଡ଼ଓଷାରେ ମାନସିକ ରଖି ଧବଳେଶ୍ୱରଙ୍କୁ ପୂଜା କରାଯାଏ । 'ବଡ଼ଓଷା' କଥାରେ ଅଛି -

ଯେ କରିବ ଏହି ଉପାସ ଏକା<br>
ନଥାଇ ତାହାକୁ ଭୟରେ ଦକା<br>
ଅପୁତ୍ରିକ ଜନ ଲଭଇ ପୁତ୍ର<br>
କୁଳକୁ ସେ ପୁଅ ଚନ୍ଦ୍ରମା ମତ<br>
ନିର୍ଧନ ଲୋକ ଯେ ଧନୀ ହୁଅଇ<br>
ମୂର୍ଖ ଯେ ପଣ୍ଡିତ ବିଦ୍ୟାକୁ ପାଇ ।

**ମାର୍ଗଶିର ମାସ :** ମାର୍ଗଶିର ମାସ କୃଷ୍ଣପକ୍ଷ ଅଷ୍ଟମୀ ବା ନବମୀର କାଞ୍ଜିଅଁଳା ଓଷାରେ ଓଷେଇତିମାନେ ସଞ୍ଜବେଳେ ଏକତ୍ର ହୋଇ କାଞ୍ଜି ଭୋଗ ହିସାବରେ ଦିଅନ୍ତି । ଷଠୀ ଦେବୀ ଏହାର ଆରାଧ୍ୟ ଦେବୀ ।

ମାର୍ଗଶିର ମାସର ପ୍ରଥମ ବୁଧବାରଠାରୁ ଯେଉଁ ମାସରେ ତ୍ରୟୋଦଶ ପାଳି ସରେ ସେହି ମାସର ବୁଧବାର ଦିନ ପର୍ଯ୍ୟନ୍ତ ବୁଧମଙ୍ଗଳବାର ଓଷା ପାଳନ କରାଯାଏ । ମାର୍ଗଶିର, ମାଘ, ବୈଶାଖ, ଆଶ୍ୱିନ, ଚାରିମାସର ପ୍ରତ୍ୟେକ ମଙ୍ଗଳବାରରେ ପାଳିତ ଉତ୍ତରାୟଣୀ ମଙ୍ଗଳବାର ଓଷା ଅନ୍ୟ ଏକ ପ୍ରଚଳିତ ଓଷା ।

ମାର୍ଗଶିର ଗୁରୁବାରମାନଙ୍କରେ ଲକ୍ଷ୍ମୀଙ୍କର ପ୍ରତୀକ ଭାବେ ଧାନମାଣଟିଏ ସ୍ଥାପନ କରି ପୂଜା କରିବାର ବିଧି ଓଡ଼ିଶାର ନିଜସ୍ୱ ସଂସ୍କୃତି । ପ୍ରଚଳିତ ଲକ୍ଷ୍ମୀପୂଜା ଓ ବିଧିଠାରୁ ଏହା ସମ୍ପୂର୍ଣ୍ଣ ଭିନ୍ନ । ଏହାକୁ ଧାନମାଣିକା ଓଷା କୁହାଯାଏ ।

ମାର୍ଗଶିର ପୂର୍ଣ୍ଣିମାଠାରୁ ଆରମ୍ଭ କରି ପ୍ରତିମାସ ପୂର୍ଣ୍ଣିମାରେ ଚନ୍ଦ୍ରପୂଜା ପାଇଁ ଅନେକେ ପୂର୍ଣ୍ଣିମା ଓଷା ମଧ୍ୟ ପାଳନ କରନ୍ତି ।

ଯମଦଣ୍ଡରୁ ରକ୍ଷା ପାଇବା ଓ ପୁତ୍ରଲାଭ ନିମିତ୍ତ ମାର୍ଗଶିର ପୂର୍ଣ୍ଣିମା ଦିନ ପାଳିତ ହୋଇଥାଏ ପଣ୍ଡୁ ଓଷା ।

**ମାଘ ମାସ :** ବାଟ ଓଷାରେ ମଧ୍ୟ ଯମଦେବଙ୍କୁ ପୂଜା କରାଯାଏ । ମାଘ କୃଷ୍ଣପକ୍ଷରୁ ପଣ୍ଡୁ ପୂର୍ଣ୍ଣିମା ଯାଏ ତୃତୀୟ, ସପ୍ତମ ଓ ନବମ ଦିନ ଯମଙ୍କର ସନ୍ତୋଷ ବିଧାନ ପାଇଁ ବାଟଓଷା ପାଳନ କରାଯାଏ ।

**ପୌଷ ମାସ :** ଓଡ଼ିଶାର ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ମାତାମାନେ ପିଲାଙ୍କ ପାଇଁ ପୌଷ କୃଷ୍ଣ ତୃତୀୟା ଦିନ ଦାଣ୍ଡପହଁରା ଓଷା ପାଳନ କରନ୍ତି । ଧନାଗମ, ପୁତ୍ରପ୍ରାପ୍ତି, ସୌଭାଗ୍ୟ ପାଇଁ ଧନୁସଂକ୍ରାନ୍ତିରୁ ମକର ସଂକ୍ରାନ୍ତି ପର୍ଯ୍ୟନ୍ତ ପ୍ରତି ରବିବାର ସକାଳ ସୂର୍ଯ୍ୟୋଦୟ ବେଳେ ଅଲଣା ଓଷା ନାମକ ଅନ୍ୟ ଏକ ଲୌକିକ ଓଷାର ପ୍ରଚଳନ ଓଡ଼ିଶାର ପୁରପଲ୍ଲୀରେ ଦେଖିବାକୁ ମିଳେ ।

**ଚୈତ୍ର ମାସ :** ଚୈତ୍ର ମାସ ପ୍ରତି ରବିବାର ଦିନ ଓଡ଼ିଶାର କିଛି ଅଞ୍ଚଳରେ ବାଡୁଅ ଝିଅମାନେ ଖୁଦୁରୁକୁଣୀ ଓଷା ପରି ପାଳନ କରନ୍ତି ଖରଖରୀ ଓଷା । ଉତ୍ତମ ସ୍ୱାମୀ ପ୍ରାପ୍ତି ଓ ଚୈତ୍ର ମାସରେ ବର୍ଷା ପାଇଁ ଏହି ଓଷାରେ ନିବେଦନ କରାଯାଏ । ଖରଖରୀ ଗୋଟିଏ ଲତାର ନାମ । ଏହି ଓଷାରେ ଚପଳ ସ୍ୱଭାବର ଝିଅମାନେ ଖରଖରୀ ଗଛମୂଳରେ ଚାନ୍ଦୁଆ ଟାଣି ଓଷା ପୂଜା ଓ ଗୀତ ବୋଲନ୍ତି ।

ଖରଖରୀ ଲୋ ଖରଖରୀ ଦିଅଁ ବରଷଇ ପାଣି<br>
ଆଡ଼ପଟେ ମାଡ଼ିଗଲା ଟଭା ନଇକାଣୀ<br>
କାଶୀ ମାଆଗୋ କାଶୀମାଆ ସର୍ବଶୁଭେ ଥା<br>
ରାତ୍ର ପାଇଲେ ମା' ଗୋ ଘୋଡ଼ା ବୋଦା ଖା ।

ଏହାଛଡ଼ା ଚୈତ୍ର ମଙ୍ଗଳବାର ଓଷା, ପଛେଇ ମଙ୍ଗଳବାର ଓଷା (ଚୈତ୍ରମାସ) କେତେକ ସ୍ଥାନରେ ସାମାନ୍ୟ ପରିବର୍ତ୍ତନରେ ପାଳନ କରାଯାଏ । ଯୋଗୀନ୍ଦ୍ର ଦୈବଜ୍ଞ ବିପ୍ରଙ୍କ ରଚିତ 'ଟୀକା ଗୋବିନ୍ଦ ଚନ୍ଦ୍ର'ରେ ଦାଣ୍ଡପହଁରା ଓଷା, ଚୈତ୍ର ମଙ୍ଗଳବାର ଓଷା ଏବଂ ପଛେଇ ଓଷାର ବର୍ଣ୍ଣନା ରହିଛି ।(୨୦) ତୋହରି ପାଇଁ କୁମରମଣିରେ କେତେ କଷ୍ଟ କରି ନାହିଁ, ଦାଣ୍ଡ ଖରକଇ ଚଉରା ଲିପଇ ଶତପୁତ୍ର ହେବା ପାଇଁ, ତୋହରି ପାଇକି କୁମରିମଣିରେ ଚଇତ୍ର ମଙ୍ଗଳବାର, ବାରବର୍ଷ ପରିଯନ୍ତରେ କୁମର ବସି ଜାଳିଲି ଜାଗର, ତୋହିର ପାଇଁକି କୁମରମଣିରେ ଦାଣ୍ଡ ପଛାଇ ପୂଜିଲି ।

**ଅନ୍ୟାନ୍ୟ ଓଷା**

ଥରେ ପରୀକ୍ଷିତ ରାଜା ଶୁକମୁନିଙ୍କୁ ପଚାରିଲେ :

ଚନ୍ଦ୍ରରିଷ୍ଟ ପଡ଼ିଥାଇ ଯାର ପୁତ୍ରପ୍ରତି<br>ଅଳ୍ପଦିନେ ନାଶଯାନ୍ତି ଦୈବଜ୍ଞ କହନ୍ତି ।<br>ସେଥିରୁ ଉଦ୍ଧାର କେହ୍ନେ ପାଇବେ ସେମାନେ<br>ତହିଁର କାରଣ କହି ତୋଷକର ମନ ।

ଶୁକଦେବ ତାଙ୍କୁ ଉପଦେଶ ଦେଇ ଶୁକ୍ଳ ଦ୍ୱିତୀୟା ତିଥିରେ ଚନ୍ଦ୍ରପୂଜାର ଆୟୋଜନ କରିବାକୁ କହିଥିଲେ କାରଣ ଏହାଦ୍ୱାରା ଚନ୍ଦ୍ରରିଷ୍ଟ ଶାନ୍ତ ହୁଏ । ସେଥିପାଇଁ ଦ୍ୱିତୀୟା ଓଷା ଚନ୍ଦ୍ରପୂଜା ସହ ସଂପୃକ୍ତ । ସେହିପରି ଅନେକେ ଚନ୍ଦ୍ରପୂଜା ପାଇଁ ପ୍ରତି ପୂନେଇ ଓଷା କରନ୍ତି ।

ଓଡ଼ିଶାରେ ଲକ୍ଷ୍ମୀ ଉପାସନା ପାଇଁ ପାଳିତ ହୁଏ ଅନେକ ଓଷା ବ୍ରତ ଯେମିତି ସୁଦଶା ବ୍ରତ, ଗୁରୁପଞ୍ଚମୀ ବ୍ରତ, ଗୁରୁବାର ଓଷା, ଧାନମାଣିକା ଓଷା ଇତ୍ୟାଦି ।

ଉମା ମହେଶ୍ୱର ପୂଜାର ଅନ୍ୟ ଏକ ଉଦାହରଣ ହେଲା ସୁକୁଟୁନି ଓଷା ଯାହାର କୌଣସି ନିର୍ଦ୍ଦିଷ୍ଟ ତିଥି, ବାର ବା ଯୋଗ ନାହିଁ । ପାନ ଉପରେ ସିନ୍ଦୂରଦ୍ୱାରା ମୂର୍ତ୍ତି କରି ସାତ ଅହିଅଙ୍କୁ ଲୋଡ଼ିଆଣି ହଳଦୀ ପାଣିରେ ଗୋଡ଼ ଧୋଇ, ଅଳତା ସିନ୍ଦୂର ପିନ୍ଧାଇ, ଅଣ୍ଟିରେ ଅଛଡ଼ା ଖଇ, କଦଳୀ ନଡ଼ିଆ ମହାର୍ଘ୍ୟ ଦେବା ଏହି ଓଷାର ବୈଶିଷ୍ଟ୍ୟ । ଓଷେଇତି ମାନସିକ କରି ହଳଦୀ ପାଣିରେ ସାତ ଅହିଅଙ୍କ ଗୋଡ଼ ଧୋଇ ଆପଣା କାନିରେ ପୋଛି ନିଏ । ସେହି କାନିର ଧୂଳିରେ କାମନା ପୂର୍ଣ୍ଣ ହୁଏ ବୋଲି ବିଶ୍ୱାସ ଅଛି ।

ମାସର ପ୍ରତ୍ୟେକ ଶୁକ୍ଳ ଚତୁର୍ଦ୍ଦଶୀ ଦିନ ବାଳକୁମାରୀ ଓଷା ଦାଣ୍ଡ, ଅଗଣା, ଖଳାବାରିରେ ପାଳନ କରାଯାଏ । ଅଲେଖ ପରମବ୍ରହ୍ମ ଏହାର ଦେବତା । ଏହି ଓଷା ଦ୍ୱାରା ସିଦ୍ଧିଲାଭ ଓ ଯୌବନପ୍ରାପ୍ତିର ବିଶ୍ୱାସ ସାଧାରଣରେ ଅଛି ।

ଓଷାକୋଠି ନାମକ ଏକ ଓଷା ହାଡ଼ି, ଡମ ପ୍ରଭୃତି ଜାତିଙ୍କ ମଧ୍ୟରେ ପ୍ରଚଳିତ ଥିବାର ଦେଖାଯାଏ । ଶ୍ରୀୟା ଚଣ୍ଡାଳୁଣୀ ଓଷାକୋଠିର ମହିମା ପ୍ରଚାର କରିଥିଲା । ଢଣ କୋଇଲାର ମନ୍ଦ ମଧୁର ଧ୍ୱନି ସହିତ ଗାୟକ କଣ୍ଠର ଢମାଳ ଏହି ଓଷାକୁ ଉପଭୋଗ୍ୟ କରିଥାଏ । ଆଶ୍ୱିନ ଦଶମୀରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ପାଞ୍ଚଦିନ ମାନସିକ କରିଥିବା ନାରୀମାନେ ଏହି ଓଷା ପାଳନ କରିଥାନ୍ତି ।

ଉପରୋକ୍ତ ବିବିଧ ଓଷା ବ୍ୟତୀତ ବହୁ ଛୋଟ ଛୋଟ ଉପବାସ, ବ୍ରତ, ଓଷା, ରାଜ୍ୟ ତଥା ଦେଶର ବିଭିନ୍ନ କୋଣରେ ପ୍ରଚଳିତ ରହିଛି । ଲେଖାର ସୀମିତ କଳେବର ଭିତରେ ଏଗୁଡ଼ିକର ବିସ୍ତୃତ ବର୍ଣ୍ଣନା ସମ୍ଭବପର ନୁହଁ । କିନ୍ତୁ ଏଗୁଡ଼ିକ ଯେ ଆମ ସଂସ୍କୃତିରେ ଅଙ୍ଗ ହୋଇ ଲୋକ ପରମ୍ପରାର ଐତିହ୍ୟ ସୃଷ୍ଟି କରିଛି । ଏହା ବିନା ଦ୍ୱିଧାରେ ସ୍ୱୀକାର କରାଯାଇପାରେ । ଓଷା ବ୍ରତ ପୂଜାବେଳେ ଦେବଦେବୀଙ୍କୁ ଆବାହନ କରି ଗଢ଼ି ଉଠିଥିବା ବନ୍ଦନାମୂଳକ ଗୀତ ବା ମାଳାଶ୍ରୀ ବେଶ ରମଣୀୟ । ଉପର ବର୍ଣ୍ଣିତ ଆଲୋଚନାରେ ଓଷା ବ୍ରତର ମାଳାଶ୍ରୀର କିଛି କିଛି ଅଂଶ ଉଦ୍ଧୃତି ହିସାବରେ ଦିଆଯାଇଛି ।

ପ୍ରତ୍ୟେକ ପୂଜାରେ ପୂଜିତ ଦେବଦେବୀଙ୍କୁ 'ଅତ୍ରାଗଚ୍ଛ' 'ଅତ୍ରତିଷ୍ଠ', 'ମମପୂଜା ଗୃହାଣ' ଇତ୍ୟାଦି କହି ଆବାହନ କଲାପରେ ପୂଜା ଶେଷରେ 'ସ୍ୱସ୍ଥାନଂଗଚ୍ଛ' ବୋଲି କହି ବିଦାୟ ଦିଆଯାଏ । ସେହିପରି ଓଷେଇତିମାନେ ମାଳାଶ୍ରୀରେ ଦେବଦେବୀଙ୍କୁ ସେମାନଙ୍କ ମନ୍ଦିର ଓ ପୀଠସ୍ଥଳୀରୁ ପୂଜାସ୍ଥାନକୁ ଆହ୍ୱାନ କରି ଆରାଧନା କରନ୍ତି । ମାଳାଶ୍ରୀରେ ଅନେକ ସମୟରେ ନାରୀ ଓ କୁମାରୀ ମନର ଭାବନା ପ୍ରତିଫଳିତ ହୋଇଥାଏ । ସାରଳା ଦାସଙ୍କ ପରେ ଓଡ଼ିଆ ସାହିତ୍ୟରେ ମାଳାଶ୍ରୀ ଏକ ସ୍ୱତନ୍ତ୍ର ବିଭାଗ ରୂପେ ଖ୍ୟାତି ଲାଭ କରିଛି ।(୨୧)

ମାଳାଶ୍ରୀ ବ୍ୟତୀତ ମଙ୍ଗଳ ବୋଲି ଏବଂ ଓଷା ମନସା ଗୀତ ମଧ୍ୟ ବ୍ରତ ସାହିତ୍ୟର ଅବିଚ୍ଛେଦ୍ୟ ଅଙ୍ଗ । ଅନେକ ଓଷା ବ୍ରତ ସମୟରେ ଯେମିତି ଚନ୍ଦ୍ର ବନ୍ଦାପନା, ଷଠୀଘର ତିଆରି, ମଙ୍ଗଳାରୋପଣ, ଅନୁକୂଳ ବେଦୀ ନିର୍ମାଣ ସମୟରେ ମଙ୍ଗଳ ବୋଲି ଗାନ କରାଯାଏ । ଓଷା ମନସା ଗୀତକୁ ମାନସିକ ଗାନ ହିସାବରେ ଗ୍ରହଣ କରାଯାଇପାରେ । ଓଷେଇତିମାନେ ଫୁଲ ସଂଗ୍ରହ କରି ଚାଙ୍ଗୁଡ଼ିରେ ରଖନ୍ତି । ସ୍ନାନ ପରେ ଫୁଲ ଓ ଫଳ ଉପରେ ହାତ ରଖି ଗୀତରେ ମନକାମନା ପ୍ରକାଶ କରନ୍ତି ଯାହା 'ଓଷା ମନସା' ଗୀତ ନାମରେ ପରିଚିତ । ଏହି ପଦଗୁଡ଼ିକ ଛୋଟ ଛୋଟ ଓ ଚିତ୍ତାକର୍ଷକ ।

ଘିନେ ଗଉରା ! ଗଇଶ ମୁଣ୍ଡି<br>ମତେ କରିବ ସିନ୍ଦୂର ମୁଣ୍ଡି<br>ଘିନେ ଗଉର ! ଗଇଶ ମୁଣ୍ଡି<br>ମତେ କରିବ ଆଇଁଷ ତୁଣ୍ଡି,<br>ଘିନେ ଗଉରା ! ବେଲ ପତିରି<br>ମତେ କରିବ ତୁମ ଚତୁରୀ ।<br>ଘିନେ ବର କୋଳି

ଜାଳେ ଛେଲା କାଠ
ମୋ' ସ୍ୱାମୀ ନନ୍ଦ ଚାଟ
ସେ କୂଳେ ମୋ' ସଉତୁଣୀ ଥାଉ
ଏ କୂଳେ ମୋ' ଦିନ ଯାଉ ।

ଏହି ଛୋଟ ଛୋଟ ପଦଗୁଡ଼ିକ ଏତେ ନିବିଡ଼ ଭାବେ ମନକୁ ସ୍ପର୍ଶ କରିଥାଏ ଯେ କିଶୋରୀ ବା ନାରୀ ଏ ଜୀବନ ପରବର୍ତ୍ତୀ ଜୀବନର ସ୍ୱପ୍ନ ପାଇଁ ଉତ୍ତମ ମନୋଭାବ ପୋଷଣ କରିଥାଏ ।

ଓଷା ଓ ବ୍ରତ କାହାଣୀରେ ବିଭିନ୍ନ ଚରିତ୍ରର ସମ୍ମିଶ୍ରଣ ଆମର ଦୃଷ୍ଟିଗୋଚର ହୁଏ । ପ୍ରଥମେ ଆଖିକୁ ଆସେ ଦେବ ଚରିତ୍ର - ଶିବପାର୍ବତୀ, ଲକ୍ଷ୍ମୀନାରାୟଣ, ସୂର୍ଯ୍ୟ, ଚନ୍ଦ୍ର, ଗଣେଶ, ଦୁର୍ଗା, ଲକ୍ଷ୍ମୀ, କାଳୀ, ଦ୍ୱିତୀୟ ବାମନ ଇତ୍ୟାଦି ଯାହାଙ୍କୁ ଭିତ୍ତିକରି ଗଢ଼ି ଉଠେ ବ୍ରତ ଓଷାର କାହାଣୀ । ସେମାନେ ସର୍ବଶକ୍ତିମାନ । ତେଣୁ ଏହି ଐଶ୍ୱରୀୟ ଶକ୍ତିକୁ ପ୍ରାର୍ଥନା କରି ମଣିଷ ନିଜର ସୁଖ ସୌଭାଗ୍ୟ, ସମୃଦ୍ଧି, ଆୟୁ, ରୋଗମୁକ୍ତି ଆଦି ସବୁକିଛି ପ୍ରାର୍ଥନା କରିଥାଏ ।

ଓଷାବ୍ରତର ଆଖ୍ୟାୟିକାରେ ମାନବ ଚରିତ୍ରର ପ୍ରତିନିଧିତ୍ୱ କରୁଛନ୍ତି ସମାଜର ଉଚ୍ଚରୁ ନୀଚ ଯାଏଁ ସବୁଗୋଷ୍ଠୀର ଲୋକ । ସାଧବ, ମନ୍ତ୍ରୀ, ଚକୁଳିଆ ପଣ୍ଡା, ବ୍ରାହ୍ମଣ, କୈବର୍ତ୍ତ, ବାରାଙ୍ଗନା, କୁମ୍ଭାର - ଏମିତି ବିବିଧ ଚରିତ୍ରର ସମାବେଶରେ ଓଷା ଓ ବ୍ରତ ସାହିତ୍ୟ ଋଦ୍ଧିମନ୍ତ । ଏକ ଭାରସାମ୍ୟଯୁକ୍ତ ସମାଜର ଗଠନ ଓ ସ୍ଥିତାବସ୍ଥା ରକ୍ଷା କରିବାରେ ଏହାର ଭୂମିକା ଗୁରୁତ୍ୱପୂର୍ଣ୍ଣ ।

ଜୀବଜନ୍ତୁ, ପଶୁପକ୍ଷୀ ଚରିତ୍ର ମଧ୍ୟ ସମଧିକ ଆଦର ଲାଭ କରିଛନ୍ତି ଓଷାବ୍ରତରେ । ନାଗଲ ଚଉଠି ଓଷାର ନାଗପୂଜା, ପଞ୍ଚକ ବ୍ରତର ରଣି ବଣି ଚଢ଼େଇ, ବୁଧ ମଙ୍ଗଳବାର ଓଷାର ଶେଉଳ ମାଛର ଚରିତ୍ର ଆମ ସଭ୍ୟତା ଓ ସଂସ୍କୃତିର ଅନ୍ୟତମ ବିଶିଷ୍ଟ ଅଙ୍ଗ ହୋଇଛି । ସେମାନେ ମଣିଷ ପରି କଥାବାର୍ତ୍ତା କରି ନୀତିଶିକ୍ଷା ଦେବା ସହିତ ମାନବ ଜୀବନରେ ପ୍ରାଣୀଜଗତର ଭୂମିକାର ଗୁରୁତ୍ୱ ଦର୍ଶାଇଛନ୍ତି ।

ଓଷା ବ୍ରତ ଆଖ୍ୟାୟିକାରେ ଜଡ଼ଚରିତ୍ର ଓ ବୃକ୍ଷଲତା ଚରିତ୍ର ମଧ୍ୟ ଦୈବଗୁଣ ଆରୋପିତ ହୋଇ ସମାଜର ଏକ ଅଙ୍ଗ ହିସାବରେ ଗୃହୀତ ହୋଇଛନ୍ତି । ବୁଧେଇ ଓଷାର ଶିଳ ଶିଳପୁଆ, ଖରଖରୀ ଓଷାର ଖରଖରୀ ଲତା, ଜହ୍ନିଓଷାର ଜହ୍ନିଫୁଲ ଓ ଫଳ କ'ଣ ଆମ ସଂସ୍କୃତିର ବାର୍ତ୍ତାବହ । ଏହାଦ୍ୱାରା ପରିସ୍ଫୁଟ ହେଉଛି ଆମ ଲୋକ ସଂସ୍କୃତି ଏହାର ଅଧିବାସୀଙ୍କ ଉଦାର ଚେତନା ।(୨୨)

ଓଡ଼ିଶାରେ ପାଳିତ ବିଭିନ୍ନ ଉପବାସ, ଓଷା ଓ ବ୍ରତରୁ ଓଡ଼ିଆ ଖାଦ୍ୟରୁଚିର ଏକ ସୁନ୍ଦର ନମୁନା ମିଳିଥାଏ । ବଳରାମ ଦାସଙ୍କ ଲକ୍ଷ୍ମୀପୁରାଣରୁ ଜଗନ୍ନାଥ ମନ୍ଦିରର ଖାଦ୍ୟ ସଂସ୍କୃତିର ନମୁନା ପରି ଏହିସବୁ ଲୋକ ସଂସ୍କୃତି ଆମ ଖାଦ୍ୟ ରୁଚି ଉପରେ ଆଲୋକପାତ କରିଥାଏ ।

ଗର୍ଭବତୀ ନାରୀର ଗର୍ଭସଞ୍ଚାରଠାରୁ ପ୍ରସବ ପର୍ଯ୍ୟନ୍ତ ବିବିଧ ଖାଦ୍ୟରୁଚିର ଏକ ଜୀବନ୍ତ ବର୍ଣ୍ଣନା ଦାଣ୍ଡପହଁରା ଓଷାର ଆଖ୍ୟାୟିକାରୁ ମିଳିଥାଏ - ପ୍ରଥମ ମାସରେ କ୍ଷୀର ଗଇଁଠା, ଦ୍ୱିତୀୟ ମାସରେ ନେଉଟିଆ ଶାଗ, ତୃତୀୟ ମାସରେ କୋଶଳା ଶାଗ, ଚତୁର୍ଥ ମାସରେ ମୂଳା ଓ କାଞ୍ଜି, ପଞ୍ଚମ ମାସରେ ଚାଉଳଭଜା, ଷଷ୍ଠ ମାସରେ ଚକୁଳି, ସପ୍ତମରେ ମୁଗମଣ୍ଡା, ଅଷ୍ଟମରେ ମୁଗପଇତି, ନବମରେ ଘାଣ୍ଟିଅଣ, ଦଶମ ମାସରେ ମାଛ ମରିଚ ପାଣି ଆଦି । ସେହିପରି ଦୂତୀ ବାହନ ଓଷାରେ ନେଉଟିଆ ଶାଗ, କାଞ୍ଚଅଁଳା ଓଷାରେ ସାଧବ ବୋହୂର କଖାରୁ ରନ୍ଧନ, ଅଲଣା ଓଷାର ବିରି ଚାଉଳ ପିଠା, କଉଡ଼ିଆ ବିନାୟକ ବ୍ରତର ଭାତଗଇଁଠା, ତୋରାଣି ମଣ୍ଡା, ଖଜା ଓ ଫଳ, ନିତ୍ୟାନି ମହାଲକ୍ଷ୍ମୀ ଓଷାରେ ବଗଡ଼ା ଭାତ, ବିରିପଇତି, ସାଇଁଶାଗ, କାଞ୍ଜି, ଆରିଷା ପିଠା, ଭୋଜନ ପରେ ବିଡ଼ିଆ ପାନ, ସୁକୁତୁନି ଓଷାର, ଖିରି ଖେଚିଡ଼ି - ଏସବୁ ଓଡ଼ିଆ ନିଜସ୍ୱ ଖାଦ୍ୟ ସଂସ୍କୃତିର ବାର୍ତ୍ତାବହ ।(୨୩)

ଏହାଛଡ଼ା ଓଷା ଓ ବ୍ରତ କାହାଣୀରେ ସମସାମୟିକ ବେଶଭୂଷା, ଅଳଙ୍କାର, ବିବାହ ବିଧି, ଅତିଥି ସେବା, ସନ୍ତାନଜନ୍ମ ବିଧି, ଯୁଦ୍ଧଚିତ୍ର, ପୂର୍ବଜନ୍ମ ବିଶ୍ୱାସ, ବର୍ଣ୍ଣନାର ଋତୁର୍ଯ୍ୟ, ଛାନ୍ଦ, ଶୈଳୀ, ରସପ୍ରସଙ୍ଗ, ସଂଗୀତ କଥା, ଉପମା ବର୍ଣ୍ଣନା ମଧ୍ୟ ବିଶେଷ ଲକ୍ଷଣୀୟ ।

ଉପବାସ, ଓଷାବ୍ରତାଦି ଆଧ୍ୟାତ୍ମିକତାର ଭିତ୍ତିଭୂମି ଉପରେ ଆଧାରିତ । ଧର୍ମଧାରଣା, ପବିତ୍ର ଭକ୍ତିଭାବନା, ଆଚାର ପାଳନ ଇତ୍ୟାଦି ଆମର ସାମାଜିକ ଜୀବନଧାରାରେ ପ୍ରତିଫଳିତ ହୋଇ ସ୍ନେହ, ପ୍ରୀତି, ମୈତ୍ରୀ, ସେବାପରାୟଣତା ଆଦି ଦୁର୍ଲଭ ମାନବଗୁଣର ଉଦ୍ରେକ କରାଇଥାଏ । ଏହିସବୁ ଗୁଣରାଜି ସାମାଜିକ ପରିବେଶକୁ ସୁଦୃଢ଼ କରିବା ସଂଗେ ସଂଗେ ଏକ ସୌହାର୍ଦ୍ଦପୂର୍ଣ୍ଣ ବାତାବରଣ ସୃଷ୍ଟିରେ ସହାୟକ ହୁଏ ।

ଓଷା ବାର ବ୍ରତ ଦିନ ଘରଦ୍ୱାର, ଦାଣ୍ଡଅଗଣା ଗୋବରଦ୍ୱାରା ଲିପାପୋଛା ହୋଇ ଏକ ଉତ୍କୃଷ୍ଟ ବିଶୋଧକର କାର୍ଯ୍ୟ କରିଥାଏ । ତା'ସହିତ ଚିତା, ମୁରୁଜ, କୋଠି ଘରର ଝୋଟି - ପ୍ରତୀକବାଦୀ ଚିତ୍ର ହିସାବରେ ବଳିଷ୍ଠ କଳାସଂସ୍କୃତିକୁ ପ୍ରତିଫଳନ କରିଥାଏ । ଏଥିସହିତ ଘୃତଦୀପ, ଝୁଣା, ଧୂପ, ହୋମ, କର୍ପୂରର ବ୍ୟବହାର ବୈଜ୍ଞାନିକ ଦୃଷ୍ଟିକୋଣରୁ ପରିବେଶ ପ୍ରଦୂଷଣକୁ ପ୍ରତିହତ କରେ । ଅନ୍ୟପକ୍ଷରେ ପୁଷ୍ପର ସୁବାସ, ଚୁଆ, ଚନ୍ଦନ, ଅଗୁରୁ, କସ୍ତୁରୀର ସୌରଭ ପ୍ରାଣରେ ଭରିଦିଏ ସରସତା ଓ ପବିତ୍ରତା । ଶଙ୍ଖ ହୁଳହୁଳି, ଘଣ୍ଟ, ଘଣ୍ଟା, ଢୋଲ ବାଦନ ସ୍ଥାନଟିକୁ ଉତ୍ସବ ମୁଖରିତ କରି ଗ୍ରାମ୍ୟ ଜୀବନରେ ଆଣେ ଉନ୍ମାଦନା । ସେହିପରି ବିଲ୍ୱପତ୍ର, ତୁଳସୀ, ପଞ୍ଚାମୃତ ଓ ଶ୍ରୀଫଳର ଉପଯୋଗିତା ମଧ୍ୟ ଏଇ ପୃଷ୍ଠଭୂମିରେ ଅନସ୍ୱୀକାର୍ଯ୍ୟ । ଏସବୁର ଦ୍ରବ୍ୟଗୁଣ ମାନବ କଲ୍ୟାଣକାରୀ ।

ଓଷାବ୍ରତ ହସ କୌତୁକ, ଭାରବେଭାର, ମଉଜମଜଲିସ୍, ସାଧାରଣ ଜୀବନରେ ଆଣିଦିଏ ବୈଚିତ୍ର୍ୟର ସମ୍ଭାର, ଆନନ୍ଦ ଉପଭୋଗ ସହ ସୁସଂଯତ ଓ ସୁସଂହତ ସାମାଜିକ ଜୀବନଯାପନ ଓଷାବ୍ରତର ମୂଳ ଉଦ୍ଦେଶ୍ୟ । ଏଗୁଡ଼ିକ ଆଧ୍ୟାତ୍ମିକ ଚେତନାକୁ ସୁଦୃଢ଼ ଓ ପରିପୁଷ୍ଟ କରିବା ପାଇଁ ଅଭିପ୍ରେତ । ଆଧ୍ୟାତ୍ମିକ ଚିନ୍ତନ, ମନନ ଓ ଉପାସନା ମାଧ୍ୟମରେ ଐଶିଶକ୍ତିର ଅଧିକାରୀ ହୋଇ ମଣିଷ ବିଭିନ୍ନ ଦୁର୍ବିପାକରୁ ମୁକ୍ତିଲାଭ କରିବାର ପ୍ରେରଣା ପାଇଥାଏ ।(୨୪)

ଅତି ଆଦିମକାଳରୁ ପୃଥିବୀର ବିଭିନ୍ନ ସ୍ଥାନରେ ଧର୍ମକୃତ୍ୟ ଭାବେ ନାନାବିଧ ଉପବାସ ଉତ୍ସବର ପାଳିତ ହୋଇଛି । ଉପବାସ, ଓଷା ବ୍ରତର ମାନସିକତା ପ୍ରଭାବିତ କରେ ଆମ ଜନଜୀବନର ସଂସ୍କୃତିକୁ ।

ରାମାୟଣର କିଷ୍କିନ୍ଧ୍ୟା କାଣ୍ଡରେ ରାମଚନ୍ଦ୍ର ସୁଗ୍ରୀବ ପ୍ରମୁଖଙ୍କୁ ଉପଦେଶ ଦେବାକୁ ଯାଇ କହିଥିଲେ - ଯାହା ଲୌକିକ ବ୍ୟବହାର ତାହା ତୁମର କରଣୀୟ । ଏହା ସାମାଜିକ ବନ୍ଧନକୁ ଦୃଢ଼ କରେ ଓ ସାମାଜିକ ମଣିଷ ଏହାକୁ ପାଳନ କରିଥାଏ । ଉପବାସ, ଓଷା, ବ୍ରତ ଏଇ ପ୍ରକାର ଲୌକିକ ବ୍ୟବହାରର ଅନ୍ତର୍ଗତ । ସମାଜକୁ ଅନୀତି କାର୍ଯ୍ୟରୁ ଦୂରେଇ ରଖିବା ପାଇଁ ଏହା ସାମାଜିକ ଜୀବ ମଣିଷର ହାତଗଢ଼ା ନିୟମ । ଏହାର ଅସ୍ୱୀକାରରେ ସମାଜ ଅଧପତିତ ହୁଏ । ସମାଜକୁ ଆଖି ଆଗରେ ରଖି ଏହା ଗଢ଼ି ଉଠିଥିବାରୁ ଏହା ସମାଜର ସମ୍ବିଧାନ ସଦୃଶ ।(୨୫)

ସମାଜକୁ ଅନୀତି କାର୍ଯ୍ୟରୁ ଦୂରେଇ ରଖିବା ପାଇଁ ଏହା ସାମାଜିକ ଜୀବ ମଣିଷର ହାତଗଢ଼ା ନିୟମ । ଏହାର ଅସ୍ୱୀକାରରେ ସମାଜ ଅଧପତିତ ହୁଏ । ସମାଜକୁ ଆଖି ଆଗରେ ରଖି ଏହା ଗଢ଼ି ଉଠିଥିବାରୁ ଏହା ସମାଜର ସମ୍ବିଧାନ ସଦୃଶ ।

ସମୟର ଅଭିବୃଦ୍ଧି ସହିତ ଆମର ଓଷା ସଂସ୍କୃତି, ବ୍ରତ ପରମ୍ପରା, ଉପବାସର ଐତିହ୍ୟ କ୍ରମଶଃ ଫିକା ପଡ଼ିଆସୁଛି । ମଣିଷର ଚନ୍ଦ୍ରବିଜୟ ପରେ ଚନ୍ଦ୍ରପୂଜାର ମୂଲ୍ୟ କ'ଣ ? ଏମିତି ସବୁ ପ୍ରଶ୍ନ ଉଠୁଛି ଆଜିର ପିଢ଼ିଙ୍କ ମୁହଁରୁ, ସୌରପଲ୍ଲୀ, ସୌରନଗରୀ ପ୍ରତିଷ୍ଠା ହେବା ପରେ ରବିନାରାୟଣ ବ୍ରତ, ଶାମ୍ବଦଶମୀ, ବିରଞ୍ଚିନାରାୟଣ ବ୍ରତର ଆଉ କ'ଣ ପ୍ରାସଙ୍ଗିକତା ଅଛି ? ଅଶାସ୍ତ୍ରୀୟ, ଓଷାବ୍ରତର ପାଳନ କ'ଣ ବିଧେୟ ? ଏମିତି ବହୁପ୍ରଶ୍ନର ସମ୍ଭାବ୍ୟ ଓ ଅସମ୍ଭବ ଚିନ୍ତାରେ ଉଦ୍‌ବେଳିତ ହେଉଛି ଆଜିର ମଣିଷ । ଓଷାବ୍ରତର କଳ୍ପନାପ୍ରବଣତାରେ ଦୋଦୁଲ୍ୟମାନ ହେଉଛି ଆମର ଚିନ୍ତା ଚୈତନ୍ୟ ! ଆଧୁନିକ ବିଜ୍ଞାନର ସର୍ବଗ୍ରାସୀ ପ୍ରବାହରେ ଧୂପଦୀପ, ନୈବେଦ୍ୟ, ସବୁ ବିସ୍ମୃତ । ଆଧୁନିକ ବିଳାସପୂର୍ଣ୍ଣ ଚଳଣୀରେ ସବୁ ଉପବାସ, ସାତ୍ତ୍ୱିକ ଚିନ୍ତା, ଆଧ୍ୟାତ୍ମିକ ଭାବ ସ୍ତିମିତ ପ୍ରାୟ । ଆମର ନିଜସ୍ୱ ପରମ୍ପରା ଓ ଐତିହ୍ୟର ସ୍ରୋତ ମରୁବାଲିରେ ବାଟବଣା ହୋଇ ନିଜର ଅସ୍ତିତ୍ୱ ପ୍ରତି ପ୍ରଶ୍ନବାଚୀ ଉତ୍‌ଥାପନ କରୁଛି ।

ବୋଧହୁଏ ନୁହଁ, ବିଜ୍ଞାନ ଓ ପ୍ରଯୁକ୍ତି ହୁଏତ ନେଇଯାଇଛି ଏମାନଙ୍କର ବାହ୍ୟ ସୌରଭ । ଭୁଲାଇ ଦେଉଛି ଏହାର ବାହ୍ୟ କର୍ମକାଣ୍ଡ । କିନ୍ତୁ ଅନ୍ତସୌରଭ ଆଜି ବି ବିଦ୍ୟମାନ ସେହି ସୌରଭୁ ବିକଶିତ ହେଉଛି ଏସବୁର ଐତିହାସିକ ମୂଲ୍ୟ, ସାଂସ୍କୃତିକ ଚେତନା, ସାମାଜିକ ପ୍ରବାହ, ସାହିତ୍ୟିକ କଳା । ଶତାବ୍ଦୀ ଶତାବ୍ଦୀ ଧରି ଏହା ଆମ ରାଜ୍ୟର ସମାଜ ଓ ସଂସ୍କୃତିକୁ ସୁଦୃଢ଼ କରି ରଖିଛି ।

ଓଷାବ୍ରତ ଉପବାସ କ୍ଷେତ୍ରରେ ମଧ୍ୟ ଏହି ପରମ୍ପରା କ୍ରମେ ଅଗ୍ରଜ ପ୍ରଜନ୍ମଙ୍କଠାରୁ କନିଷ୍ଠଙ୍କ ପାଖକୁ ଆସିଥାଏ । କିନ୍ତୁ ଏବେ ଓଷାବ୍ରତର ଅନେକ କୌଳିକ, ଲୌକିକ ଓ ମୌଖିକ ପରମ୍ପରା ବିଲୀନ ।

ବିଜ୍ଞାନ ସହିତ ଆମ ପାରମ୍ପରିକ ଜ୍ଞାନର ନିୟତ ସଂଘର୍ଷ ହେତୁ ଅନେକ କିଛି ବିସ୍ମୃତିର ପଥରେ । କିନ୍ତୁ ଏଇ ପ୍ରାଥମିକ ଓଡ଼ିଆ ସାହିତ୍ୟ ଓ ଲୋକ ସଂସ୍କୃତିକୁ ରଖିବାର ଦାୟିତ୍ୱ ଆମମାନଙ୍କର । ଭାରତ ପରି ଏକ ବହୁ ଭାଷାଭାଷୀ, ବହୁ ଧର୍ମାବଲମ୍ବୀ ଓ ଓଡ଼ିଶା ପରି ଏକ ବୈଚିତ୍ର୍ୟପୂର୍ଣ୍ଣ, ଐତିହ୍ୟ ବିମଣ୍ଡିତ ରାଜ୍ୟରେ ଏଇ ସଂସ୍କୃତି ଓ ପରମ୍ପରାକୁ ସଂରକ୍ଷିତ ରଖିପାରିଲେ ଜାତୀୟ ଜୀବନ ସୁଦୃଢ଼ ହେବ । ସାମାଜିକ ଜୀବନରେ ଆସିବ ପୂର୍ଣ୍ଣତା । ସାଂସ୍କୃତିକ ଜୀବନ ହେବ ମଧୁମୟ ।

**ସହାୟକ ଗ୍ରନ୍ଥସୂଚୀ**


୧. ଉତ୍କଳ ପାଠକ ସଂସଦ (ସମ୍ପାଦନା), ଓଡ଼ିଶାର ସାଂସ୍କୃତିକ ପରମ୍ପରା, କଟକ, ୧୯୮୯, ପୃ.୩୧୫

୨. ସୁରେନ୍ଦ୍ର ମହାନ୍ତି, ସାହିତ୍ୟର ଉତ୍ପତ୍ତି ଓ ଅଭିବ୍ୟକ୍ତି, ପୃ.୩୪୫

୩. ଓଡ଼ିଶାର ସାଂସ୍କୃତିକ ପରମ୍ପରା, ପୃ.୪୦୩

୪. ଭଗବାନ ମହାନ୍ତି, ଆମ ପର୍ବପର୍ବାଣି, ଓଡ଼ିଶା ସାହିତ୍ୟ ଏକାଡ଼େମୀ, ୧୯୭୯, ପୃ.୫୪

୫. ଅରବିନ୍ଦ ପଟ୍ଟନାୟକ, ବ୍ରତ ସାହିତ୍ୟ, ଓଡ଼ିଶା ସାହିତ୍ୟ ଏକାଡ଼େମୀ, ୧୯୮୨, ପୃ.୧

୬. ଚିତ୍ତରଞ୍ଜନ ଦାସ, ଓଡ଼ିଆ ସାହିତ୍ୟର ସାଂସ୍କୃତିକ ବିକାଶଧାରା, ଭୁବନେଶ୍ୱର, ୧୯୮୧, ପୃ.୧୧୮-୧୨୩

୭. ଭଗବାନ ପଣ୍ଡା, ଓଡ଼ିଶାର ଲୋକ ସଂସ୍କୃତି, ପୃ.୫୦

୮. ବ୍ରତ ସାହିତ୍ୟ, ପୃ.୬

୯. କୃଷ୍ଣଚନ୍ଦ୍ର ପ୍ରଧାନ, ଓଡ଼ିଆ ଲୋକ ସାହିତ୍ୟ ଓ ଲୋକ ସଂସ୍କୃତି, କଟକ, ୧୯୯୫, ପୃ.୨୯୬

୧୦. କେଦାରନାଥ ମହାପାତ୍ର, A Descriptive Catalogue of Sanskrit Manuscripts of Orissa, Vol-I, p.iii

୧୧. ତତ୍ରୈବ, ପୃ.୨୩-୨୬

୧୨. ତତ୍ରୈବ, ପୃ.୧୧-୧୨, ୧୬-୧୭

୧୩. ଅଧ୍ୟାପକ ରବି ନାୟକ, ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ଇତିବୃତ୍ତ, କଟକ, ୧୯୮୫, ପୃ.୬୪

୧୪. ବ୍ରତ ସାହିତ୍ୟ, ପୃ.୨୨

୧୫. ତତ୍ରୈବ

୧୬. ଓଡ଼ିଶାର ସାଂସ୍କୃତିକ ପରମ୍ପରା, ପୃ.୩୧୬

୧୭. ବ୍ରତ ସାହିତ୍ୟ, ପୃ.୨

୧୮. ତତ୍ରୈବ, ପୃ.୨୨୦

୧୯. ଉତ୍କଳ ପାଠକ ସଂସଦ (ସମ୍ପାଦନା), ଓଡ଼ିଶାର ପର୍ବପର୍ବାଣି, ଓଷାବ୍ରତ, ଯାନିଯାତ୍ରା, କଟକ, ୧୯୭୯, ପୃ.୭୯

୨୦. ବ୍ରତ ସାହିତ୍ୟ, ପୃ.୧୭୯

୨୧. ଓଡ଼ିଶା କଲଚରାଲ ଫୋରମ (ସମ୍ପାଦିତ), ଓଡ଼ିଶାର ଶାକ୍ତ ସଂସ୍କୃତି, ପୃ.୧୫୨

୨୨. କୃଷ୍ଣଚନ୍ଦ୍ର ପ୍ରଧାନ, ଓଡ଼ିଆ ଲୋକ ସାହିତ୍ୟ ଓ ଲୋକ ସଂସ୍କୃତି, ପୃ.୩୧୨-୩୧୩

୨୩. ତତ୍ରୈବ, ପୃ.୩୧୭

୨୪. ଓଡ଼ିଶାର ସାଂସ୍କୃତିକ ପରମ୍ପରା, ପୃ.୪୦୬

୨୫. କୃଷ୍ଣଚନ୍ଦ୍ର ପ୍ରଧାନ, ତତ୍ରୈବ, ପୃ.୩୩୬


ପ୍ରାଧ୍ୟାପିକା, ଇତିହାସ ବିଭାଗ
ରେଭେନ୍ସା ବିଶ୍ୱବିଦ୍ୟାଳୟ
କଟକ

---



# ପଞ୍ଚତପାଃ

ନିରଞ୍ଜନ ସେଠୀ

ବାଦଲ ତଳୁ ମୁହଁ କାଢ଼ି ଆଖି ଖୋଲି
ଯାହାର ମୁହଁ ଦେଖିଲି ସିଏ ଝଟକୁ ଥିଲା
ଚନ୍ଦ୍ରମା ପରି, ପତ୍ର ଉପରେ କାକର ଖସିଲା ପରି
ଖସି ପଡୁ ପଡୁ ନଟକି ପଡୁଥିଲା ସତେଜ ମୁହଁଟାରେ ଆଖି ।
କୁଆଁ କୁଆଁ ଡାକିଲା ବେଳକୁ ଡାକି ସାରିଥିଲି ମା' ।
ଲାଳ ବୁହା ଲାଳୁଆ ତାଳସଜ ପରି କଅଁଳ ଓଠର
ଅସ୍ପଷ୍ଟ ଉଚ୍ଚାରଣକୁ କିଏ ବୁଝୁ ବା ନବୁଝୁ
ମା' ବୁଝେ ବୋଲି ପାଟିରେ ଧରେଇ ଦେଲା ଅମୃତ ।
ସମଗ୍ର ସତ୍ତାକୁ ଭୁଲୁ ଭୁଲୁ ଝୁଣ୍ଟିଲି ଯେତେବେଳେ
ଡେଣା ସାରା ପର ଭର୍ତ୍ତି । ମା' ଛାଡ଼ି ଦେଲା କୋଳରୁ
ଉଡ଼ିବାକୁ ଉଡୁଥିବା ପକ୍ଷୀ ସାଥେ ମିତ ବସି ହାତ ଧରି ଶୂନ୍ୟରୁ ଶୂନ୍ୟକୁ ।
ଉଡୁ ଉଡୁ ଖସିଛି ବାରମ୍ବାର, ବରଂ ହାରିନି
ଭୁଲିନି ମା' ଶିଖେଇ ଥିବା ଉଡ଼ାଣ ।
ଆଖି ଖୋଲିଲେ ଯାହାକୁ ଦେଖେ, ସେଇ ମୁହଁ ଯିଏ ପୋଛିଥିଲା
ଲାଳ ସରସର ଦିହ, ସେକି ଥିଲା ଜାଳ ପକେଇ ଚୁଲୀରେ ।
ଆଖି ଠାରରେ ପ୍ରତିଥର ଚିହ୍ନେଇ ଦିଏ
ଯିଏ ପେଲି ଥିଲା ଉପରୁ ଉଡୁ ଉଡୁ
କେତେବେଳେ ହାତରେ ତ କେତେବେଳେ ଭାତରେ ନାତ ମାରି ପଛରୁ ।
ପାରୁନି ବୋଲି ଯେତେଥର ପଡ଼ିଛି, ସବୁଥର
ହାତ ଧରି ଉଠେଇଛି, 'ନରେ ବା ଗୁଞ୍ଜରେ ଅଶ୍ୱତ୍ଥମା ହତ'
ମାରିଛି ଅସତକୁ, ସତ ବୋଲି କୋଳେଇ ନେଇ
ଝାଡ଼ିଛି ଦେହରୁ ବାଲି, କ୍ଷତ ଧୋଇଛି କ୍ଷତରେ
ମନା କରିଛି ହସିବୁନି ଜମା ।
ପ୍ରତି ପାର୍ବଣ ପରି ପାର୍ବଣ ପାଇଁ ପ୍ରକୃତି
ସଜେଇଲାଣି ଦିହ, ମା' ଆସିବ
ଆଶ୍ୱିନ ଶୁକ୍ଳପକ୍ଷ ଦଶମୀ ତିଥିରେ
ଘୋଡ଼ାରେ, ହାତୀରେ ନଇଲେ ନାଆରେ
ଶିଳ୍ପୀର ହାତରେ ଝଟକିବ ମା'ର ମୃଣ୍ମୟୀ ମୂର୍ତ୍ତି
କେତେ ଦିନ ଅନ୍ଧାରରେ ଦେଖୁଥିବି ମୁହଁକୁ, କାନ୍ଦୁଥିବି ଶୂନ୍ୟକୁ ମୁହଁ କରି !
ଆଞ୍ଜୁଳାଏ ସପନ ରଖିଛି ସଅଁପି ଦେବି ବୋଲି
ଆଜିଠୁଁ ଶୀତେଇଲାଣି ଦିହ ।
ଗୁହାରି କରିବି ଶିଖେଇ ଦବ ସମସ୍ତଙ୍କୁ
ଜିଇଁବାର କଳା, ହାତ ଧରି
ଉଡ଼ିବାର ଶୈଳୀ, ଦବ କାଳେ ନିର୍ମେଘ ଆକାଶ
ଯେଉଁଠି ନଥିବ ରକ୍ତ ଦାଗ, ନଥିବ ଠେଲାପେଲା
ଘୃଣା ନଥିବ ଜଳିବାକୁ ଦିଆସିଲି କାଠି ପରି ନଷ୍ଟକରି ନିଜକୁ
ଯଦି କେବେ ଦରକାର ପଡ଼େ କାହାପାଇଁ ଟିକିଏ ଆଲୁଅ ।

ଲୋକ ସଂପର୍କ ଭବନ
ଭୁବନେଶ୍ୱର

# ପଶ୍ଚିମ ଓଡ଼ିଶାର ଗଣପର୍ବ ନୂଆଖାଇ

ପ୍ରଫେସର ନିରଞ୍ଜନ ପଣ୍ଡା

**ଭା**ରତବର୍ଷ ଏକ କୃଷି ପ୍ରଧାନ ଦେଶ ଓ ସେଥିପାଇଁ କୃଷି ଓ କୃଷକ ମଧ୍ୟରେ ନିବିଡ଼ ସଂପର୍କ ସ୍ୱାଭାବିକ ଅଟେ । ବିଂଶ ଶତାବ୍ଦୀର ଷଷ୍ଠ ଦଶନ୍ଧି ପରେ ଏବେ ଦ୍ୱିତୀୟ ଥର ପାଇଁ ଆମ୍ଭେ ଖାଦ୍ୟ ନିରାପତ୍ତା ବିଷୟରେ ସନ୍ଦିହାନ ହେଉଛୁଁ ଯଦିଓ ଏ ବର୍ଷ ଆମ୍ଭ ଦେଶରେ ସର୍ବୋଚ୍ଚ ଖାଦ୍ୟଫସଲ ଆମଦାନୀ ୨୩୦ ନିୟୁତ ଟନରେ ପହଞ୍ଚିଛି । ଆମ୍ଭର ଖାଦ୍ୟଶସ୍ୟ ଭଣ୍ଡାରଗୁଡ଼ିକରେ ପ୍ରଚୁର ଖାଦ୍ୟ ମହଜୁଦ ଥିଲେ ମଧ୍ୟ ଖାଦ୍ୟଶସ୍ୟର ଦରଦାମ୍ ସାରା ବିଶ୍ୱରେ ଯେପରି ବଢ଼ି ଚାଲିଛି ଏହା ଶୁଭ ଲକ୍ଷଣ ନୁହେଁ । **ଗତ ଦଶନ୍ଧି ମଧ୍ୟରେ ମୋଟ ଘରୋଇ ଉତ୍ପାଦ (G.D.P.) କମି ଶତକଡ଼ା ୧୮.୫ରୁ ତଳକୁ ଖସିଗଲାଣି ଯଦିଓ ଜନସଂଖ୍ୟାର ୫୮ ଶତାଂଶ ଲୋକ କୃଷି ଉପରେ ନିର୍ଭର କରନ୍ତି ।** ଆମ୍ଭ ରାଜ୍ୟରେ ଏହାର ହିସାବ ହେଲା ମୋଟ ଘରୋଇ ଉତ୍ପାଦ ଶତକଡ଼ା ୨୬ ଭାଗ ଓ ୬୫ ଶତାଂଶ ଲୋକ କୃଷି ଉପରେ ନିର୍ଭର କରନ୍ତି । କୃଷି ଉତ୍ପାଦନକୁ ବଜାୟ ରଖିବାକୁ ହେଲେ ଆମ୍ଭକୁ ମାଟି, କୃଷି, ଜଳ, ବାଇଓଡାଇଭରସିଟି ଓ ପରିବେଶକୁ ଜଗିବାକୁ ହେବ ଯେପରିକି ଏଗୁଡ଼ିକର ଉନ୍ନତି ହୋଇ ନପାରିଲେ ବି ଅବନତି ନଘଟେ ।



ନୂଆଖାଇ ପରିପ୍ରେକ୍ଷୀରେ କୃଷି ଓ କୃଷକର ସଂପର୍କ କଥା ଆଲୋଚନା ବେଳେ ଭଗବାନ ଶ୍ରୀକୃଷ୍ଣ ଭଗବତ ଗୀତାରେ କହିଛନ୍ତି - 'ଅନ୍ନାହ ଭବତି ଭୂତାନି' ଅର୍ଥାତ୍ ସମସ୍ତ ଜୀବଜଗତରେ ସୃଷ୍ଟି ସମ୍ଭବ କଥା ମନେପଡ଼େ ।

ଭାଗବତ କହେ-

'ଅନ୍ନ ବିହୁନେ ହଂସ ହାନି<br>
ଯୋଗ ସାଧିବୁ କାହା ଘେନି ।'

ମହାକବି କାଳିଦାସ କହିଛନ୍ତି, 'ଅନ୍ନ ଚିନ୍ତା ଚମତ୍କାରା' । ସ୍ୱଭାବ କବି ଗଙ୍ଗାଧର ମେହେରଙ୍କ କାବ୍ୟ କହେ -

'ଅନ୍ନ ଏକା ଅଟଇ ବିଶ୍ୱ ମୂଳାଧାର,<br>
ଏକ ବାକ୍ୟେ ସମସ୍ତେ ଗାଅହୋ ଅନ୍ନର ଜୟକାର ।<br>
ଅନ୍ନଣେ ରହିଅଛି ଅଖିଳ ସଂସାର,<br>
ଅନ୍ନବିନା ଜଗତେ ଉଠେ ହାହାକାର ।'

ସନ୍ଥକବି ଭୀମଭୋଇ କହିଛନ୍ତି -

'ଅନାମରୁ କ୍ଷୀର ନୀର ଜନ୍ମ ହେଲା<br>
ତହୁଁ ଉପୁଜିଲା ମଞ୍ଜି,<br>
ଧାନ୍ୟ ଫଳ ବୋଲି ନାମ ବୋଲାଇଲା<br>
ଆଧାରକୁ ଦେଲେ ଖଞ୍ଜି ।'

ନୂଆଖାଇ ପର୍ବ କୃଷି ଓ କୃଷକ ମଧ୍ୟରେ ଅଲୌକିକ ଓ ପବିତ୍ର ସଂପର୍କର ପୃଷ୍ଠପୋଷଣକୁ ସୁଦୃଢ଼ କରିଥାଏ ।

ନୂଆଖାଇ ସାମ୍ୟ, ମୈତ୍ରୀ, ଏକତା ଓ ସୌହାର୍ଦ୍ଦ୍ୟର ପ୍ରତୀକ । ଏହା ଆଦ୍ୟ ଲୋକପର୍ବ । ପଶ୍ଚିମ ଓଡ଼ିଶାରେ ଏଭଳି କେତେ ପର୍ବପାଳିତ ହୁଏ, ଯାହାକି ଅନ୍ୟଠାରେ ସେପରି ଭାବରେ ପାଳିତ ହୁଏ ନାହିଁ । ସମସ୍ତ ପର୍ବପର୍ବାଣି ମଧ୍ୟରେ ଶୀତଳଷଷ୍ଠୀ, ନୂଆଖାଇ, ପୁଷପୁନି, ପୁଅ ଜିଉଁତିଆ, ଭାଇ ଜିଉଁତିଆ, କଳସିଯାତ୍ରା, ବଳିଯାତ୍ରା, ଧନୁଯାତ୍ରା, ଗୁଣିଖାଇ ଏ ଅଞ୍ଚଳର ସଂସ୍କୃତିକୁ ସୂଚିତ କରେ । କୃଷକର ଫଳ ନୂଆଧାନ ଘରକୁ ଆସିଲେ କୁଟୁମ୍ବ ପରିଜନ ସହିତ ଏହି ପର୍ବପାଳନ କରିବାର ପରମ୍ପରା ରହିଆସିଛି । ନିଜ ବାଡ଼ିରେ ନୂଆ ଫଳଟିଏ କିମ୍ୱା କ'ଣ ପରିବା ହେଲେ ପ୍ରଥମେ ଠାକୁରଙ୍କୁ ଅର୍ପଣ କରିବା ପରେ ଆମ୍ଭେ ଗ୍ରହଣ କରିବା ଏକ ସାମାଜିକ ବିଧି ଅଟେ । ନୂଆଖାଇକୁ ଆସାମର ବିହୁ, କେରଳର ଓନାମ, ବଙ୍ଗଳାର ବୈଶାଖୀ, ଯୁକ୍ତରାଷ୍ଟ୍ର ଆମେରିକାର ଥେଂକ୍ସ ଗିଭିଙ୍ଗ ସହିତ ତୁଳନା କରାଯାଇପାରେ ।

ଆଗେ ଏହିପର୍ବ ବିଭିନ୍ନ ସ୍ଥାନରେ ବିଶେଷକରି ଗଡ଼ଜାତ ଅଞ୍ଚଳରେ ରାଜା ମହାରାଜାଙ୍କ ସ୍ୱୀକୃତିକ୍ରମେ ବିଭିନ୍ନ ତିଥିରେ ପାଳିତ ହେଉଥିଲା । କିନ୍ତୁ ଏବେ ଓଡ଼ିଶାର ସାଂସ୍କୃତିକ ସମାଜର ପ୍ରଚେଷ୍ଟାରେ ଗୋଟିଏ ତିଥିରେ ଭାଦ୍ରବ ମାସ ଶୁକ୍ଳପକ୍ଷ ପଞ୍ଚମୀ ଦିନ ସବୁଆଡ଼େ ପାଳିତ ହେଉଛି । ପ୍ରଥମ ଧାନ ଅମଳ କଲାପରେ ନିଜର ଇଷ୍ଟ ଦେବତାଙ୍କୁ ଅର୍ପଣ ନକରି ନିଜେ ଗ୍ରହଣ କରିବା କୃଷକ ଉଚିତ ମନେକରେ ନାହିଁ । ଏହି ବିଧିକୁ ସାଧାରଣ ଲୋକେ ବି ଆଧ୍ୟାତ୍ମିକତା ଦୃଷ୍ଟିରୁ ମାନନ୍ତି । ଏ ଦିନ କେଉଁ ସମୟ ଓ ଲଗ୍ନରେ ଦେବାଦେବୀ ପାଖରେ ନୂତନ ଧାନ ଭୋଗ ଲାଗିବ ଏହି ସମୟ ନିର୍ଦ୍ଧାରଣ କରନ୍ତି ପଣ୍ଡିତ ସଭା । ଠିକ୍ ସେହି ସମୟରେ ସମ୍ବଲପୁରରେ ସମଲେଶ୍ୱରୀ, ବଲାଙ୍ଗିରରେ ପାଟଣେଶ୍ୱରୀ, କଳାହାଣ୍ଡିରେ ମାଣିକେଶ୍ୱରୀ ଓ ସୁବର୍ଣ୍ଣପୁରରେ ସୁରେଶ୍ୱରୀଙ୍କୁ ଭୋଗ ହେଲେ ଯାଇ ତା'ପରେ ସମସ୍ତେ ନୂଆ ଚାଉଳ ସେବନ କରିଥାନ୍ତି । **ନୂଆଖାଇ ଅବସରରେ ପରିବାରର ସମସ୍ତେ ଏକତ୍ର ହୁଅନ୍ତି ଓ ବୟୋଜ୍ୟେଷ୍ଠ ବ୍ୟକ୍ତିଙ୍କଠାରୁ ଭଗବତ ସମର୍ପିତ ନୂଆଚାଉଳ ଗ୍ରହଣ କରିଥାନ୍ତି । ଏହାପରେ ପରିବାରର ଛୋଟମାନେ ବଡ଼ମାନଙ୍କୁ ମୁଣ୍ଡିଆମାରି ଆଶୀର୍ବାଦ ଭିକ୍ଷା କରନ୍ତି ।**

ସମ୍ବଲପୁରର ସମଲେଶ୍ୱରୀଙ୍କ ପାଖରେ କୂରେ ପତ୍ରରେ ଭୋଗ ଅର୍ପଣ କରାଯାଏ । ନଚେତ୍, ସର୍ଗି ପତ୍ର କିମ୍ବା ମହୁଲ ପତ୍ରରେ ମଧ ଭୋଗ ଲଗାଯାଏ । ସମଲେଶ୍ୱରୀଙ୍କ ପୂଜାଅର୍ଚ୍ଚନା ସମୟରେ ରୁଦ୍ଧଦ୍ୱାରା ହୋଇଥାଏ । ରୁଦ୍ଧଦ୍ୱାରା ପୂଜା ସମୟରେ କେବଳ ବିବାହିତ ଓ କୁମାରୀ ବ୍ରତ ସମ୍ପୂର୍ଣ୍ଣ କରିଥିବା ପୂଜକମାନେ ଗମ୍ଭୀରା ଭିତରେ ରହିଥାନ୍ତି । ଅନ୍ୟମାନଙ୍କୁ ଏହି ସମୟରେ ଗମ୍ଭୀରା ଭିତରେ ରହିବା ମନା । ସମଲେଶ୍ୱରୀ ପୀଠରେ ନୂଆଖାଇ ଦିନ ସର୍ବମୋଟ ୧୧୨ଟି ଆସ୍ଥାନରେ ପୂଜାର୍ଚ୍ଚନା କରାଯାଇଥାଏ । ଅଧିଷ୍ଠାତ୍ରୀ ଦେବୀ ସମଲେଶ୍ୱରୀଙ୍କ ସମେତ ଗମ୍ଭୀରା ଅଧିଷ୍ଠିତ ପାର୍ଶ୍ୱ ଦେବାଦେବୀ ଏବଂ ବିଘ୍ନରାଜ, ଉଗ୍ରତାରା, ମା' କାଳୀ, ନରସିଂହୀ, ଦୁର୍ଗା, ମଙ୍ଗଳା, ଜ୍ୱାଳାମୁଖୀ, ବନଦୁର୍ଗା, ବରାହୀ, ଛିନ୍ନମସ୍ତା, ମାତଙ୍ଗୀ, ରାମଚଣ୍ଡୀ, ବଞ୍ଜାରୀ, ହନୁମାନ, ଘଣ୍ଟାସିନୀ, ନାଦବ୍ରହ୍ମ, ଭାନୁମତି, ଦକ୍ଷିଣୀ, ଉତ୍ତରା, ବଳରାମ, ବାଘେଶ୍ୱରୀ, ବକ୍ରତୁଣ୍ଡ, ଷଷ୍ଠି ପର୍ଶୁରାମ, କଳକି, ନୃସିଂହ, ବାମନ, କଚ୍ଛପ, ବୁଦ୍ଧ, ପଲାସୀ, ବଉଳୀ, ମତ୍ସ୍ୟ, ରାମ, ଶୀତଳା, ଗରୁଡ଼ାକ୍ଷୀ, ନାରାୟଣ, ଗରୁଡ଼, ଘୋରରୂପୀ, ବରାଦା, କନକାଙ୍ଗୀ, ଷଣ୍ଡାସି, ଦିବ୍ୟରୂପା, କାମାକ୍ଷା, ଦୁର୍ଗତିନାଶିନୀ, ଏକଜନ, ଗଣ୍ଡୀନାୟକ, କରମସାନି, ଭୈରବୀ, ବସୁନ୍ଧରା, ଅମ୍ବିକା ସ୍ୱରୂପା, ମାହେଶ୍ୱରୀ, ରକ୍ତମାଉଳି, ବୁଦା, ତାରା, ଅହଲ୍ୟା, ଦ୍ରୋପଦୀ, କୁନ୍ତି, ମନ୍ଦୋଦରୀ, ଗୌରୀ, ସୌରୀ, ବାମନସିଂହ, ହସ୍ତା, ଗଜ, ସୁପାତ, ନାଗେଶ୍ୱରୀ, ସୁପସ୍ୱୀ, ନାରାୟଣ, ହସ୍ତି, ଅନନ୍ତ, ବିଜୟ, ଶଙ୍ଖ, ବିଜୟା, ଇନ୍ଦ୍ରମୁଖୀ, ଆର୍ଦ୍ରାବତୀ, ବିମତି, ପ୍ରଚଣ୍ଡା, କାପାଳି, ଅମ୍ବି, ଚିନାମାଳୀ, ମାଉଳି, ଆଖଡ଼ା ହନୁମାନ ପ୍ରମୁଖଙ୍କର ପୂଜାର୍ଚ୍ଚନା କରାଯାଇଥାଏ ।

ନୂଆଖାଇ ଦିନଟି ଏକ ପବିତ୍ରତାର ଦିନ, ବନ୍ଧୁମିଳନର ଦିନ, ଗୋଷ୍ଠୀକନ୍ଦଳ ନାଶର ଦିନ, କୁଟୁମ୍ବରେ ଏକତା ଆଣିବାର ଦିନ, ଯେତେ ବାଦବିବାଦ, ହିଂସା, ଅହଙ୍କାର ଓ ପରଶ୍ରୀକାତରତାକୁ ମୂଳୋତ୍ପାଟନ କରି ନୂଆଖାଇ ବୋହି ଆଣେ ଧରିତ୍ରୀକୁ ଶାନ୍ତି ଓ ପ୍ରଗତିର ବାର୍ତ୍ତା । ଧନୀ-ଦରିଦ୍ର, ଉଚ୍ଚ-ନୀଚ, ଥିଲା-ନଥିଲା, ରାଜା-ପ୍ରଜା, ଗଉଁଟିଆ-ଗ୍ରାମବାସୀ, ଜମିଦାର-ସୁଖବାସୀ, ଗ୍ରାମ-ସହର ସମସ୍ତେ ପାଳନ କରୁଥିବା ପର୍ବ ନୂଆଖାଇ । ଏହି ପର୍ବ ମିଳାଏ ବ୍ୟକ୍ତି ସହ ବ୍ୟକ୍ତିକୁ, ପରିବାର ସହ ଗ୍ରାମକୁ, ଗ୍ରାମ ସହ ସହରକୁ, ସହର ସହ ରାଜ୍ୟକୁ । ପରମ୍ପରା ଅନୁସାରେ ନୂଆଖାଇ ଦିନ କୁଟୁମ୍ବର ଯେ ଯେଉଁଠି ଥାଆନ୍ତୁ ସମସ୍ତେ ଘରକୁ ଆସନ୍ତି । ନିଜଗ୍ରାମ ସମସ୍ତଙ୍କୁ ଏକାସାଙ୍ଗରେ ପାଇ ଆନନ୍ଦିତ ହୁଏ ଓ ଏ ଦିନଟି ମଜାମଜ୍‌ଲିସ୍‌ରେ କଟେ । ଏହି ପର୍ବ ସମସ୍ତ ମନୋମାଳିନ୍ୟକୁ ପାଶୋରି ଯିବା ପାଇଁ ଇଙ୍ଗିତ କରେ । ଏ ଦିନ ବାଦବିବାଦ ମେଣ୍ଟିବାର ଦିନ । ଏହି ଅବସରରେ ଆଗକୁ ଥିବା ବିବାଦ, ମନଫଟାଫଟି ଉଭେଇଯାଏ । ଖୁସିରେ ଘରେ ଘରେ ପ୍ରସ୍ତୁତ ହୁଏ ନାନା ରକମର ପିଠାପଣା, କ୍ଷୀରି ପୁରି । ପ୍ରକୃତରେ ଏହି ପର୍ବ ଆମ୍ଭକୁ ଶିକ୍ଷା ଦିଏ ନତମସ୍ତକ ହେବା ପାଇଁ ।

**ସୁଖର କଥା ଆଧୁନିକତାର ପ୍ରଭାବ ଏ ପର୍ଯ୍ୟନ୍ତ ନୂଆଖାଇକୁ ନଷ୍ଟ କରିପାରି ନାହିଁ । ଏ ପର୍ଯ୍ୟନ୍ତ ଗ୍ରାମଗୁଡ଼ିକରେ ପ୍ରାଚୀନ ପାରମ୍ପରିକ ପଦ୍ଧତିରେ ଏହି ପର୍ବପାଳିତ ହେଉଛି ।** ଏହି ପର୍ବ ଏକତାର ମହାମନ୍ତ୍ରକୁ ଜୀବନ୍ତ ରଖିବାରେ ବେଶ୍ ସକ୍ଷମ ବୋଲି ମନେହୁଏ । ନୂଆଖାଇ ଦିନ ଦୂରାଦୂରାନ୍ତରେ କାମ କରୁଥିବା ପରିବାରର ସଦସ୍ୟଗଣ ନିଜ ଗ୍ରାମକୁ ଆସିପାରି ନଥିବାରୁ ବିଭିନ୍ନ ସହରରେ ଏହା ପାଳନ କରୁଛନ୍ତି । ଏକ ତିଥିରେ ନ ହେଲେ ମଧ ବିଭିନ୍ନ ଦିନ ପାଳନ କରାଯାଉଛି । ପଶ୍ଚିମ ଓଡ଼ିଶାର ଲୋକେ କଟକ, ଭୁବନେଶ୍ୱରରେ ଗୋଟିଏ ଦିନ ନିର୍ଣ୍ଣୟ କରି 'ନୂଆଖାଇ ଭେଟଘାଟ' ପାଳନ କରନ୍ତି । ଏବେ ଦିଲ୍ଲୀରେ, ହାଇଦରାବାଦରେ, ବମ୍ବେରେ, ବାଙ୍ଗାଲୋରରେ ମଧ ପାଳନ କରୁଛନ୍ତି । ଏପରିକି ଯୁକ୍ତରାଷ୍ଟ୍ର ଆମେରିକାରେ ମଧ ଏଥିରୁ ବାଦ ପଡ଼ିନାହିଁ ।

କୃଷିଭିତ୍ତିକ ପର୍ବ ନୂଆଖାଇ ଯାହାକୁ ଏକ ଲୋକପର୍ବ, ଗଣପର୍ବ, ଅନ୍ନଦାନର ପର୍ବ, ସମର୍ପଣର ପର୍ବ, ସରଳତା, ଓ ନମ୍ରତାର ପର୍ବ, ମିଳନର ପର୍ବ ବିଶ୍ୱଭ୍ରାତୃତ୍ୱର ଜୟଗାନ ଗାଉ, ମାନବିକ ମୂଲ୍ୟବୋଧର ପ୍ରସାର କରୁ ଓ ବିଶ୍ୱରେ ଶାନ୍ତି ପ୍ରତିଷ୍ଠାରେ ସହାୟକ ହେଉ ଏହା ହିଁ ବିନମ୍ର ପ୍ରାର୍ଥନା ।

ଅଧ୍ୟକ୍ଷ
ପଶ୍ଚିମ ଓଡ଼ିଶା ବିକାଶ ପରିଷଦ
ରାଜୀବ ଭବନ, ଭୁବନେଶ୍ୱର

# ଉତ୍କଳ ଭୂମିରେ ସ୍ୱାଧୀନତାର ତୂର୍ଯ୍ୟନାଦ

ଡାଃ ସୁଦର୍ଶନ ପଟ୍ଟନାୟକ

**ସ୍ୱା**ଧୀନତା ପ୍ରତ୍ୟେକ ଜୀବର ଜନ୍ମଗତ ଅଧିକାର । ସେ ସ୍ୱାଧୀନ ଭାବେ ବିହାର କରିବାକୁ ସ୍ୱାଧୀନ ପରିସର ଚାହେଁ । ଜୀବମାନଙ୍କ ମଧ୍ୟରେ ଶ୍ରେଷ୍ଠ ବିବେକବନ୍ତ ମାନବ ଏହି ଅଧିକାରର ନୈତିକ ଓ ମାର୍ମିକ ସଂଜ୍ଞା ଅନୁଭବ କରେ । ପରାଧୀନତାର ଶୃଙ୍ଖଳତାକୁ କେବଳ ବିବଶ କରେ ନାହିଁ ବରଂ ହତଶ୍ୱାସ କରି ପକାଏ । ପରାଧୀନ ଜୀବନ ଅପେକ୍ଷା ସେ ମୃତ୍ୟୁକୁ ମଧ୍ୟ ଆପଣେଇବାକୁ ପଛାଏ ନାହିଁ । ପରାଧୀନତାର ଶୃଙ୍ଖଳତାକୁ ତା'ର ଜାତୀୟତାବୋଧ ମାନସିକତାରେ ଦୁର୍ବଳ, ହୀନବଳ ଆଣିଦିଏ । ବିବେକ ତା'ର କ୍ଷତାକ୍ତ ହୁଏ । ପରବର୍ତ୍ତୀ ଅବସ୍ଥାରେ ଦେଶ ମାତୃକାର ଶୃଙ୍ଖଳ ଛିନ୍ନ କରିବା ପାଇଁ ସେ ସତତ ବ୍ରତୀ ହୁଏ । ଆବଶ୍ୟକ କରେ କେବଳ ଜଣେ ସୁଦକ୍ଷ ଦିଗ୍‌ଦର୍ଶକର ସମୁଚିତ ଆହ୍ୱାନ । ସେ ଆହ୍ୱାନର ସ୍ପନ୍ଦନ ତାକୁ ସ୍ପନ୍ଦିତ କରେ । ସେତେବେଳେ ତା' ପାଇଁ ଯେ କୌଣସି ଆୟୁଧର ଉପଯୋଗ ସମ୍ଭାବନାମୟ ହୋଇଯାଏ । ଆମ ଦେଶମାତୃକାର ପରାଧୀନତାକୁ ପ୍ରତିହତ କରିବା ପାଇଁ ଆୟୁଧ ଥିଲା ଅତି ନିଆରା ! ସୌର୍ଯ୍ୟବୀର୍ଯ୍ୟର ଚରମ ନିଦର୍ଶନ, 'ଅହିଂସା' । ଏହି କାଉଁରୀ ମନ୍ତ୍ରରେ ସମଗ୍ର ଦେଶକୁ ଅଭିମନ୍ତ୍ରିତ କରିଥିଲେ ଜଣେ କ୍ଷୀଣକାୟ, ଅର୍ଦ୍ଧବସ୍ତ୍ରାବୃତ ପୁରୁଷ । ତାଙ୍କର ଦେଶବାସୀଙ୍କୁ ଆହ୍ୱାନ ଥିଲା ଆନ୍ତର୍ଦେଶୀୟ କ୍ଷେପଣାସ୍ତ୍ରଠାରୁ ଅଧିକ ବେଗଗାମୀ, ଶକ୍ତିଶାଳୀ । ନାଁ ଥିଲା ସେଥିରେ ରକ୍ତପାତର ପରିଣତି, ନାଁ ଥିଲା ତହିଁରେ ସାମରିକ ତୂର୍ଯ୍ୟନାଦ ! ଥିଲା କେବଳ ସ୍ନେହ, ଆତ୍ମୀୟତା ଓ ଅହିଂସା ଉପାୟରେ ହସି ହସି କରିବା ମରଣର ମୁକାବିଲା । ହିମାଳୟଠାରୁ କନ୍ୟାକୁମାରୀ ଯାଏଁ ସମଗ୍ର ଦେଶ ସେ ଅହିଂସା ମନ୍ତ୍ରରେ ଅଭିମନ୍ତ୍ରିତ ହୋଇ ଭାରତମାତାକୁ ଶୃଙ୍ଖଳମୁକ୍ତ କରିବା ପାଇଁ ଜୀବନକୁ ବାଜି ଲଗାଇ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ ଅଗଣିତ ସଂଗ୍ରାମୀ । ଗଗନ ପବନରେ ଉଦ୍‌ବେଳନ ସୃଷ୍ଟି ହୋଇଥିଲା । 'ବନ୍ଦେ ଭାରତ ଜନନୀ', 'ମହାତ୍ମା ଗାନ୍ଧୀକି ଜୟ' ଆଦି ନାରା ସମଗ୍ର ଦେଶରେ ଗୁଞ୍ଜରିତ ହୋଇ ଉଠିଥିଲା । ପରମ କାରୁଣିକ ଦିଗ୍‌ଦର୍ଶକ ଓ ଏ ମହାସମରର କର୍ଣ୍ଣଧାର ଥିଲେ, ଆମର ଜାତିର ପିତା ମୋହନ ଦାସ କରମ ଚାନ୍ଦ ଗାନ୍ଧୀ ।

ଜାତୀୟସ୍ତରରେ ନ ହେଲେ ମଧ୍ୟ ଓଡ଼ିଶାର ଏହି ପାଇକ ବିଦ୍ରୋହ ଥିଲା ବ୍ରିଟିଶ ସରକାର ବିରୋଧରେ ଭାରତୀୟମାନଙ୍କର ପ୍ରଥମ ସ୍ୱାଧୀନତା ସଂଗ୍ରାମ ।

ଇତିହାସ ପୃଷ୍ଠା ଓଲଟାଇଲେ ଜଣାଯାଏ ଦୀର୍ଘଦିନର ପରାଧୀନତା ପରେ ଶିଥିଳ, ବିବଶ, ନିସ୍ତେଜ ଓ ହୀନବଳ ଜନତା ଜନାର୍ଦ୍ଦନଙ୍କର ହୃଦୟରେ ସ୍ୱାଧୀନତା ସଂଗ୍ରାମର ପ୍ରଥମ ସ୍ଫୁଲିଙ୍ଗ ତେଜୋଦୀପ୍ତ ହୁଏ ଆମ ରାଜ୍ୟ ଉତ୍କଳ ମାଟିରେ ।

**୧୮୫୭ ମସିହା ସିପାହୀ ବିଦ୍ରୋହକୁ ସ୍ୱାଧୀନତା ସଂଗ୍ରାମର ଅୟମାରମ୍ଭ କୁହାଯାଇଥିଲେ ମଧ ତା'ର ଠିକ୍ ଚାରିଦଶନ୍ଧି ପୂର୍ବେ ଖୋର୍ଦ୍ଧାର ପାଇକ ବିଦ୍ରୋହ ସଂଗଠିତ ହୋଇଥିଲା ଓ ଯାହା ଇଂରେଜ ସରକାରଙ୍କର ଅସହ୍ୟ ମୁଣ୍ଡବ୍ୟଥାର କାରଣ ହୋଇଥିଲା ।** ପ୍ରଥମେ ହୁଏତ ଇଂରେଜ ଶାସନକୁ ସ୍ୱାଗତ କରାଯାଇଥିଲା । ମାତ୍ର ପରେ ପରେ ଓଡ଼ିଶାବାସୀଙ୍କ ମୋହ ଭଙ୍ଗ ହୋଇଥିଲା । ଦୀର୍ଘକାଳ ଧରି ଅସହ୍ୟ ପରିସ୍ଥିତିକୁ ବରଦାସ୍ତ କରିବା ଲାଗି ଓଡ଼ିଶା ଜାତି ଆଉ ପ୍ରସ୍ତୁତ ନଥିଲା ।

୧୮୧୭ ଖ୍ରୀ: ମାର୍ଚ୍ଚ ମାସରେ ଓଡ଼ିଶାର ନିର୍ଯ୍ୟାତିତ ଦୁର୍ଦ୍ଧର୍ଷ ପାଇକକୁଳ କମ୍ପାନୀ ଶାସନ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରି ଶାସକବର୍ଗଙ୍କ ପକ୍ଷରେ ଗୁରୁତର ସଙ୍କଟ ସୃଷ୍ଟି କରିଥିଲେ । ଅବସ୍ଥା ଏଭଳି ସଙ୍ଗୀନ ହୋଇପଡ଼ିଲା ଯେ ଗୋରା କଲେକ୍ଟର ସହର ଛାଡ଼ି ପଳାଇବାକୁ ବାଧ୍ୟ ହେଲେ । ଜାତୀୟସ୍ତରରେ ନ ହେଲେ ମଧ୍ୟ ଓଡ଼ିଶାର ଏହି ପାଇକ ବିଦ୍ରୋହ ଥିଲା ବ୍ରିଟିଶ ସରକାର ବିରୋଧରେ ଭାରତୀୟମାନଙ୍କର ପ୍ରଥମ ସ୍ୱାଧୀନତା ସଂଗ୍ରାମ । ଏହି ବିପ୍ଳବୀ ଗୋଷ୍ଠୀର ମୁଖ୍ୟ ପୁରୋଧା ଥିଲେ ପ୍ରତ୍ୟୁତ୍ପନ୍ନମତି ଯୁବକ, ବକ୍ସି ଜଗବନ୍ଧୁ ବିଦ୍ୟାଧର । ତାଙ୍କର ବଳିଷ୍ଠ ନେତୃତ୍ୱରେ ବିଦ୍ରୋହାଗ୍ନି ଓଡ଼ିଶାର ପୁରପଲ୍ଲୀରେ ପ୍ରଜ୍ୱଳିତ ହୋଇଉଠିଲା । କେତେକ ଅଭାବନୀୟ ପରିସ୍ଥିତିରେ ୧୮୨୫ ଖ୍ରୀ:ରେ ସେ ଆତ୍ମସମର୍ପଣ କରିବା ପାଇଁ ବାଧ୍ୟ ହୋଇଥିଲେ । ମାତ୍ର ସେଯାବତ୍ ବିଦ୍ରୋହାଗ୍ନିର ଧୂମକୁଣ୍ଡଳୀ ସାରା ରାଜ୍ୟକୁ ଆଚ୍ଛାଦିତ କରି ରଖିଥିଲା ।

୧୮୫୭ ମସିହା ସିପାହୀ ବିଦ୍ରୋହରେ ଓଡ଼ିଶାର ଅବଦାନ ବହୁମାତ୍ରାରେ ଥିଲା । ସମ୍ବଲପୁର ମାଟିର ବରପୁତ୍ର, ବୀର ସୁରେନ୍ଦ୍ର ସାଏଙ୍କ

ଅଧିନାୟକତ୍ୱରେ ଭାରତମାତାର ମୁକ୍ତି ସଂଗ୍ରାମରେ ସାରା ଓଡ଼ିଶା ଲମ୍ଫ ପ୍ରଦାନ କରିଥିଲା । ଏକଦା ଏପରି ସମୟ ଆସିଲା ଯେଉଁ ସମୟରେ ଗାଁଗହଳରୁ ଆରମ୍ଭ କରି ସହର ମହକୁମା ଓ ଥାନା ତହସିଲଠାରୁ ଆରମ୍ଭ କରି ରାଜଧାନୀ ଦିଲ୍ଲୀ ଯାଏଁ ସ୍ୱାଧୀନତା ସଂଗ୍ରାମର ପ୍ରଳୟଙ୍କରୀ ବହ୍ନି ପ୍ରଜ୍ୱଳିତ ହେବାକୁ ଲାଗିଲା । ସେ ବହ୍ନିର ଜ୍ୱଳନ ଇଂରେଜ ଶାସନର ସମସ୍ତ ଶୃଙ୍ଖଳ ଛିନ୍ନ କରିବାର ମାର୍ଗ ପରିଷ୍କାର କରିବାରେ ସହାୟକ ହେଲା । ସେ ବହ୍ନି ଅଧିକାଂଶ ଭାରତୀୟ ହୃଦୟରେ ସଂଗ୍ରାମରୂପୀ ଉତ୍ତାପର ଉତ୍ତେଜକ ଶକ୍ତି ଭରି ଦେଇଥିଲା । କମ୍ପାନୀ ସରକାରର ଆଇନଗତ ସମସ୍ତ ସତ୍ତା ଭସ୍ମୀଭୂତ ହେବାକୁ ଆରମ୍ଭ କରିଥିଲା ।

ବିଂଶ ଶତାବ୍ଦୀର ଅୟମାରମ୍ଭରେ ୧୯୦୩ ମସିହା ଡିସେମ୍ବର ମାସ ୩୦ ଓ ୩୧ ତାରିଖ ଦୁଇଦିନ ଧରି 'ଉତ୍କଳ ସମ୍ମିଳନୀ' ଗଠନ କରାଯାଇ ଏହାର ପ୍ରଥମ ଅଧିବେଶନ କଟକଠାରେ ଅନୁଷ୍ଠିତ ହୋଇଥିଲା । ଉକ୍ତ ଅଧିବେଶନରେ ରାଜାଠାରୁ ରଙ୍କ, ଧନୀକଙ୍କଠାରୁ ଚାଷୀ ମୂଲିଆ, ଜମିଦାରଙ୍କଠାରୁ ଆରମ୍ଭ କରି ଖଟିଖିଆ ଯାଏଁ ଆବାଳ-ବୃଦ୍ଧ-ବନିତା ସହସ୍ରାଧିକ ସଂଖ୍ୟାରେ ଯୋଗ ଦେଇଥିଲେ । ଉକ୍ତ ଜନ ସମୁଦ୍ରକୁ ଉଦ୍‌ବୋଧନ ଦେଇ ଉତ୍କଳଗୌରବ କୁଳବୃଦ୍ଧ ମଧୁସୂଦନ ଦାସ ତାଙ୍କର ବ୍ରଜନିର୍ଘୋଷ ବାଣୀରେ ଓଡ଼ିଶାର ସମସ୍ତ ଜନସାଧାରଣଙ୍କୁ ସ୍ୱଦେଶ ପ୍ରୀତି, ଜାତୀୟତା, ସ୍ୱଦେଶ ବସ୍ତୁରେ ଆଗ୍ରହ, ସ୍ୱଦେଶୀ ବସ୍ତ୍ର ପରିଧାନ ଓ ବିଲାତି ବସ୍ତୁ ଓ ବସ୍ତ୍ର ଆଦି ବର୍ଜନ ଭଳି ଅନର୍ଗଳ ଭାଷଣ ମାଧ୍ୟମରେ ସ୍ୱାଧୀନତା ସଂଗ୍ରାମର ବହ୍ନିରେ ଘୃତାହୂତ ଦେଇ ଏହାର ପ୍ରଜ୍ୱଳନକୁ ଅଧିକ ପ୍ରଖର କରିଥିଲେ । ସ୍ୱାଧୀନତା ସଂଗ୍ରାମ ରୂପୀ ମହାସିନ୍ଧୁରେ ପ୍ରତ୍ୟେକ ଭାରତୀୟ ସେମାନଙ୍କର ପ୍ରାଣରୂପକ ବିନ୍ଦୁଗୁଡ଼ିକ ମିଶାଇ ଏକାକାର କରି ଭାରତମାତାଙ୍କୁ ଗୋରା ଶାସନର ଶୃଙ୍ଖଳରୁ ମୁକ୍ତ କରିବାକୁ ନିତ୍ୟମୁକ୍ତ, ଦରଦୀ କୁଳବୃଦ୍ଧ ବିପ୍ଳବୀ ମଧୁସୂଦନ ଦାସ ଗାଇଥିଲେ -

ଏହି ସମ୍ମିଳନୀ ଦେଶ ପ୍ରାଣ ସିନ୍ଧୁ, କୋଟି ପ୍ରାଣ ବିନ୍ଦୁ ଧରେ,
ତୋ'ର ପ୍ରାଣ ବିନ୍ଦୁ ମିଶାଇ ଦେ ଭାଇ ଡେଇଁ ପଡ଼ି ସିନ୍ଧୁ ନୀରେ ।'

ଦେଶମାତୃକାର ଶୃଙ୍ଖଳ ଛିନ୍ନ କରିବା ପାଇଁ ତାଙ୍କର ଆନ୍ତରିକତା ଏହି ପଂକ୍ତି ଦୁଇଟିରୁ ଅତି ପ୍ରାଞ୍ଜଳ ଭାବେ ପରିସ୍ଫୁଟ । ସେ ସବୁବେଳେ କହୁଥିଲେ, 'ଭାରତକୁ ବାଦ ଦେଇ ଯେପରି ଓଡ଼ିଶାକୁ ଚିନ୍ତା କରାଯାଇ ପାରେ ନା, ସେହିପରି ଓଡ଼ିଶାକୁ ବାଦ ଦେଇ ଭାରତ ବିଷୟରେ ମଧ୍ୟ ଚିନ୍ତା କରାଯାଇପାରେନା ।

ଊନବିଂଶ ଶତାବ୍ଦୀ ଉତ୍କଳମାତାର ଏକ ସୁବର୍ଣ୍ଣ ଯୁଗର ଶତାବ୍ଦୀ ଥିଲା । ଏହି ଶତାବ୍ଦୀରେ ବହୁ ନିଜ ଗୁଣରେ ମହୀୟାନ୍ ମହାନ୍ ସ୍ୱାଧୀନତା ସଂଗ୍ରାମୀ ଉତ୍କଳମାତାର କୋଳ ମଣ୍ଡନ କରିଥିଲେ । ସେମାନଙ୍କ ମଧ୍ୟରେ ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ଗୋପବନ୍ଧୁ ଦାସ, ଗଜପତି ମହାରାଜା କୃଷ୍ଣଚନ୍ଦ୍ର ଦେବଙ୍କ ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ସ୍ୱାଧୀନତା ସଂଗ୍ରାମ ପାଇଁ ସେମାନଙ୍କର ଆତ୍ମୀୟତା ଓ ମହାର୍ଘ ଅବଦାନ ସ୍ୱାଧୀନତା ସଂଗ୍ରାମ ଇତିହାସରେ ତାଙ୍କର ଅମ୍ଳାନ ସ୍ୱାକ୍ଷର ବହନ କରିଛି । କୁହାଯାଏ, **ଉତ୍କଳଗୌରବ ମଧୁସୂଦନଙ୍କୁ ଜାତିର ଜନକ ମହାତ୍ମା ଗାନ୍ଧୀ ମଧ୍ୟ ରାଜନୈତିକ ଗୁରୁ ରୂପେ ମାନ୍ୟତା ପ୍ରଦାନ କରିଥିଲେ ।**

ଉତ୍କଳଗୌରବ ମଧୁସୂଦନଙ୍କୁ ଜାତିର ଜନକ ମହାତ୍ମା ଗାନ୍ଧୀ ମଧ୍ୟ ରାଜନୈତିକ ଗୁରୁ ରୂପେ ମାନ୍ୟତା ପ୍ରଦାନ କରିଥିଲେ ।

ସ୍ୱଦେଶୀ ଆନ୍ଦୋଳନର ପୁରୋଧା ଥିଲେ ଉତ୍କଳ ଜନନୀର ବରପୁତ୍ର, ଉତ୍କଳମଣି ଗୋପବନ୍ଧୁ ଦାସ । ୧୯୦୯ ମସିହା ଅଗଷ୍ଟ ୧୨ ତାରିଖରେ ସେ ପୁରୀର ସାକ୍ଷୀଗୋପାଳଠାରେ ସତ୍ୟବାଦୀ ମୁକ୍ତ ବନ ବିଦ୍ୟାଳୟ ସ୍ଥାପନା କରି ଶିକ୍ଷାକ୍ଷେତ୍ରରେ ବହୁ ସଂସ୍କାର ସହ ଉତ୍କଳ ସମ୍ମିଳନୀ ଗଠନର ଅନ୍ୟତମ ଅଗ୍ରଦୂତ ଥିଲେ । ତାହାରି ମାଧ୍ୟମରେ ଦେଶପ୍ରେମ, ଜାତୀୟତାବୋଧ, ସ୍ୱରାଜ, ସ୍ୱାଧୀନତାର ବାର୍ତ୍ତାବହ ସାଜି ଭାରତୀୟ ଗଣଚେତନାକୁ ସମୃଦ୍ଧ ଓ ଋଦ୍ଧିମନ୍ତ କରିଥିଲେ । ସ୍ୱାଧୀନତା ସଂଗ୍ରାମ ପାଇଁ ତାଙ୍କ ହୃଦୟର ମାର୍ମିକ ଉଚ୍ଛ୍ୱାସ ସେତେବେଳେ ଲେଖିଥିବା ତାଙ୍କ କବିତାରେ ଅତୀବ ଚିତ୍ତାକର୍ଷକ ଅଭିବ୍ୟକ୍ତି ବହନ କରିଛି । ସେ ଲେଖିଥିଲେ -

'ସ୍ୱାଧୀନତା ମାନବର ଜନ୍ମ ଅଧିକାର,
ସ୍ୱାଧୀନ ଭାଷଣ ଆଉ ସ୍ୱାଧୀନ ବିହାର ।
ସ୍ୱାଧୀନ ଜୀବନ ପୁଣି ସ୍ୱାଧୀନ ସମିତି,
ଚାରି ସ୍ତମ୍ଭେ ମାନବର ଜୀବନ ସଂସ୍ଥିତି ।।'

ଏହି ପଂକ୍ତିଗୁଡ଼ିକରେ ଦେଶମାତୃକାର ସ୍ୱାଧୀନତା ପାଇଁ ତାଙ୍କର ପ୍ରାଣର ଉଦ୍‌ବେଗ ବିଶେଷ ଭାବେ ପରିସ୍ଫୁଟ ।

୧୯୨୦ ମସିହାରେ ମହାତ୍ମାଜୀଙ୍କ ନେତୃତ୍ୱ ସ୍ୱାଧୀନତା ସଂଗ୍ରାମରେ ଏକ ନୂତନ ଦିଗନ୍ତ ସୃଷ୍ଟି କଲା । ତାଙ୍କ ନେତୃତ୍ୱରେ ପରିଚାଳିତ ଜାତୀୟ କଂଗ୍ରେସର ଆହ୍ୱାନରେ ଜାଲିଆନାୱାଲାବାଗର ନିରୀହ, ନିରସ୍ତ୍ର ଜନସାଧାରଣଙ୍କ ଉପରେ ବିଭତ୍ସ, ବର୍ବରୋଚିତ, ଲୋମହର୍ଷଣକାରୀ ଅମାନୁଷିକ ଗଣହତ୍ୟା ସମଗ୍ର ଦେଶର ମେରୁଦଣ୍ଡରେ ଶିହରଣ ସୃଷ୍ଟି କରିଥିଲା । ତାହା ହିଁ ଜନତାଜନାର୍ଦ୍ଦନଙ୍କୁ ଏକ ବଜ୍ରଶପଥ ନେବା ପାଇଁ ପ୍ରେରଣା ଦେଇଥିଲା । ଇଂରେଜମାନଙ୍କୁ ସମୂଳେ ହଟାଇ ଦେଶମାତୃକାକୁ ସ୍ୱାଧୀନ କରିବାର ମାନସିକତା ନେଇ ଅସହଯୋଗ ଆନ୍ଦୋଳନର ଆହ୍ୱାନ ଦିଆଯାଇଥିଲା । ତା'ର ସୁଦୂର ପ୍ରସାରୀ ଭୟଙ୍କର ତୂର୍ଯ୍ୟନାଦ ପ୍ରତିଧ୍ୱନିତ ହେଉଥିଲା ସମଗ୍ର ଭାରତ ସହ ଉତ୍କଳର ସମସ୍ତ ପୁରପଲ୍ଲୀରେ । ଅସହଯୋଗ ଆନ୍ଦୋଳନର ବହ୍ନିର ଲେଲିହାନ ଶିଖା ତଡ଼ିତ୍ ବେଗରେ କଟକ, ବାଲେଶ୍ୱର, ପୁରୀ, ଖୋର୍ଦ୍ଧା, ଯାଜପୁର ଓ କନିକା ଅଞ୍ଚଳକୁ ସଂପ୍ରସାରିତ ହୋଇଗଲା ।

୧୯୨୯ ମସିହା ଡିସେମ୍ବର ମାସରେ ଲାହୋରଠାରେ ପୂର୍ଣ୍ଣ ସ୍ୱରାଜ ଦାବି କରି କଂଗ୍ରେସ ତରଫରୁ ୩୧ ତାରିଖ ଦିନ ତ୍ରିରଙ୍ଗା ପତାକା ଉତ୍ତୋଳନ ସାଙ୍ଗକୁ ସ୍ୱାଧୀନତା ଦିବସ ପାଳନ କରାଗଲା । ପୂର୍ଣ୍ଣ ସ୍ୱରାଜ୍ୟ ଦାବିକୁ ସମ୍ପୂର୍ଣ୍ଣ ସମର୍ଥନ ଜଣାଇ ଓଡ଼ିଶାରେ ସଭା ସମିତିମାନ ଅନୁଷ୍ଠିତ ହେଲା । 'ବନ୍ଦେ ମାତରମ୍', 'ମହାତ୍ମା ଗାନ୍ଧୀ କି ଜୟ' ଧ୍ୱନିରେ ଉତ୍କଳର ଗଗନ ପବନ ମୁଖରିତ ହୋଇଉଠିଲା ।

ମହାତ୍ମା ଗାନ୍ଧୀ ଅସହଯୋଗ ଓ ଆଇନ ଅମାନ୍ୟ ଆନ୍ଦୋଳନକୁ ସତ୍ୟାଗ୍ରହ ରୂପକ ଦ୍ରୁମର ଦୁଇଟି ସବଳ ଶାଖା ଭାବେ ଅଭିହିତ କଲେ । ଜନସାଧାରଣ ଭାରତବାସୀଙ୍କୁ ସେ ସୂଚେଇ ଦେଲେ ଯେ 'ସତ୍ୟାଗ୍ରହ ହେଉଛି ସତ୍ୟରେ ଆଗ୍ରହ ବା ସନ୍ଧାନ । ସତ୍ୟ ହିଁ ଈଶ୍ୱର । ଅହିଂସା ହେଉଛି ଆଲୋକର ସତ୍ତା ଯାହା ସତ୍ୟକୁ ଉଦ୍‌ଘାଟିତ କରେ ଓ ପୂର୍ଣ୍ଣ ଭାବେ ବିକଶିତ କରେ । ମୋ' ପାଇଁ ସ୍ୱରାଜ୍ୟ ହେଉଛି ସେହି ମହାନ୍ ସତ୍ୟର ଏକ ଅଂଶବିଶେଷ ।'

ଆଇନ ଅମାନ୍ୟ ଆନ୍ଦୋଳନର ଗତି ତୀବ୍ର ଆକାର କରିଥାଏ । ଠିକ୍ ସେହି ସମୟରେ ଫିରିଙ୍ଗି ସରକାର ନିତ୍ୟ ବ୍ୟବହାର୍ଯ୍ୟ ଲୁଣ ଉପରେ କର ଧାର୍ଯ୍ୟ କରିବା ଫଳରେ ତାହା ବିରୋଧରେ ଆନ୍ଦୋଳନ, ଲବଣ ସତ୍ୟାଗ୍ରହରେ ରୂପାନ୍ତରିତ ହୋଇ ଏକ ଭୟଙ୍କର ଗଣ ଆନ୍ଦୋଳନର ରୂପ ନେଲା । ଓଡ଼ିଶାର ଉପକୂଳବର୍ତ୍ତୀ, ବାଲେଶ୍ୱର, କଟକ, ପୁରୀ, ଗଞ୍ଜାମ ଜିଲ୍ଲାମାନଙ୍କରେ ଏହି ଆନ୍ଦୋଳନ ତଡ଼ିତ ବେଗରେ ପ୍ରସାରିତ ହୋଇଗଲା । ୧୯୩୦ ମସିହା ମାର୍ଚ୍ଚ ମାସ ୧୨ ତାରିଖ ଦିନ ଗାନ୍ଧିଜୀ ଲବଣ ଆଇନ ବିରୁଦ୍ଧରେ ତଦାନୀନ୍ତନ ଭାଇସ୍‌ରାଏ, ଇରଓ୍ୱିନଙ୍କ ନିକଟକୁ ପତ୍ରଲେଖି ଏହାର କୁପରିଣାମ ପାଇଁ ଦାୟୀ ରହିବାକୁ ସତର୍କ କରାଇ ଦେଇଥିଲେ ।

ବ୍ରିଟିଶ ସରକାରଙ୍କ ଲବଣ ଆଇନକୁ ବିରୋଧ କରି ଗାନ୍ଧିଜୀ ସାବରମତୀ ଆଶ୍ରମଠାରୁ ଦାଣ୍ଡୀ ସମୁଦ୍ରକୂଳ ପର୍ଯ୍ୟନ୍ତ ଐତିହାସିକ ପଦଯାତ୍ରା କରିଥିଲେ ଯାହା କି 'ଐତିହାସିକ ଦାଣ୍ଡିଯାତ୍ରା' ନାମରେ ଖ୍ୟାତ । ଏହି ପଦଯାତ୍ରା ଓଡ଼ିଶାର ସତ୍ୟାଗ୍ରହୀମାନଙ୍କ ଉପରେ ବଳିଷ୍ଠ ପ୍ରଭାବ ପକାଇଥିଲା ଓ ସେମାନଙ୍କ ମଧ୍ୟରେ ପ୍ରବଳ ଆଲୋଡ଼ନ ସୃଷ୍ଟି କରିଥିଲା । ଅପୂର୍ବ ଉତ୍ସାହ ଉଦ୍ଦୀପନା ମଧ୍ୟରେ ସେମାନେ ୧୯୩୦ ମସିହା ମାର୍ଚ୍ଚ ମାସ ୬ରୁ ୧୩ ତାରିଖ ପର୍ଯ୍ୟନ୍ତ ସମସ୍ତ ଦିବସଗୁଡ଼ିକୁ 'ଜାତୀୟ ଦିବସ' ଭାବେ ଓଡ଼ିଶାର କୋଣ ଅନୁକୋଣରେ ଅତି ନିଷ୍ଠାର ସହ ପାଳନ କରିଥିଲେ ।

ଗୋପବନ୍ଧୁ ଚୌଧୁରୀଙ୍କ ନେତୃତ୍ୱରେ ୨୧ ଜଣ ସତ୍ୟାଗ୍ରହୀ ବାଲେଶ୍ୱର ଜିଲ୍ଲାର ସମୁଦ୍ର ତଟବର୍ତ୍ତୀ ଐତିହାସିକ 'ଇଞ୍ଚୁଡ଼ି ଅଭିମୁଖେ ପଦଯାତ୍ରାର ଶୁଭାରମ୍ଭ କରିଥିଲେ । ମହାତ୍ମା ଗାନ୍ଧୀଙ୍କ ଦାଣ୍ଡୀ ପଦଯାତ୍ରା ସହ ତାଳ ଦେଇ କଟକ ସ୍ୱରାଜ ଆଶ୍ରମରୁ ବାହାରି ବାଲେଶ୍ୱର ଜିଲ୍ଲାର ଶେଷ ସୀମା ସମୁଦ୍ର କୂଳରେ ଅବସ୍ଥିତ 'ଇଞ୍ଚୁଡ଼ି' ଗ୍ରାମ ପର୍ଯ୍ୟନ୍ତ ଯାତ୍ରା କରିଥିଲେ । ଏହି ଯାତ୍ରାକୁ ମହିୟସୀ ନାରୀ ସତ୍ୟାଗ୍ରହୀ ଶ୍ରୀମତୀ ମାଳତୀ ଦେବୀ ଓ ମା' ରମାଦେବୀ ପୁଷ୍ପମାଲ୍ୟର ଅର୍ଘ୍ୟ ପ୍ରଦାନ ପୂର୍ବକ ଶୁଭାରମ୍ଭ କରିଥିଲେ । ଏହି ଲବଣ ସତ୍ୟାଗ୍ରହ ଆନ୍ଦୋଳନରେ ପ୍ରସିଦ୍ଧିଲାଭ କରିଥିବା 'ଇଞ୍ଚୁଡ଼ି' ଯାତ୍ରାରେ ସତ୍ୟାଗ୍ରହୀମାନେ ଲୌହସ୍ତମ୍ଭବାହିନୀ, ଗଞ୍ଜାମ ବାହିନୀ, ପତିତପାବନ ବାହିନୀ, ସମ୍ବଲପୁର ବାହିନୀ, ଏପରିକି ଓଡ଼ିଶା ଗୁଜରାଟୀ ବାହିନୀ ସାମିଲ ହୋଇ ୧୯୩୦ ମସିହା ଏପ୍ରିଲ ମାସ ୧୩ ତାରିଖ ସନ୍ଧ୍ୟାରେ ଇଞ୍ଚୁଡ଼ିଠାରେ ପହଞ୍ଚିଥିଲେ । ଆଚାର୍ଯ୍ୟ ହରିହର ଦାଶ ସର୍ବପ୍ରଥମେ ସେଠାରେ ଲବଣ ଆଇନକୁ ବିରୋଧ କରି ମୁଠାଏ ଲୁଣମାଟି ଉଠାଇ ଉତ୍କଳମାଟିରେ ଲବଣ ସତ୍ୟାଗ୍ରହର ଅୟମାରମ୍ଭ କରିଥିଲେ । ଆଇନଅମାନ୍ୟ ଅଭିଯୋଗରେ ଆଚାର୍ଯ୍ୟ ହରିହରଙ୍କ ସମେତ ୬୦ ଜଣ ସତ୍ୟାଗ୍ରହୀଙ୍କୁ ଇଞ୍ଚୁଡ଼ିଠାରେ ଗିରଫ କରାଯାଇଥିଲା । ଏହି ଗିରଫଦାରୀର ପ୍ରତିବାଦ ସମଗ୍ର ଓଡ଼ିଶାର ସହର, ମହକୁମା, ଗ୍ରାମ, ଏପରିକି ନିପଟ ପୁରପଲ୍ଲୀରେ ବ୍ୟାପକ ହେବାକୁ ଲାଗିଲା । ଏହାର ସୁଦୂରପ୍ରସାରୀ ପ୍ରଭାବ ଲବଣ ସତ୍ୟାଗ୍ରହ ଉତ୍ତପ୍ତ ଲାଭା ଭଳି ସତ୍ୟାଗ୍ରହର ବହ୍ନି ଚତୁର୍ଦ୍ଦିଗକୁ ବିଚ୍ଛୁରିତ କରି ଏକ ଅଭୂତ ପୂର୍ବ ଗଣଆନ୍ଦୋଳନ ଗଢ଼ି ତୋଳିଲା । ଇତିହାସ ପୃଷ୍ଠାରେ 'ଇଞ୍ଚୁଡ଼ି'ର ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇଗଲା ଓ ଅଗଣିତ ସତ୍ୟାଗ୍ରହୀଙ୍କର ପୁଣ୍ୟ ତୀର୍ଥଭୂମି ରୂପେ ବିଦିତ ହେଲା । ଭାରତ ତଥା ଓଡ଼ିଶାରେ ମୁକ୍ତି ସଂଗ୍ରାମରେ ତାହା ଗୌରବୋଜ୍ଜ୍ୱଳ ଇତିବୃତ୍ତିର ଏକ ଦୀପ୍ତିମନ୍ତ ଅଧ୍ୟାୟ ସୃଷ୍ଟି କଲା ।

ବର୍ଦ୍ଦୋଲୀ ସଂଗ୍ରାମରେ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲଙ୍କ ଭଳି ଇଞ୍ଚୁଡ଼ି ସତ୍ୟାଗ୍ରହରେ ବାଲେଶ୍ୱରର ଅଗ୍ନିବର୍ଷୀ ଯୁବ ସତ୍ୟାଗ୍ରହୀ, ସୁରେନ୍ଦ୍ର ନାଥଙ୍କ କାର୍ଯ୍ୟକ୍ରମ କେବଳ ତୁଳନୀୟ ନୁହେଁ ପ୍ରଣିଧାନ ଯୋଗ୍ୟ । ଲବଣ ଆଇନ ଭଙ୍ଗକାରୀ ଅଗଣିତ ନାରୀ, ପୁରୁଷ, ପୁରପଲ୍ଲୀର ଆବାଳ-ବୃଦ୍ଧ-ବନିତା ଅଦମ୍ୟ ଉଦ୍ଦୀପନା ସହ ଏକ ବିରାଟ ଗଣ ଆନ୍ଦୋଳନ ଗଢ଼ି ତୋଳିଲେ, ଯାହା କ୍ରମେ ଅସାଧାରଣ ଗଣ ବିପ୍ଳବ ଭାବେ ବିସ୍ତାରିତ ହୋଇ ଇଂରେଜ ଶାସନକୁ ଅଚଳ ଓ ପଙ୍ଗୁ କରି ପକାଇଥିଲା । ବହୁ ନେତା, ସତ୍ୟାଗ୍ରହୀ ହସି ହସି କାରାବରଣ କଲେ । ଉତ୍କଳର ସତ୍ୟାଗ୍ରହ ସଫଳତାର ଶୀର୍ଷରେ ଏଭଳି ପହଞ୍ଚି ପାରିଥିଲା ଯେ ସମଗ୍ର ଦେଶବାସୀଙ୍କୁ ତାହା ସ୍ତମ୍ଭୀତ କରିଥିଲା ।

ଦ୍ୱିତୀୟ ବିଶ୍ୱଯୁଦ୍ଧ (୧୯୩୯ ମସିହା) ପରେ ବ୍ରିଟିଶ୍ ସରକାରଙ୍କ ସ୍ୱାଧୀନତା ଘୋଷଣାରେ କାଳାତିପାତ ନୀତି ଓ ଅନିଶ୍ଚିତତାର ପ୍ରତିବାଦ ସ୍ୱରୂପ, ଗାନ୍ଧିଜୀ ୧୯୪୨ ମସିହା ଅଗଷ୍ଟ ୮ ତାରିଖ ରାତିରେ ବମ୍ବେର ଶାନ୍ତି ମଇଦାନଠାରେ ବ୍ରିଟିଶ ଶାସନ ବିରୋଧରେ 'ଭାରତ ଛାଡ଼' ଆନ୍ଦୋଳନର ଆହ୍ୱାନ ଦେବା ସହ ଆନ୍ଦୋଳନର ମୂଳମନ୍ତ୍ର 'କର ବା ମର' ଆଦର୍ଶକୁ ଗଣସମାବେଶରେ ବଜ୍ର ନିର୍ଘୋଷ ସ୍ୱରରେ ଉପସ୍ଥାପିତ କଲେ । ସେହି ମନ୍ତ୍ରର ସ୍ପନ୍ଦନ ସହ ଭାରତ ଛାଡ଼ ଆନ୍ଦୋଳନର ରଣହୁଙ୍କାର ସମଗ୍ର ଭାରତବର୍ଷରେ ବିଦ୍ୟୁତ୍ ବେଗରେ ପ୍ରସାରିତ ଓ

ପ୍ରତିଧ୍ୱନିତ ହେବାକୁ ଲାଗିଲା । ସବୁଥର ପରି ସେହି ରଣହୁଙ୍କାରର ପଦଧ୍ୱନି ସମଗ୍ର ଓଡ଼ିଶାର ସୁଦୂର ମାଳଅଞ୍ଚଳଠାରୁ ଉପକୂଳବର୍ତ୍ତୀ କଟକ, ପୁରୀ, ବାଲେଶ୍ୱର, ଗଞ୍ଜାମ ଜିଲ୍ଲାମାନଙ୍କର ନଦନଦୀ ଘେରା ଚିର ବନ୍ୟା ପ୍ରପୀଡ଼ିତା ଗ୍ରାମାଞ୍ଚଳ ଓ ଧୋଇଆ ଅଞ୍ଚଳମାନଙ୍କୁ ମଧ୍ୟ ବ୍ୟାପି ଯାଇଥିଲା । ଭାରତଛାଡ଼ ଆହ୍ୱାନ, 'ଅଗଷ୍ଟ ବିପ୍ଳବ' ନାମରେ ପରିଚିତ ଲାଭ କଲା । ଏହି ବିପ୍ଳବର ଭୟଙ୍କର ପଦଧ୍ୱନି କଟକସ୍ଥ ରେଭେନ୍ସା ମହାବିଦ୍ୟାଳୟରେ ସର୍ବପ୍ରଥମେ ପ୍ରକମ୍ପିତ ହୋଇଥିଲା । ଗାନ୍ଧିଜୀଙ୍କ 'କର ବା ମର' ମନ୍ତ୍ରରେ ଅଭିମନ୍ତ୍ରିତ ହୋଇ ଦେଶମାତୃକାର ସ୍ୱାଧୀନତା ଚିନ୍ତାରେ ଅନୁପ୍ରାଣିତ ହୋଇ କିଶୋର ବୟସରେ ଛାତ୍ର ସଂଗ୍ରାମୀ ନେତୃବୃନ୍ଦ, ବନମାଳୀ ପଟ୍ଟନାୟକ, ଅଶୋକ ଦାସ, ବିରେନ୍ ମିତ୍ର, ବିଭୁଧେନ୍ଦୁ ମିଶ୍ର ଏବଂ ସୁରଜମଲ ସାହାଙ୍କ ନେତୃତ୍ୱରେ ପାଖାପାଖି ୨୦୦ ଛାତ୍ର ମହାବିଦ୍ୟାଳୟର ଆସବାବପତ୍ର ଭାଙ୍ଗିରୁଜି ତହିଁରେ ଅଗ୍ନି ସଂଯୋଗ କରି ଭସ୍ମୀଭୂତ କରି ଦେଇଥିଲେ । ସେହିଭଳି ଯାଜପୁରର ବରୀ ଆଶ୍ରମରେ ପୋଲିସଦ୍ୱାରା ଜବତ ହୋଇଥିବା ଆସବାବପତ୍ରକୁ ସତ୍ୟାଗ୍ରହୀମାନେ ଜାଳିପୋଡ଼ି ଏକ ଧ୍ୱଂସ ସ୍ତୂପରେ ପରିଣତ କରି ଦେଇଥିଲେ ।

ଭାରତଛାଡ଼ ଆନ୍ଦୋଳନର ତୂର୍ଯ୍ୟନାଦ ଘନ ଜଙ୍ଗଲ ଓ ପାହାଡ଼ ଘେରା କୋରାପୁଟ ଜିଲ୍ଲାରେ ମଧ୍ୟ ନିନାଦିତ ହୋଇଥିଲା । ସର୍ବଶ୍ରୀ ରାଧାକୃଷ୍ଣ ବିଶ୍ୱାସରାୟ, ରାଧାମୋହନ ସାହୁ ଓ ସଦାଶିବ ତ୍ରିପାଠୀଙ୍କ ଭଳି ଉତ୍ସାହୀ ଓ ଦୁଃସାହସିକ ସତ୍ୟାଗ୍ରହୀମାନଙ୍କ ନେତୃତ୍ୱରେ ୨୦୦ ଜଣ କଂଗ୍ରେସ ଆନ୍ଦୋଳନକାରୀ ଅଗଷ୍ଟ ୧୭ ତାରିଖ ଦିନ ସିମୁଳିଗୁଡ଼ା ଡାକବଙ୍ଗଳାକୁ ଘେରାଉ କରିଥିଲେ ।

୧୮୧୭ ଖ୍ରୀଷ୍ଟାବ୍ଦଠାରୁ ଆରମ୍ଭ କରି ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଭାରତମାତା ସ୍ୱାଧୀନତା ହେବା ପର୍ଯ୍ୟନ୍ତ ପ୍ରତ୍ୟେକ ସ୍ତରରେ ଉତ୍କଳର ନରନାରୀ ଜାତୀୟ ସ୍ରୋତରେ ନିଜକୁ ସାମିଲ୍ କରି ସ୍ୱାଧୀନତା ଆନ୍ଦୋଳନରେ ନିଜର ସୌର୍ଯ୍ୟ, ବୀର୍ଯ୍ୟ, ଦୁଃସାହସିକ ମନୋବଳର ପରିଚୟ ପ୍ରଦାନ କରିଥିଲେ ।

ଅବସରପ୍ରାପ୍ତ ପ୍ରଫେସର
ଏସ୍.ସି.ବି. ମେଡ଼ିକାଲ କଲେଜ
'ସ୍ମିତାସ୍ମୃତି', ପ୍ଲଟ ନଂ-୧୫୭୧
ମହାନଦୀ ବିହାର, କଟକ-୪

---

# ଅବତରି ଆସ ମା' ମହିଷମର୍ଦ୍ଦିନୀ

ଭାରତୀ ନାୟକ



ମା'ଗୋ, ମମତାର ମଧୁର ମୂରତି ତୁ,
ପ୍ରେମର ରୂପ ଅନନ୍ତ,
ପ୍ରୀତିପୂର୍ଣ୍ଣ ପୃଥିବୀ, ତୋହରି ଆଶିଷେ ପ୍ରାଣବନ୍ତ ।
ବିଷାଦର ବଉଦ ଭାସେ ତୋ' ଆଖିରେ ଆଜି,
ଶାରଦ ଆକାଶେ ଦେଖି କଳା ଧୂମରାଜି ।
ତୋ' ସ୍ନେହର ଶିଶୁମାନେ ଯୁଦ୍ଧରେ ଯାଇଛନ୍ତି ମାତି,
ବାରୁଦ, ଗୁଳି, କମାଣ, ବୋମାରେ ଦୁଲୁକେ ପୃଥିବୀ ।
ମା'ଗୋ, ତୋ' ପାଶେ ବଳିନାମେ
କଟାହୁଏ ସହସ୍ର ନିରୀହର ମୁଣ୍ଡ,
ହୃଦୟ ତୋର କେମିତି ରହିଛି ଥୟ,
ଦେଖି ଏ ପାଶବ କାଣ୍ଡ ?
ନିତି ବିବସନା ହୁଏ ଦ୍ରୌପଦୀ
କପଟ ପାଶାରେ ଶକୁନିର
କେବେ ହେବ ଦୁର୍ଯ୍ୟୋଧନର ଜାନୁଭଙ୍ଗ,
ବେଣୀ ବନ୍ଧାହେବ ଯାଜ୍ଞସେନୀର ?
ମା'ଗୋ, ଦୁର୍ଯ୍ୟୋଧନ ସଭାରେ,
ଯୁଧିଷ୍ଠିର, ଭୀମ, ଅର୍ଜ୍ଜୁନ ଆଦି
ମହାବୀରମାନେ, ଦ୍ରୌପଦୀ ଭଳି ଦୁର୍ଲଭ ରତ୍ନମାନଙ୍କୁ,
କେଡ଼େ ସହଜରେ ବାଜି ଲଗାଇ ଦିଅନ୍ତି ।
ଅନାୟାସେ ଧର୍ମନାମେ,
ଆପଣା ସ୍ୱାଧୀନତା ଟିକକ ବିକି ଦିଅନ୍ତି ।
ଭୀଷ୍ମ ପିତାମହ ବିଦୁର ଆଦି
ବିବେକୀ ପୁରୁଷମାନେ ନୀରବ ଦ୍ରଷ୍ଟା ସାଜିଥାନ୍ତି ।
ମା'ଗୋ, ସବୁବର୍ଷ ତୋତେ ଆହ୍ୱାନ କରନ୍ତି,
ଢାଳି ପୂଜା ଅର୍ଘ୍ୟ ଆଦି,
ନାନା ସାଜସଜ୍ଜା, ଅଳଙ୍କାର, ନୂତନ ବସନେ,
ତୋତେ ଦିଅନ୍ତି ମଣ୍ଡି ।
ମା'ଗୋ, ଛଳନାର ମହିଷାସୁର ଆଜି ଉଠିଛି ମାତି,
ତୋ' ଶକ୍ତି ତ୍ରିଶୂଳେ, ବିନ୍ଧ କର ତା'ର ଛାତି ।

ଏମ୍.ଆଇ.ଜି.-୧/୧୮୦
ସତ୍ୟସାଇ ଏନ୍‌କ୍ଲେଭ
ଖଣ୍ଡଗିରି, ଭୁବନେଶ୍ୱର

# ସ୍ୱାଧୀନତା ସଂଗ୍ରାମ ପୃଷ୍ଠଭୂମିର ଅନ୍ତରାଳେ

ଭାନୁ ପ୍ରକାଶ ଯୋଷୀ

ବ୍ରିଟିଶ ଶାସନାଧୀନ ହେବା ବହୁ ପୂର୍ବରୁ ଭାରତ ଆର୍ଥିକ ଦିଗରେ ସମୃଦ୍ଧ ରାଷ୍ଟ୍ର ରୂପେ ବିଶ୍ୱଦରବାରରେ ପରିଚିତ ହୋଇ ସାରିଥାଏ । ଦେଶ ମଧ୍ୟରେ ଆବଶ୍ୟକତାରୁ ଅଧିକ ଉତ୍କୃଷ୍ଟ ଉତ୍ପାଦନ ଯୋଗୁଁ ବିଦେଶରେ ବେପାର କରି ବିଦେଶୀ ମୁଦ୍ରା ସଂଗ୍ରହରେ ଭାରତ ଅନ୍ୟ ଦେଶ ତୁଳନାରେ ଅଗ୍ରଣୀ ଥାଏ । ପୁନଶ୍ଚ, ନିଜେ ସ୍ୱାବଲମ୍ବୀ ଯୋଗୁଁ ଆଭ୍ୟନ୍ତରୀଣ ଚାହିଦା ମେଣ୍ଟାଇବାକୁ ବିଦେଶରୁ ସାମଗ୍ରୀ ବଦଳରେ ସାମଗ୍ରୀ ଆମଦାନୀ କି ଏଥିପାଇଁ ବିନିମୟ-ମୁଦ୍ରା ଖର୍ଚ୍ଚ କରିବା ଆବଶ୍ୟକତା ତା'ର ପଡୁନଥାଏ । ଆନ୍ତର୍ଦେଶୀୟ ବିନିମୟ ମୁଦ୍ରା ପ୍ରତି ବଦଳରେ ପର୍ଯ୍ୟାପ୍ତ ବିଦେଶୀମୁଦ୍ରା ରୂପେ ବହୁମୂଲ୍ୟ ଧାତବ କିମ୍ବା ସୁନାରୂପା ହିଁ ସଂଗୃହୀତ ହୋଇ ଦେଶର ସମୃଦ୍ଧି ହେଉଥାଏ ।

ଭାରତର ବାଣିଜ୍ୟ ବ୍ୟବସାୟ ସଂପର୍କରେ ଆଲୋଚନା ଅବସରରେ ସ୍ୱତଃ ମାନସପଟରେ ବର୍ତ୍ତମାନ ଯୁଗର ବାଣିଜ୍ୟ ବେପାର ତଥା ଉତ୍ପାଦିତ ସାମଗ୍ରୀମାନ ଉଙ୍କିମାରନ୍ତି ଏବଂ ଏକଦା ବାଣିଜ୍ୟ ବେପାରରେ ଭାରତକୁ ସେମାନେ ସମୃଦ୍ଧ କରିଥିବା ବିଶ୍ୱାସ ଜନ୍ମାଇ ପାରନ୍ତି ନାହିଁ । ଆଧୁନିକ ବୈଜ୍ଞାନିକ ପଦ୍ଧତିର କଳକାରଖାନାରେ ପ୍ରସ୍ତୁତ ସାମଗ୍ରୀ ବିଶ୍ୱବଜାର କରି ବିଦେଶୀ ପୁଞ୍ଜି ଅର୍ଜନ କରିବା ସମ୍ଭବ ହେଉନଥିବା ବେଳେ ପାରମ୍ପରିକ କୁଟୀର ଓ ହସ୍ତଶିଳ୍ପ ଯୁଗରେ ବିଶ୍ୱ ବଜାର ଦଖଲ ଅନେକଙ୍କୁ କାଳ୍ପନିକ ବୋଧ ହେବା ସ୍ୱାଭାବିକ । କିନ୍ତୁ ଏହା ସତ୍ୟ ଯେ ଉତ୍କୃଷ୍ଟ ଗୁଣମାନର ବିଦେଶୀ ଚାହିଦା ମେଣ୍ଟାଉଥିବା ଭାରତ ନିର୍ମିତ ସାମଗ୍ରୀ ଦରିଆପାରି ବେପାରରେ ବିପୁଳ ଧନ ଅର୍ଜନ କରୁଥାଏ । ବିଦେଶରେ କାଁ ଭାଁ ଭାରତର ଆଭ୍ୟନ୍ତରୀଣ ଚାହିଦା ସାମଗ୍ରୀ କଦବା ଉତ୍ପାଦିତ ହେଉଥିଲେ ମଧ୍ୟରେ ଉତ୍କୃଷ୍ଟ ଭାରତୀୟ ଗୁଣମାନ ନଥିବାରୁ ଭାରତୀୟ ବଜାରରେ ପ୍ରବେଶ କରିବାରେ ସେସବୁ ଅକ୍ଷମ ଥାଆନ୍ତି । କୁଟୀର ଓ ହସ୍ତଶିଳ୍ପର ପ୍ରତିଦ୍ୱନ୍ଦୀ ବଜାର କରିବା ପାଇଁ ଦେଶ ବିଦେଶର ସେତେବେଳର କଳକାରଖାନାରେ ଉତ୍ପାଦନ ଅସମ୍ଭବ ଥାଏ । ୟୁରୋପ ବଜାରରେ ଭାରତୀୟ ପ୍ରସ୍ତୁତ କାର୍ପାସ ବସ୍ତ୍ରର ଚାହିଦା ବେଶୀ । ଏଇ ସମସ୍ତ କାରଣରୁ ଭାରତ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦେଶମାନଙ୍କରୁ ବିପୁଳ ଧନ ଅର୍ଜନ କରୁଥାଏ । କଳିଙ୍ଗ ସଦୃଶ ଭାରତର ବିଭିନ୍ନ ଅଞ୍ଚଳର ବ୍ୟବସାୟୀମାନେ ଦରିଆପାରିରୁ ବିପୁଳ ଧନ ଅର୍ଜନ କରିଥିବା ଜଣାଯାଇଥାଏ ।

ଏଇଠି ସ୍ମରଣ କରିଦିଆଯାଇ ପାରେ ଯେ, ଦେଶର ବିଭିନ୍ନ ଜମିଦାରୀ, ରାଜ୍ୟ ଭିନ୍ନ ଭିନ୍ନ ଅଞ୍ଚଳରେ ବିଭକ୍ତ ରହି ନିଜ ନିଜ ଶାସକଙ୍କ ଦ୍ୱାରା ଶାସିତ ହୋଇ ମଧ୍ୟ ଭାରତୀୟତା ସେମାନେ ତ୍ୟାଗ ନକରି ଏକତା ସୂତ୍ରରେ ଆବଦ୍ଧ ରହିଥାନ୍ତି । ଏଣୁ ସାମଗ୍ରିକ ଭାବେ ୧୮୨୦ ମସିହା ଯାଏଁ ଭାରତବର୍ଷ ସମସ୍ତ କ୍ଷେତ୍ରରେ ସ୍ୱାବଲମ୍ବୀ ଓ ସମୃଦ୍ଧ ରହିଥାଏ । ସମସାମୟିକ ଚାହିଦା ଅନୁରୂପ ଉଦ୍ୟୋଗଧନ୍ଦା କ୍ଷେତ୍ରରେ ଅନ୍ୟ ଦେଶମାନଙ୍କ ତୁଳନାରେ ଭାରତ ଉନ୍ନତ ଓ ସମୃଦ୍ଧ ରାଷ୍ଟ୍ର ରୂପେ ପରିଚିତ ହେଉଥାଏ । ଏତଦ୍ ସଂପର୍କୀୟ ବିବରଣୀ ଊନବିଂଶ ଶତାବ୍ଦୀର ଇଂରେଜ ଐତିହାସିକ ଡ. ରବର୍ଟସନଙ୍କ ୧୮୧୭ ମସିହାର 'ଏ ହିଷ୍ଟୋରିକାଲ ଡିସ୍କିଜେସନ୍ କନସର୍ଣ୍ଣିଂ ଇଣ୍ଡିଆ' ପୁସ୍ତକରେ ଉପଲବ୍ଧ ହୁଏ । ପୁସ୍ତକର ୧୮୦ ପୃଷ୍ଠାରେ କୁହାଯାଇଛି, 'ପ୍ରତ୍ୟେକ ଯୁଗରେ ସୁନାରୂପା ବିଶେଷ କରି ରୂପା ଅନ୍ୟ ଦେଶମାନଙ୍କରୁ ଭାରତକୁ ଆମଦାନୀ କରାଯାଉଥାଏ ଯଦ୍ଦ୍ୱାରା ଏହାର ସମୃଦ୍ଧି ନିରନ୍ତର ବୃଦ୍ଧି ପାଉଥାଏ । ଭାରତବାସୀଙ୍କୁ ଉପଲବ୍ଧ ଅତ୍ୟନ୍ତ ଅନୁକୂଳ ଜଳବାୟୁ, ଉର୍ବର ଭୂମି ତଥା ଆପଣାର ପ୍ରବୀଣତା, ଦକ୍ଷତା ଓ ପଟୁତା ଅନୁରୂପ ମନୋବାଞ୍ଛିତ ପଦାର୍ଥମାନ ସେମାନେ ସହଜରେ ଲାଭ କରୁଥିଲେ । ପରିଣାମ ସ୍ୱରୂପ ବାହ୍ୟଜଗତରୁ ତା'ର ବାଣିଜ୍ୟ ବେପାର ଏକ ଏପରି ସୁନିଶ୍ଚିତ ଆଧାର ଉପରେ ପ୍ରତିଷ୍ଠିତ ଥାଏ, ଯହିଁରେ ଭାରତ ପ୍ରାକୃତିକ ଏବଂ ହସ୍ତନିର୍ମିତ ବୈଶିଷ୍ଟ୍ୟସମ୍ପନ୍ନ ସାମଗ୍ରୀମାନଙ୍କ ପ୍ରତିବଦଳରେ ସେଠୁଁ ବହୁମୂଲ୍ୟ ଧାତବ ଅଥବା ସୁନାରୂପା ହିଁ ଆଣୁଥାଏ ।' ସେହି କାରଣ ଯୋଗୁଁ ଭାରତ ଅନେକଥର ବିଦେଶୀଙ୍କ ଆକ୍ରମଣ ଓ ଲୁଣ୍ଠନର ସମ୍ମୁଖୀନ ହୋଇଥିବାର ନଜିର ରହିଛି । ଅନୁରୂପ ଭାବେ ଆର୍ଥିକ ଲୁଣ୍ଠନ ପାଇଁ ଇଂରେଜଙ୍କ କମ୍ପାନୀ ସରକାର ମଧ୍ୟ ପ୍ରଲୋଭିତ ହୋଇଛି ।

ଇଂରେଜମାନେ ବାଣିଜ୍ୟ ସକାଶେ ଭାରତ ମଧ୍ୟକୁ ପ୍ରବେଶ କରିବା ମାତ୍ରେ ଭାରତର ସମୃଦ୍ଧି ବିଷୟରେ ଅବଗତ ହେବାକୁ ସେମାନଙ୍କୁ ଆଉ ବେଶୀ ସମୟ ଲାଗେ ନାହିଁ । ବ୍ରିଟେନ୍ ଭାରତରେ ସ୍ଥାୟୀ ଉପନିବେଶ ସ୍ଥାପନ ଓ ତାକୁ ସଂପୂର୍ଣ୍ଣ ଦଖଲ ପାଇଁ ଇଷ୍ଟଇଣ୍ଡିଆ କମ୍ପାନୀକୁ ବାଣିଜ୍ୟ ବେପାର ନାଁରେ ସମସ୍ତ ସୁଯୋଗ ଦେବାକୁ ପଛାଏ ନାହିଁ । କମ୍ପାନୀ ମଧ୍ୟ ଏହାରି ସୁଯୋଗରେ ସମସ୍ତ ପ୍ରକାରର ଉଦ୍ୟମରୁ ବିରତ ହୁଏ ନାହିଁ । ଉଦ୍ଦେଶ୍ୟ ହାସଲ ପାଇଁ ଶୋଷଣ, ଲୁଣ୍ଠନ, ଅତ୍ୟାଚାର

ଆଦି ଆବଶ୍ୟକୀୟ ଉପାୟମାନ ପ୍ରୟୋଗ କରିବାକୁ କୁଣ୍ଠା ମଧ୍ୟ କରେ ନାହିଁ । କମ୍ପାନୀ ସରକାର ୧୭୫୭ ମସିହାର ପଲାସି ଯୁଦ୍ଧ ବିଜିତ ହେବା ପରଠୁଁ ନେପୋଲିୟନଙ୍କୁ ୱାଟରଲୁ ଯୁଦ୍ଧରେ ୧୮୧୫ ମସିହାରେ ପରାସ୍ତ କରିବା ଅବଧି ମଧ୍ୟରେ ଭାରତ ଲୁଣ୍ଠନରୁ ସଂଗୃହୀତ ଅନ୍ୟୁନ ୧୫ ଅରବ ଟଙ୍କାର ବିପୁଳ ଧନରାଶି ଇଂଲଣ୍ଡକୁ ଦାଖଲ କରେ । ମହମ୍ମଦ ଗଜନଭି ଓ ମହମ୍ମଦ ଘୋରୀଙ୍କ ଭାରତ ଆକ୍ରମଣ ଓ ଲୁଣ୍ଠନରେ ସଂଗୃହୀତ ଧନରାଶି ଏହାରି ସମ୍ମୁଖରେ ଅତ୍ୟନ୍ତ ନଗଣ୍ୟ ।

ପ୍ରାୟ ଏକ ଦଶନ୍ଧି ପରେ ୧୭୬୮ ମସିହାରେ ପଲାସି ଯୁଦ୍ଧରେ ଲୁଣ୍ଠିତ ବିପୁଳ ଧନର ବିନିଯୋଗ ସୁଯୋଗ ପାଇ ଇଂଲଣ୍ଡର ଜେମ୍‌ସୱାଟଙ୍କଦ୍ୱାରା ଆବିଷ୍କୃତ ବାଷ୍ପଚାଳିତ ଇଞ୍ଜିନ ପ୍ରୟୋଗରେ ବ୍ରିଟେନରେ ଉଦ୍ୟୋଗକକ୍ରାନ୍ତି ସମ୍ଭବ ହୁଏ । ଏହାରି ଉପରେ ଆଲୋକପାତ କରିବାକୁ ଯାଇ ବ୍ରୁକ୍ସ ଏଡ଼ମ୍ସ ତାଙ୍କ ସୁପ୍ରସିଦ୍ଧ 'ଦି ଲ ଅଫ୍ ସିଭିଲାଇଜେସନ ଆଣ୍ଡ ଡିକେ' ପୁସ୍ତକର ୨୬୩ ଓ ୨୬୪ ପୃଷ୍ଠାରେ ଲୁଣ୍ଠିତ ଧନ ବିନା ଇଂଲଣ୍ଡର ଉଦ୍ୟୋଗକକ୍ରାନ୍ତି କିପରି ଅସମ୍ଭବ ଥିଲା ତାହା ସ୍ପଷ୍ଟ କରିଅଛନ୍ତି - 'ଯଦି ଜେମ୍ସୱାଟ ୫୦ ବର୍ଷ ପୂର୍ବେ ଜନ୍ମ ନେଇଥାନ୍ତେ ତେବେ ତାଙ୍କ ନିଜ ତାଙ୍କରି ଅନୁସନ୍ଧାନର କିଛି ଚିହ୍ନବର୍ଣ୍ଣ ବି ନଥାନ୍ତା । ସମ୍ଭବତଃ ମାନବୀୟ ସୃଷ୍ଟିର ଆରମ୍ଭରୁ ବର୍ତ୍ତମାନ ଯାଏଁ କେବେ ବି କୌଣସି ପୁଞ୍ଜିରେ ଏଡ଼େ ବିରାଟ ଆର୍ଥିକ-ବିତ୍ତୀୟ ଆଉ ରାଜନୈତିକ ଲାଭ ହାସଲ କରାଯାଇ ପାରିନାହିଁ, ଯେତିକି ଭାରତ ଲୁଣ୍ଠନରୁ ବ୍ରିଟେନ ନିଜକୁ ସମସ୍ତ କ୍ଷେତ୍ରରେ ସମୃଦ୍ଧ କରିପାରିଛି ।'

ଇଂଲଣ୍ଡର ଧନ ସଂଗ୍ରହ ଓ ଉପନିବେଶ ସ୍ଥାପନର ମୋହ ଦିନକୁ ଦିନ ବୃଦ୍ଧି ପାଇବାକୁ ଲାଗେ । ବିଶ୍ୱଦରବାରରେ ବିଧି ବ୍ୟବସ୍ଥାର ଦ୍ୱାହି ଦେଇ ଚତୁରତାର ସହ ଭାରତୀୟ ଅର୍ଥନୀତିକୁ ଛିନ୍ନଭିନ୍ନ କରି ନିଜ ଭଣ୍ଡାର ଭରିବାରୁ କ୍ଷାନ୍ତ ହେଉନଥିବାର ଦୃଷ୍ଟାନ୍ତ ହେଉଛି ୧୮୧୩ ମସିହାରେ ବ୍ରିଟିଶ ପାର୍ଲିଆମେଣ୍ଟରେ ଇଷ୍ଟଇଣ୍ଡିଆ କମ୍ପାନୀ ପାଇଁ ଚାର୍ଟର ଅଧିନିୟମକୁ ଆଗାମୀ ୨୦ ବର୍ଷ ପାଇଁ ପୁନଃ ନବୀକରଣ । ନିଜ ଗର୍ହିତ ଉଦ୍ଦେଶ୍ୟ ସାଧନ ପାଇଁ ତାହାର ଦୁଇ ଭିନ୍ନ ଭିନ୍ନ ସମିତି ସୁପାରିଶ ଆଧାରିତ ଏକ ସୁଚିନ୍ତିତ 'ସପ୍ତସୂତ୍ରୀ' କାର୍ଯ୍ୟ ଯୋଜନାକୁ ଏଇ ସନନ୍ଦରେ ବହୁ ପୂର୍ବରୁ ସାମିଲ କରାଇ ନିଆଯିବା ।

**୧. ଇଂଲଣ୍ଡ ଉତ୍ପାଦିତ ସାମଗ୍ରୀର କରମୁକ୍ତ ଭାରତ ପ୍ରବେଶ**

ଏହି ସୂତ୍ରମତେ ଇଂଲଣ୍ଡ ଉତ୍ପାଦିତ ସାମଗ୍ରୀ ଭାରତ ପ୍ରବେଶ କାଳରେ ସଂପୂର୍ଣ୍ଣ କରମୁକ୍ତ କିମ୍ବା ନାମକୁ ମାତ୍ର କରଯୁକ୍ତ ହେବ । ଫଳରେ ଭାରତ ମଧ୍ୟରେ ଭାରତ ଉତ୍ପାଦିତ ସାମଗ୍ରୀଠାରୁ ଇଂଲଣ୍ଡ ଉତ୍ପାଦିତ ସାମଗ୍ରୀ ଶସ୍ତା ହେବ । ନିଜ ଉତ୍ପାଦିତ ସାମଗ୍ରୀ ନିଜ ଦେଶରେ ମହଙ୍ଗା ହୋଇ ବିକ୍ରୟ ହ୍ରାସ ଘଟାଇ ସୁଲଭତା ହରାଇବ । ବିକ୍ରି ପରିମାଣ ହ୍ରାସ ପାଉଥିବାରୁ ସାମଗ୍ରୀ ଉତ୍ପାଦନ ହ୍ରାସ କରିବାକୁ ଭାରତ ବାଧ୍ୟ ହେବ ।

**୨. ଭାରତ ଉତ୍ପାଦିତ ସାମଗ୍ରୀର କରଯୁକ୍ତ ଇଂଲଣ୍ଡ ପ୍ରବେଶ**

ଭାରତ ଉତ୍ପାଦିତ ସାମଗ୍ରୀ ଇଂଲଣ୍ଡ ପ୍ରବେଶ ଉପରେ ଅତ୍ୟଧିକ ମାହାସୁଲ (କର) ଧାର୍ଯ୍ୟ ହେବ । ଫଳରେ ଭାରତୀୟ ସାମଗ୍ରୀ ଇଂଲଣ୍ଡରେ ମହଙ୍ଗା ହେବ ଏବଂ ପରବର୍ତ୍ତୀ ସମୟରେ ରପ୍ତାନୀ ହ୍ରାସ ପାଇଲେ ଉତ୍ପାଦନକୁ ସୀମିତ କରିବାକୁ ଭାରତ ବାଧ୍ୟ ହେବ । ପ୍ରତିବଦଳରେ ବ୍ରିଟେନରେ ପ୍ରତିଷ୍ଠିତ ଭାରତୀୟ ବଜାରକୁ ବ୍ରିଟେନ ସରକାର ସହଜରେ ଦଖଲ କରିପାରିବ । ଏହାଦ୍ୱାରା ନିଜ ଦେଶର କାରିଗର ଓ ବ୍ୟବସାୟୀଙ୍କ ଆର୍ଥିକ ଅଭିବୃଦ୍ଧି ଘଟିବ ।

**୩. ଭାରତର ନିଜସ୍ୱ ଉତ୍ପାଦିତ କାର୍ପାସ କଞ୍ଚାମାଲ ଉପରେ ଅହେତୁକ କରଧାର୍ଯ୍ୟ**

ଭାରତ ନିଜ ଦେଶ ମଧ୍ୟରେ ପାରମ୍ପରିକ ଉତ୍ପାଦିତ ନିଜ କାର୍ପାସ ଆଦି କଞ୍ଚାମାଲ ଉପରେ ଅହେତୁକ ମାହାସୁଲ ଦେବା ଫଳରେ କଞ୍ଚାମାଲର ମୂଲ୍ୟ ବୃଦ୍ଧି ଯୋଗୁଁ ଉତ୍ପାଦନ ସ୍ଥଳରେ ହିଁ ଉତ୍ପାଦିତ ସାମଗ୍ରୀର ମୂଲ୍ୟ ବୃଦ୍ଧିପାଇବ ଏବଂ ଦେଶ ମଧ୍ୟରେ ଏବଂ ବାହାରେ ପୂର୍ବ ଅପେକ୍ଷା ଭାରତୀୟ ସାମଗ୍ରୀ ଅତ୍ୟଧିକ ମହଙ୍ଗା ହେବ । ପରିଣାମସ୍ୱରୂପ ଭାରତୀୟ କାରିଗର ଓ ବ୍ୟବସାୟୀ ଅସୁବିଧାର ସମ୍ମୁଖୀନ ହେବେ, ଭାରତୀୟ ମାଲ ପାଇଁ ଭାରତୀୟ ବଜାର ମଧ୍ୟ ସଂକୁଚିତ ହୋଇପଡ଼ିବ । ପ୍ରତି ବଦଳରେ ଇଂଲଣ୍ଡର ଉତ୍ପାଦିତ ସାମଗ୍ରୀ ଭାରତ ମଧ୍ୟରେ ସୁଲଭ ହୋଇ ଭାରତୀୟ ବଜାରକୁ ମାଡ଼ି ବସିବ । ଭାରତ ନିଜ ଉତ୍ପାଦିତ ସାମଗ୍ରୀ ଉପଯୁକ୍ତ ବଜାର ହରାଇ ଅଗତ୍ୟା ଉତ୍ପାଦନ ହ୍ରାସ କରିବ । ପ୍ରତିବଦଳରେ କଞ୍ଚାମାଲ ବଳକା ହୋଇ ଉପଯୁକ୍ତ ବଜାର ନପାଇ ଇଂଲଣ୍ଡ ବଜାରରେ ପରୋକ୍ଷ ବାଧ୍ୟବାଧକତା ଯୋଗୁଁ ଭାରତୀୟ ଖାଉଟି ଉଚ୍ଚ ଦରରେ କିଣିବ । କ୍ରମାଗତ ଏଇ କାରଣ ଯୋଗୁଁ ଭାରତୀୟ କାରିଗର ଓ ବ୍ୟବସାୟୀ ହାତବାନ୍ଧି ବସି ରହିବା ବେଳେ ଇଂଲଣ୍ଡ ବ୍ୟବସାୟୀ ଓ କାରିଗରଙ୍କ ରୋଜଗାର ଆଶାତୀତ ଭାବେ ବୃଦ୍ଧି ପାଇବ ।

**୪. ଭାରତ ମଧ୍ୟରେ ଇଂରେଜ ବ୍ୟବସାୟୀ ଓ କାରିଗରଙ୍କୁ ଭାରତରେ ଅବାଦ ରହଣୀ ଓ କାର୍ଯ୍ୟ ସଂପାଦନ ପାଇଁ ଲୋଭନୀୟ ପ୍ରୋତ୍ସାହନ**

କେବଳ ଭାରତ ବଜାର ଦଖଲ ନୁହେଁ ଭାରତୀୟ ପାରମ୍ପରିକ ଧନ୍ଦାକୁ ସହଜରେ ଅକ୍ତିଆର କରିବା ପାଇଁ ଇଂରେଜ କାରିଗର ଓ ବ୍ୟବସାୟୀମାନଙ୍କୁ ଭାରତରେ ରହଣିର ଅବାଧ ସୁଯୋଗ ଓ ସେମାନଙ୍କ କାର୍ଯ୍ୟ ସଂପାଦନ ପାଇଁ ଆନୁଷଙ୍ଗିକ ବିତ୍ତୀୟ ସାହାଯ୍ୟ ଓ ସହଯୋଗର ପ୍ରୋତ୍ସାହନ ଦେବା ବ୍ୟବସ୍ଥା

କରାଯିବ । ଯାହାଫଳରେ ଭାରତୀୟ କାରିଗର ଓ ବ୍ୟବସାୟୀଙ୍କ ଭାରତ ମଧ୍ୟରେ ସ୍ଥାୟୀ ପ୍ରତିଦ୍ୱନ୍ଦ୍ୱୀଙ୍କୁ ପ୍ରତିଯୋଗିତା ପାଇଁ ଠିଆ କରାଇ ଭାରତୀୟ ବଜାରକୁ ଭାରତୀୟଙ୍କଠାରୁ ଛଡ଼ାଇ ନିଆଯିବ ।

**୫. ଭାରତୀୟ ସଫଳ କାରିଗରୀ କୌଶଳ ରହସ୍ୟ ଅପହରଣ**

ଏହି ବ୍ୟବସ୍ଥାଦ୍ୱାରା କମ୍ପାନୀ ସରକାର ଯାବତୀୟ ଉଦ୍ୟମ ଓ ଚକ୍ରାନ୍ତ ସତ୍ତ୍ୱେ ଭାରତୀୟ ବଜାର ସଂପୂର୍ଣ୍ଣ ନଷ୍ଟ ନ ହେବା କାରଣ ହେଉଛି ଭାରତୀୟ କାରିଗରୀ କୌଶଳ । ତାହା ଅକ୍ତିଆର କରି ସେହି ରହସ୍ୟ ନିଜ କାରିଗର ଓ ବ୍ୟବସାୟୀଙ୍କୁ ନଦେବା ଯାଏଁ ଦେଶ ଓ ବିଦେଶରେ ଭାରତୀୟ ବଜାରକୁ ସଂପୂର୍ଣ୍ଣ ଅକ୍ତିଆର କରିବା ଅସମ୍ଭବ । ଏଣୁ ଯେନତେନ ପ୍ରକାରେଣ ଭାରତୀୟ କାରିଗରୀ କୌଶଳ ରହସ୍ୟ ସଂଗ୍ରହ କରି ନିଜ ଦେଶ କାରିଗରଙ୍କୁ ଦେବାକୁ ଯୋଜନା ପ୍ରସ୍ତୁତ କରାଯିବ । ଆବଶ୍ୟକ ସ୍ଥଳରେ ନିଜ ଦେଶରେ ଭାରତୀୟ ମାନ-ପ୍ରତିଦ୍ୱନ୍ଦ୍ୱୀ ସାମଗ୍ରୀ ପ୍ରସ୍ତୁତ ପାଇଁ ଭାରତୀୟ ଦକ୍ଷ କାରିଗରଙ୍କୁ ନିଜ ଦେଶକୁ ନେଇ ଉପଯୋଗ କରିବାକୁ ଆଶୁ ପଦକ୍ଷେପ ନିଆଯିବ । ଭାରତକୁ ସର୍ବସ୍ୱାନ୍ତ କରି ଇଂଲଣ୍ଡର ସମୃଦ୍ଧି ପାଇଁ ଏହା ଏକ ସୁଚିନ୍ତିଜତ କାର୍ଯ୍ୟପନ୍ଥା ବ୍ୟତୀତ ଆଉ କିଛି ନୁହେଁ ।

**୬. ଭାରତର ବିଭିନ୍ନ ଅଞ୍ଚଳକୁ ରେଳ ସଂଯୋଗୀକରଣ**

ସୁବିଧାଜନକ ମାଲ ପରିବହନ ବ୍ୟବସାୟ ଅଭିବୃଦ୍ଧି ପାଇଁ ଏକ ବିଶିଷ୍ଟ ପନ୍ଥା - ଏହା ଭଲଭାବେ ଇଂରେଜ ଜାତି ବୁଝି ସାରିଥାନ୍ତି । ଏଣୁ ଭାରତର ପ୍ରତିକୋଣକୁ ରେଳପଥଦ୍ୱାରା ସଂଯୋଗ କରିବା ପାଇଁ ଏହି ଅଧିନିୟମରେ ଗୁରୁତ୍ୱ ଦିଆଯାଇଥାଏ ଏବଂ ପରବର୍ତ୍ତୀ ସମୟରେ ଅନେକ ରେଳପଥ ନିର୍ମାଣ ପାଇଁ ପଦକ୍ଷେପ ନିଆଯାଏ ।

**୭. ଭାରତ ମଧ୍ୟରେ ସାମ୍ରାଜ୍ୟ ଅଭିବୃଦ୍ଧି ସାଙ୍ଗକୁ ଉପନିବେଶର ସ୍ଥାୟୀକରଣ**

ଭାରତ ଉପରେ ଇଂରେଜ ଜାତିର ପ୍ରଭୁତ୍ୱ ବଜାୟ ରଖିବା ଏବଂ ଇଂରେଜମାନଙ୍କ ଦାସତ୍ୱର ଶୃଙ୍ଖଳରେ ଭାରତୀୟଙ୍କୁ ବାନ୍ଧି ରଖାଯିବାର ବ୍ୟବସ୍ଥା କରାଯିବ । ଯାହାଫଳରେ ଆର୍ଥିକ ଶୋଷଣର ବ୍ୟବସ୍ଥା ନିରନ୍ତର ଚାଲୁ ରଖିବାରେ ଆଉ ବାଧା ନଥିବ ।

ସେଇ ସପ୍ତସୂତ୍ରୀ ଯୋଜନା ଆଧାରିତ ଚାର୍ଟର ଅଧିନିୟମ ଇଷ୍ଟଇଣ୍ଡିଆ କମ୍ପାନୀକୁ ଅମାନବୀୟ ଶୋଷଣର ପଥ ଉନ୍ମୁକ୍ତ କରିଦିଏ । ଫଳରେ ବ୍ୟବସାୟ ନାମରେ ଅବାଧ ଲୁଣ୍ଠନ କରିବାର ସୁଯୋଗକୁ ବ୍ରିଟେନ ହାତଛଡ଼ା କରେ ନାହିଁ । ଭାରତୀୟ ବଜାରକୁ ଅକ୍ତିଆର ସାଙ୍ଗକୁ ବ୍ରିଟେନରେ ଭାରତୀୟ ବଜାରକୁ ବନ୍ଦ କରିଦେବା ପାଇଁ 'ମୂଳୁ ମାଇଲେ ଯିବ ସରି' ନୀତିରେ ଭାରତୀୟ ଉଦ୍ୟୋଗଧନ୍ଦାକୁ ନଷ୍ଟଭ୍ରଷ୍ଟ କରିବା ସକାଶେ ସୁନିୟୋଜିତ କାର୍ଯ୍ୟ ଯୋଜନା କାର୍ଯ୍ୟକାରୀ କରିବା ଆରମ୍ଭ କରେ । ଇଂଲଣ୍ଡ କଳକାରଖାନାରେ ପ୍ରତିଦ୍ୱନ୍ଦ୍ୱୀ ସାମଗ୍ରୀ ପ୍ରସ୍ତୁତ ପାଇଁ ଜୋରଜବରଦସ୍ତି ଲୋଭନୀୟ ସର୍ତ୍ତରେ ଦକ୍ଷ ଭାରତୀୟ କାରିଗରମାନଙ୍କୁ ନିୟୋଜିତ କରି ପରବର୍ତ୍ତୀ ସମୟରେ ଅଧିକ ଉତ୍ପାଦନ ପାଇଁ ଦାଦନ ଶ୍ରମିକର ଯନ୍ତ୍ରଣା ସେମାନଙ୍କୁ ଦେବାକୁ ପଛାଏ ନାହିଁ । ଭାରତୀୟ ଉଦ୍ୟୋଗୀମାନଙ୍କୁ ନାନା ଆଳରେ ହଇରାଣ ହରକତ କରିବାକୁ ମଧ୍ୟ କୁଣ୍ଠା କରେ ନାହିଁ । ତା'ର ଏକ ପ୍ରକୃଷ୍ଟ ଉଦାହରଣ ହେଉଛି ବୁଣାକାରମାନଙ୍କୁ ବାଧ୍ୟବାଧକତାରେ ଋଣ ପ୍ରଦାନ କରି ଋଣ ପରିଶୋଧ ପାଇଁ ତାଙ୍କ ନିୟନ୍ତ୍ରିତ ବଜାରରେ ଉତ୍ପାଦିତ ଜିନିଷକୁ ସର୍ବନିମ୍ନ ଦରରେ ବିକ୍ରି ପାଇଁ ଚକ୍ରାନ୍ତ କରାଇବା । ଇଂଲଣ୍ଡରେ ଭାରତୀୟ ସାମଗ୍ରୀର ମୂଲ୍ୟ ବୃଦ୍ଧି ପାଇଁ ଆଗରୁ ରପ୍ତାନୀ ମାହାସୁଲ ୩୦% ବୃଦ୍ଧି କରାଯାଇ ଥିବା ସତ୍ତ୍ୱେ ପୁନଃ ବନ୍ଦରମାନଙ୍କରେ ଆକଳିତ ରପ୍ତାନୀ ମାହାସୁଲର ୬୮.୮୩ ପ୍ରତିଶତ ଅଗ୍ରୀମ ପଇଠ କରିବା ଅନିବାର୍ଯ୍ୟ କରି ଦିଆଯାଇଥାଏ । ଅଧିନିୟମର ସୁଯୋଗରେ ଇଂରେଜ ନାଗରିକଙ୍କୁ ନାନା ପ୍ରକାର ସୁବିଧା ସୁଯୋଗ ଦେଇ ଭାରତ ମଧ୍ୟରେ ଭାରତୀୟ ଉଦ୍ୟୋଗୀଙ୍କୁ ପ୍ରତ୍ୟକ୍ଷ ଦୃଢ଼ ପ୍ରତିଯୋଗୀ ଭାବେ ପ୍ରତିଷ୍ଠିତ କରାହୁଏ । ୟୁରୋପ ବଜାରକୁ ଭାରତୀୟ ସାମଗ୍ରୀର ପ୍ରବେଶକୁ ନିର୍ବିଘ୍ନରେ ନାନା ବାଧା ଦେଇ ସଙ୍କୁଚିତ କରାଯାଏ । ପୁନଶ୍ଚ, ଦେଶ ମଧ୍ୟରେ ଆଭ୍ୟନ୍ତରୀଣ ବ୍ୟବସାୟକୁ ନଷ୍ଟ କରାଯିବା ପାଇଁ ନୂତନ କର ଧାର୍ଯ୍ୟ ହୁଏ । ଇଂଲଣ୍ଡ ଉତ୍ପାଦିତ ସାମଗ୍ରୀକୁ କରମୁକ୍ତ ପ୍ରବେଶ କରାଇ ଅପେକ୍ଷାକୃତ ଶସ୍ତାରେ ବିକ୍ରିର ସୁନିୟୋଜିତ ବ୍ୟବସ୍ଥା କରାଯାଏ । ପରିଣାମ ସ୍ୱରୂପ ଭାରତୀୟଙ୍କ ଦୁର୍ଦ୍ଦଶା କ୍ରମାଗତ ବଢ଼ିବାକୁ ଲାଗେ । ଏହି ପରିପ୍ରେକ୍ଷୀରେ ଶୋଷଣର ଚିତ୍ର ଦେବାକୁ ଯାଇ ସାର୍ ଚାଲର୍ସ ଟ୍ରେଓ୍ୱେଲିୟନ ଲେଖିଛନ୍ତି - 'ସନ ୧୮୩୩ ଯାଏଁ ଭାରତୀୟ ବୁଣାକାର ଓ ବ୍ୟବସାୟୀଠୁଁ ବାର୍ଷିକ ଏକକୋଟି ଟଙ୍କା ଆଉ ୮୦ ଲକ୍ଷ ଟଙ୍କାର ବଙ୍ଗଳାର ବଜାରକୁ ଅପହରଣ କରାଯାଏ ।'

୧୮୧୩ ମସିହାର ଅଧିନିୟମକୁ କିପରି ତ୍ୱରାନ୍ୱିତ କାର୍ଯ୍ୟକାରୀ କରାଯାଇଥାଏ ତାହା ଉପଲବ୍ଧ ବିବରଣୀରୁ ଅନୁମେୟ । ୧୮୧୪ ମସିହାରେ ଭାରତରୁ ବ୍ରିଟେନକୁ ୩୮୪୨ ଗାଣ୍ଠିଲୁଗା ରପ୍ତାନୀ ହୋଇଥିବା ସ୍ଥଳେ ୧୮୨୮ ମସିହାରେ କେବଳ ମାତ୍ର ୪୩୩ ଗାଣ୍ଠିଲୁଗା ରପ୍ତାନୀ ହୁଏ । ଠିକ୍ ସେହିପରି ୧୮୨୪ ମସିହାରେ ଭାରତରୁ ଇଂଲଣ୍ଡକୁ ୧,୬୭,୫୨୪ ଲୁଗାଥାନ ପଠାଯାଇଥିବା ସ୍ଥଳେ ୧୮୨୯ ମସିହାରେ ମାତ୍ର ୫ ବର୍ଷର ସ୍ୱଳ୍ପ ଅବଧି ମଧ୍ୟରେ ରପ୍ତାନୀ ଖସି ଆସେ କେବଳ ମାତ୍ର ୧୩,୦୪୩ ଲୁଗା ଥାନକୁ । ବିଶ୍ୱବଜାରରୁ ଭାରତର ବିଦେଶୀ ମୁଦ୍ରା ସଂଗ୍ରହର ମୁଖ୍ୟ ସ୍ରୋତ ଭାରତୀୟ ବସ୍ତ୍ର ଉଦ୍ୟୋଗ ବିରୋଧରେ

କରାଯାଇଥିବା ଚକ୍ରାନ୍ତ ଏଥିରୁ ସ୍ପଷ୍ଟ ହୁଏ । ଏହି ଅମାନୁଷିକ ଅତ୍ୟାଚାର ସଂପର୍କରେ ବୋଲଟ୍‌ସଙ୍କ 'କଂସିଡ଼ରେସନ ଅନ୍ ଇଣ୍ଡିଆନ ଅଫେୟର୍ସ' ପୁସ୍ତକର ୭୨୭୪ ଏବଂ ୧୬୨-୧୬୫ ପୃଷ୍ଠାରେ ରେଶମ ଚାଷୀମାନଙ୍କ ଉପରେ କରାଯାଇଥିବା ଅକଥନୀୟ ଅତ୍ୟାଚାରର ପରିଣାମ ସୂଚାଇବାକୁ ଯାଇ ବର୍ଣ୍ଣନା କରିଛନ୍ତି ଯେ, ରେଶମ ଚାଷୀ ନିଜ ଜମି ମରାମତି ତଥା ଭୂରାଜସ୍ୱ ଦେବାରେ ମଧ୍ୟ ଅସମର୍ଥ ହୋଇପଡ଼ନ୍ତି । କର ଆଦାୟକାରୀ ଅଧିକାରୀଙ୍କ ନିର୍ଯ୍ୟାତନାରୁ ମୁକ୍ତି ପାଇବା ପାଇଁ ଏକେତ ନିଜ ସନ୍ତାନକୁ ବିକ୍ରି କରିବାକୁ ବାଧ୍ୟ ହୁଅନ୍ତି ନୋହିଲେ ଦେଶ ଛାଡ଼ି ଅନ୍ୟତ୍ର ଚାଲିଯିବା ବ୍ୟତୀତ ଅନ୍ୟ ଉପାୟ ସେମାନଙ୍କଠାରେ ଆଉ ନଥାଏ । ପରିଶେଷରେ ଋଣ ପଇଠ ପାଇଁ ଜମି ସବୁ ନିଲାମ ହୁଏ ।

ପୂର୍ବରୁ ତ କୋଟି କୋଟି ଭାରତୀୟଙ୍କ ବଂଶାନୁକ୍ରମିକ କୃଷି ବ୍ୟତିରେକ ଅର୍ଥକରୀ ଧନ୍ଦା ସୂତାକଟା, ଲୁଗାବୁଣା ତଥା କୁଟୀର ଶିଳ୍ପକୁ ନିଜ ବଜାର ସୃଷ୍ଟି ପାଇଁ ଇଂରେଜ ସରକାର ବିଭିନ୍ନ ଆଳରେ ନଷ୍ଟଭ୍ରଷ୍ଟ କରିସାରିଥାଏ । ଏଣୁ ସ୍ୱାଧୀନତା ସଂଗ୍ରାମ କାଳରେ ରେଶମ ଓ କାର୍ପାସ ମିଳିତ ଭାବେ ଏକ ପ୍ରମୁଖ ଜ୍ୱଳନ୍ତ ପ୍ରସଙ୍ଗ ରୂପେ ଉଭା ହୁଏ । ଏଣୁ ଏଠି ସ୍ମରଣ କରି ଦିଆଯାଇପାରେ ଯେ, ସ୍ୱାଧୀନତା ସଂଗ୍ରାମ କାଳରେ ଇଂରେଜମାନେ ଭାରତୀୟଙ୍କ ଉପରେ କରି ଆସିଥିବା ଆର୍ଥିକ ଶୋଷଣ ଗାନ୍ଧିଜୀଙ୍କୁ ବିଶେଷ ଆକର୍ଷିତ କରେ । ତାଙ୍କୁ ବୁଝିବାକୁ ଆଉ ବାକି ରହେ ନାହିଁ ଯେ, ନିରନ୍ନ, ଭୋକିଲା ଅଗଣିତ ଜନତାଙ୍କୁ ଆନ୍ଦୋଳନ ମଧ୍ୟକୁ ଝାସ ଦେବା ପାଇଁ ଆହ୍ୱାନ ଦିଆଯାଇ ପାରେନା କି ସେଇ ଅବସ୍ଥାରେ ସେଇ ଆନ୍ଦୋଳନମାନ ସେମାନଙ୍କ ପାଇଁ କିଛି ମାନେ ରଖେନା । ସର୍ବାଗ୍ରେ ଆର୍ଥିକ ସ୍ଥିତିର ପୁନରୁଥାନ ଅନିବାର୍ଯ୍ୟ । ତେଣୁ ଆର୍ଥିକ ସ୍ୱଚ୍ଛଳତା ଫେରାଇ ଆଣିବା ପାଇଁ ଗାଁ ଗାଁରେ, ଘରେ ଘରେ ସୂତାକଟା, ଲୁଗାବୁଣା ଆଉ କୁଟୀର ଶିଳ୍ପର ବିକାଶ ଉପରେ ସେ ବିଶେଷ ଗୁରୁତ୍ୱ ଦେଇ ବିଦେଶୀ ବର୍ଜନ ସ୍ୱଦେଶୀ ପ୍ରଚଳନକୁ ମୂଳମନ୍ତ୍ର କରନ୍ତି । ଆନ୍ଦୋଳନ କାଳରେ ପ୍ରତ୍ୟେକ କଂଗ୍ରେସ କର୍ମୀ ତଥା ସଚେତନ ନାଗରିକଙ୍କ ସୂତାକଟା ସାଙ୍ଗକୁ ଖଦୀର ବ୍ୟବହାର ଥାଏ ପ୍ରାଥମିକ ଓ ଅନିବାର୍ଯ୍ୟ । ଖଦୀ ହୋଇଯାଏ ପରବର୍ତ୍ତୀ ସମୟରେ ସ୍ୱାଧୀନତା ସଂଗ୍ରାମର ପରିଚୟ ଓ ପ୍ରତୀକ । ଚାରିଅଣା ପ୍ରତିବଦଳରେ ନିଜ ହାତକଟା ଗୁଣ୍ଡିଏ ସୂତା ହୋଇଥାଏ ଗୁରୁତ୍ୱପୂର୍ଣ୍ଣ ପବିତ୍ର କଂଗ୍ରେସ ପ୍ରାଥମିକ ସଭ୍ୟ ଚାନ୍ଦା । ତାହା ସମସ୍ତଙ୍କୁ ଏକତ୍ର ଆଗେଇ ଯିବାପାଇଁ ହୋଇଯାଏ ଅହିଂସା ମାର୍ଗ । (ଉଲ୍ଲେଖନୀୟ ଯେ ସେତେବେଳେ କଂଗ୍ରେସ ନାମରେ ସ୍ୱାଧୀନତା ଆନ୍ଦୋଳନ ଚାଲିଥାଏ, କଂଗ୍ରେସ ଏକ ରାଜନୀତିକ ଦଳ ହୋଇ ନଥାଏ)

ଗଣତାନ୍ତ୍ରିକ ବ୍ୟବସ୍ଥାର ସଂସ୍ଥାପକ ରୂପେ ଡିଣ୍ଡିମ ପିଟୁଥିବା ବ୍ରିଟେନର ପାର୍ଲିଆମେଣ୍ଟ ୧୮୧୩ ମସିହାରେ ଅଧିନିୟମ ନବୀକରଣ ସୁଯୋଗ ଇଷ୍ଟଇଣ୍ଡିଆ କମ୍ପାନୀ ଭାରତରେ ଅବାଧ, ନିରଙ୍କୁଶ ଭାବେ ପ୍ରାୟ ସମସ୍ତ ବ୍ୟବସାୟକୁ ଅକ୍ତିଆର କରିବାକୁ ଲାଗି ପଡ଼େ । ଆର୍ଥିକ ଶୋଷଣ ଅସହ୍ୟ ହେବାରୁ ନିଷ୍ପେସିତ ଭାରତୀୟମାନେ ଇଂରେଜମାନଙ୍କୁ ବିତାଡ଼ିତ କରିବା ଅନିବାର୍ଯ୍ୟତାକୁ ବେଶ୍ ଉପଲବ୍ଧି କରିପାରନ୍ତି । କିନ୍ତୁ ସେମିତି ସଂଗଠିତ କାର୍ଯ୍ୟକ୍ରମ ସେମାନଙ୍କ ପାଖରେ ନଥାଏ କେବଳ ସୁବିଧା ଉଣ୍ଡି ବସିବା ବ୍ୟତୀତ । ସେତିକିବେଳେ ସେଇ ହତୋତ୍ସାହୀ ନିଷ୍ପେସିତ ଭାରତୀୟଙ୍କୁ କେତେକ ମନୀଷିଙ୍କ ଧାର୍ମିକ ଓ ସାଂସ୍କୃତିକ ବିଚାରାଧାରା ଜାତୀୟତା ସୂତ୍ରରେ ବାନ୍ଧିରଖି ମହାଭାରତୀୟତା ଭାବକୁ ମଜବୁତ କରିବାରେ ସଫଳ ହୁଏ ।

ଏପରି ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ଗୋରୁ ଓ ଘୁଷୁରୀ ଚର୍ବିବୋଳା କାର୍ତ୍ତୁସ ସଂଯୁକ୍ତ ବନ୍ଧୁକ ପ୍ରୟୋଗ ସିପାହୀଙ୍କ ଜାତିଭ୍ରଷ୍ଟର ଏକ ସୁନିୟୋଜିତ ଯୋଜନା ମନେ କରି ତାହାର ବିରୋଧରୁ ବିଦ୍ରୋହର ସୂତ୍ରପାତ ହୁଏ । ଫିରଙ୍ଗୀ ସରକାରଙ୍କ ତଥାକଥିତ ବିଧିବ୍ୟବସ୍ଥା ପାଳନ ଆଳରେ ଦେଶର ବିଭିନ୍ନ ପ୍ରାନ୍ତରର ବିତାଡ଼ିତ ଜମିଦାର, ରାଜା ମହାରାଜ ଓ ନବାବମାନଙ୍କ ଅକୁଣ୍ଠିତ ସହଯୋଗ ତଥା ଶୋଷିତ, ନିଷ୍ପେସିତ ଭାରତୀୟ ଜନଗଣଙ୍କ ନୈତିକ ସମର୍ଥନ ଆନ୍ଦୋଳନକୁ ଦେଶସାରା ସଂପ୍ରସାରିତ କରିବାରେ ବେଶ୍ ସହାୟକ ହୁଏ । ଚତୁର ଇଂରେଜ ସରକାର ନିଜ କୁଟୀଳ ନୀତି, ବିପୁଳ ସାମରିକ ଶକ୍ତି ପ୍ରୟୋଗରେ ଯେନତେନ ପ୍ରକାରେଣ ସାମୟିକ ଭାବେ ବିଦ୍ରୋହକୁ ଦମନ କରିବାରେ କିଛିଟା ସଫଳ ହୁଏ । ହେଲେ ସିପାହୀମାନଙ୍କ ପ୍ରଜ୍ୱଳିତ ବିଦ୍ରୋହର ସେଇ ଅଗ୍ନି ଶୋଷିତ, ନିଷ୍ପେସିତ ଅଗଣିତ ଭାରତୀୟଙ୍କ ହୃଦୟ କନ୍ଦରରେ ପାଉଁଶ ଗଦାର ଅଗ୍ନିକଣା ସଦୃଶ ଜୀବିତ ରହି ଦେଶର କୋଣ ଅନୁକୋଣର ବିପ୍ଳବର ଉଷ୍ମତାକୁ ବୃଦ୍ଧି କରିବାରେ ବେଶ୍ ସହାୟକ ହୁଏ ।

ସେଇ ବିଦ୍ରୋହ ଇଂରେଜ ଜାତିର ଶୋଷକର ମୁଖା ଖୋଲି ଦେଇ ବିଶ୍ୱଦରବାରରେ ତାହାର ପ୍ରକୃତ ଚେହେରା ପ୍ରଦର୍ଶନର ଯଥେଷ୍ଟ ସମ୍ଭାବନା ଥିବାରୁ ସିଂହାସନ ପ୍ରତି ଅହେତୁକ ପ୍ରୀତି ରଖିଥିବା ସାମ୍ରାଜ୍ୟବାଦୀ ବ୍ରିଟିଶ ଶାସକ ଗୋଷ୍ଠୀ ମେକ୍‌ଲେ ଓ ତାଙ୍କ ଅନୁଯାୟୀ ଐତିହାସିକମାନେ ସିପାହୀଙ୍କ ପ୍ରତିବାଦକୁ ରାଜଦ୍ରୋହ ରୂପେ ଚିତ୍ରଣ କରି 'ସିପାହୀ ବିଦ୍ରୋହ' ରୂପେ ଆଖ୍ୟାୟିତ କରନ୍ତି 'ସିପାହୀମାନଙ୍କର ବିଦ୍ରୋହ, ଏକ ଜାତୀୟ ମୁକ୍ତି ସଂଗ୍ରାମ' କାର୍ଲ ମାର୍କ୍ସଙ୍କ ଐତିହାସିକ ଉଦ୍‌ଘୋଷଣାକୁ ହେୟ କରି । 'ମହାଜନ ପ୍ରଦର୍ଶିତ ପଥ ଏକମାତ୍ର ସୁଗମ ସତ୍ୟପଥ' ନୀତିରେ ପରବର୍ତ୍ତୀ ଐତିହାସିକମାନେ ଅନୁସରଣ କରିବାକୁ ପଛାଉ ନାହାନ୍ତି । ସର୍ବାଗ୍ରେ ସଂଘଟିତ ଆନ୍ଦୋଳନ ଭିତ୍ତିରେ 'ପ୍ରଥମ ସ୍ୱାଧୀନତା ସଂଗ୍ରାମ'ର ନାମକରଣ କରାଇବା ବ୍ୟତୀତ ସିପାହୀଙ୍କ ବିରୋଦ୍ଧରେ ଥିବା ରାଜଦ୍ରୋହ ଅଭିଯୋଗରୁ ସଂପୂର୍ଣ୍ଣ ମୁକ୍ତ କରିପାରିନାହାନ୍ତି । ଉପଯୁକ୍ତ ଅନୁସନ୍ଧାନର ଅଭାବ ଯୋଗୁଁ ବାସ୍ତବିକ କାରଣମାନ କାଳର ଗହ୍ୱର ମଧ୍ୟରେ ଲୁକ୍କାୟିତ ହୋଇ ରହିଯାଇଅଛି । ଭାରତୀୟଙ୍କ ଅସନ୍ତୋଷ ରୂପକ ବାରୁଦଗଦାକୁ ସିପାହୀମାନଙ୍କ ପ୍ରତିବାଦ ନିଆଁ ଲେଲୀହାନ ଶିଖାରେ ପରିଣତ କରି ଭାରତର ବ୍ରିଟିଶରାଜକୁ ଜାଳିପୋଡ଼ି ଦେବାକୁ ସକ୍ଷମ ହୁଏ ।

ଉପଯୁକ୍ତ ଅନୁସନ୍ଧାନର ଅଭାବ ଯୋଗୁଁ ଆନ୍ଦୋଳନ ପଛରେ ଥିବା ବାସ୍ତବିକ କାରଣମାନ ଅନାଲୋଚିତ ହୋଇ ରହିଯାଏ । ଆମ ମାନସିକତା ଯଦି ଗୋରା ବା ୟୁରୋପୀୟ ପ୍ରଦତ୍ତ ତଥ୍ୟ ବାସ୍ତବିକ ଓ ସ୍ୱୟଂସଂପୂର୍ଣ୍ଣ ତେବେ ଊନବିଂଶ ଶତାବ୍ଦୀର ଅନ୍ୟତମ ପ୍ରସିଦ୍ଧ ଐତିହାସିକ ଡ. ରବର୍ଟସନ, ବ୍ରୁକ୍ସ ଏଡ଼ମ୍ସ, ସାର୍ ଚାର୍ଲସ ଟ୍ରେଭେଲିୟନ, ବୋଲଟସ ଆଦିଙ୍କ ଯୁକ୍ତିସଙ୍ଗତ ମୌଳିକ ତଥ୍ୟ ତଥା ୧୮୧୩ ମସିହାର ବ୍ରିଟିଶ ପାର୍ଲିଆମେଣ୍ଟରେ ଇଷ୍ଟ ଇଣ୍ଡିଆ କମ୍ପାନୀ ସକାଶେ ନବୀକରଣ କରାଯାଇଥିବା ଚାର୍ଟର (ସନନ୍ଦ) ଅଧିନିୟମ ତର୍ଜମା ନ ହେବା ବିସ୍ମୟକର ବିଷୟ ନୁହେଁ କି ?

ଇଂରେଜଙ୍କ କୁଶାସନକୁ ଆଗକୁ ଆଉ ଗ୍ରହଣ ନ କରିବା ଭାରତୀୟଙ୍କ ମନୋସ୍ଥିତି, ୧୮୫୭ ମସିହାର ସରକାରୀ ଆଦେଶକୁ ସିପାହୀଙ୍କ ଅବମାନନାର ନୂତନ ପରମ୍ପରା, ମନୀଷିମାନଙ୍କ ହତାଶ ଭାରତୀୟଙ୍କଠାରେ ଜାତୀୟତାଭାବ ଜାଗରଣ, ଭାରତର କୋଣ ଅନୁକୋଣରେ ସଂଘଟିତ ବିଭିନ୍ନ କୃଷକ ବିଦ୍ରୋହର ପରିବର୍ତ୍ତିତ ଜନଆନ୍ଦୋଳନ, କଂଗ୍ରେସର ଭାରତଛାଡ଼ ଆନ୍ଦୋଳନ, କ୍ରାନ୍ତିକାରୀଙ୍କ ବିପ୍ଳବରେ ତ୍ରସ୍ତ ପ୍ରଶାସନ, ସର୍ବୋପରି ରକ୍ତବିନ୍ଦୁ ବଦଳରେ ସ୍ୱାଧୀନତା ପ୍ରଦାନର ନେତାଜୀଙ୍କ ଓଜସ୍ୱିନୀ- ଭାଷଣ ଓ ଚୂଡ଼ାନ୍ତ ଆହ୍ୱାନ ଦେଶରେ ଏକ ବିସ୍ଫୋରକ ବାତାବରଣ ସୃଷ୍ଟି କରିଥାଏ । ଏଣୁ ଭାରତକୁ ସ୍ୱାଧୀନତା ଦେବା ଛଡ଼ା ଅନ୍ୟ ଉପାୟ ବ୍ରିଟିଶ ସରକାରଙ୍କ ପାଖରେ ଆଉ ନଥାଏ । ପରିଶେଷରେ ଦେଶ ସ୍ୱାଧୀନ ହୁଏ ୧୫ ଅଗଷ୍ଟ ୧୯୪୭ ମସିହାରେ ।

> ୧୮୫୭ରୁ ୧୯୪୭ ମସିହା ମଧ୍ୟରେ ଭାରତର ସ୍ୱାଧୀନତା ପ୍ରାପ୍ତି ଲକ୍ଷ୍ୟରେ ହୋଇଥିବା ନବେ ବର୍ଷ ମଧ୍ୟର ସମସ୍ତ ବିଦ୍ରୋହ, ବିପ୍ଳବ, କ୍ରାନ୍ତି ଅହିଂସା ଆନ୍ଦୋଳନ ନିଜ ନିଜ ସ୍ଥାନରେ ଯୁକ୍ତି ସଂଗତ ଭୂମିକା ନେଇଥିବା ଅସ୍ୱୀକାର କରନ୍ତି ନାହିଁ ।

ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ହାସଲ ପାଇଁ ଦେଶରେ ହୋଇଥିବା ବିଭିନ୍ନ ଆନ୍ଦୋଳନମାନଙ୍କ ମଧ୍ୟରୁ କାହାରିକୁ ସଂଖ୍ୟାବାଚକରେ ସଂଜ୍ଞାଭୂଷିତ କରିବା ବିସ୍ମୟକର ବିଷୟ । ଭାରତର କେତେକ ଅଞ୍ଚଳକୁ ସଶସ୍ତ୍ର ଆକ୍ରମଣରେ ମୁକ୍ତକରି ସେହି ଅଞ୍ଚଳରେ ସ୍ୱାଧୀନ ଭାରତର ଆଜାଦ୍‌ହିନ୍ଦ୍ ସରକାର ପ୍ରତିଷ୍ଠିତ କରି ବିଧିବ୍ୟବସ୍ଥାମତେ ଶାସନ ପରିଚାଳନା କରିଥିବା ଯୋଗୁଁ ତାହାକୁ କେତେକ ବିଦେଶୀ ସରକାରଙ୍କ କୁଟନୈତିକ ସ୍ୱୀକୃତି ପ୍ରଦାନ କରିଥିଲେ । ଏହା ସତ୍ତ୍ୱେ ଏହାର ଉପଯୁକ୍ତ ସ୍ଥାନ ନିରୂପଣ କରି ନପାରିବା ଏକ ଐତିହାସିକ ଭ୍ରମଛଡ଼ା ଆଉ କିଛି ନୁହେଁ । ୧୮୫୭ରୁ ୧୯୪୭ ମସିହା ମଧ୍ୟରେ ଭାରତର ସ୍ୱାଧୀନତା ପ୍ରାପ୍ତି ଲକ୍ଷ୍ୟରେ ହୋଇଥିବା ନବେ ବର୍ଷ ମଧ୍ୟର ସମସ୍ତ ବିଦ୍ରୋହ, ବିପ୍ଳବ, କ୍ରାନ୍ତି ଅହିଂସା ଆନ୍ଦୋଳନ ନିଜ ନିଜ ସ୍ଥାନରେ ଯୁକ୍ତି ସଂଗତ ଭୂମିକା ନେଇଥିବା ଅସ୍ୱୀକାର କରନ୍ତି ନାହିଁ । ସେହି ପରିପ୍ରେକ୍ଷୀରେ ସେହି କାର୍ଯ୍ୟମାନଙ୍କର କ୍ରମପରିଣାମକୁ ମିଳିତ ଭାବେ ଏକ ଏବଂ ଅଭିନ୍ନ ସ୍ୱାଧୀନତା ସଂଗ୍ରାମ ରୂପେ ପରିଚିତ କରିବାର ଔଚିତ୍ୟ ରହିଅଛି ।

ପୂର୍ବତନ ବିଧାୟକ, ନୂଆପଡ଼ା
ଭେଲା, ଜି.-ନୂଆପଡ଼ା

---

# ଜନନୀ ନିକଟେ ଅଳି

ତ୍ରିଭୁବନାନନ୍ଦ ପରମହଂସ



ଆସ ଅବତରୀ ଏ ଧରା ଧାମେ
ଦଶ ପ୍ରହରଣାୟୁଧ ଧାରଣେ,
ଅକାଳ ବୋଧିନୀ ସାକେତ ନୃପା
ବନ୍ଦିତାଗୋ ଦେବ ତେଜସ୍ୱରୂପା
ସଂହରଣେ ଦନୁ ପୁତ୍ର ଯେ
କର ମହୀଭାର ଉଶ୍ୱାସ ଜନନୀ
ସର୍ବସଂହା ବସୁନ୍ଧରା ଯେ
ସିଂହିକା ତନୁଜା ଏବେ କି ଛନ୍ତି
ଅଙ୍ଗନା ସଂପଦ ଲୁଣ୍ଠି ନିଅନ୍ତି
କରିବ କେ ରକ୍ଷା କରୁଣାମୟୀ
କର ଦୟା ଥରେ ଏ ଧରା ପାଇଁ
ଢାଳି ସୁଶୀତଳ କୃପା ଯେ
ଦନୁ ସୁତ ନାଶି ଦେବ ସ୍ୱରୂପା ଗୋ
ବିତର କୃପା କଣିକା ଗୋ
ବ୍ରହ୍ମା ପଦୋଦ୍ଭବା ବନ୍ଦ୍ୟ ଚରଣ
କାଶ୍ୟପ ପ୍ରକୃତି କର ମୋଚନ
ଏତିକି ବିନତି ମୋର ଯେ
କରୁଣାମୟୀ ତୁ କରୁଣା ବିତରି
ଦିଅ ଶାନ୍ତି ସୁଧା ସାର ଯେ
ଯାଉ ଅପସରି ଘନ କୁହେଳି
ଜନନୀ ନିକଟେ ଏତିକି ଅଳି,
କରୁଣାମୟୀ ତୁ ମୋର ଯେ
ପ୍ରଣତ ପାଳନେ କୃପା ମଣ୍ଡନାଗୋ
ବିଖ୍ୟାତ ନାମ ତୋ ସାର ଯେ ।

ସଭାପତି, ଜନନୀ ସେବା ସଦନ
କପିଳ ପ୍ରସାଦ, ଭୁବନେଶ୍ୱର-୨

# ବିସ୍ମୃତ ସଂଗ୍ରାମୀ : ଅବିସ୍ମୃତ ଘଟଣା

ହଳଧର ପଣ୍ଡା

୧୯୪୫ ମସିହା ଜାନୁଆରୀ ମାସର ୨୬ ତାରିଖ । ଭାରତ ସ୍ୱାଧୀନ ହେବାକୁ ଥାଏ ଆହୁରି ପ୍ରାୟ ଅଢ଼େଇ ବର୍ଷ । ଦେଶର ପ୍ରଥମ ସାଧାରଣତନ୍ତ୍ର ଦିବସ ପାଳନ ହେବାକୁ ଥାଏ ଆହୁରି ପ୍ରାୟ ସାଢ଼େ ପାଞ୍ଚବର୍ଷ । ଏମିତି ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ବାଲେଶ୍ୱର ଜିଲ୍ଲାର ଭୋଗରାଇ ଥାନା ଗୋଛିଦା ନାମକ ଏକ ଅନାମଧେୟ ଗାଁରେ ଭାରତର ଜାତୀୟ ପତାକା ତ୍ରିରଙ୍ଗା ଫର୍‌ଫର୍ ହୋଇ ଉଡ଼ିଲା । ଏଭଳି ବିରଳ ଦୃଶ୍ୟ ଦେଖିବାକୁ ବହୁ ସ୍ଥାନୀୟ ଲୋକେ ଘଟଣାସ୍ଥଳକୁ ଦୌଡ଼ିଲେ । ନିମିଷକ ମଧ୍ୟରେ ସ୍ଥାନଟି ଲୋକାରଣ୍ୟ ହୋଇଗଲା । ସମସ୍ତଙ୍କ ମୁହଁରେ ସନ୍ଦେହ ମିଶ୍ରିତ ଆନନ୍ଦ । ଘଟଣା କ'ଣ ହେବ ତାହା ଦେଖିବାକୁ ଅହେତୁକ କୌତୁହଳ ।

ଏଣେ ଦେଶରେ ଇଂରେଜମାନଙ୍କ ଶାସନ । ଭାରତୀୟ ଜାତୀୟ କାର୍ଯ୍ୟକ୍ରମ ପ୍ରତି ସେମାନଙ୍କର ଅହେତୁକ ଘୃଣା ଓ ରାଗ । ବିଶେଷ କରି ଭାରତୀୟ ସ୍ୱାଧୀନତା ସଂଗ୍ରାମୀମାନଙ୍କପ୍ରତି ସେମାନଙ୍କର ନକରାତ୍ମକ ମନୋଭାବ କାହିଁରେ କ'ଣ । ଏମିତି ବେଳରେ ଗୋଟିଏ ଗ୍ରାମୀଣ ପରିବେଶରେ ଜାତୀୟ ପତାକା ଉତ୍ତୋଳନ କ'ଣ କମ୍ କଥା ! ଖବରଟା ଏ କାନରୁ ସେ କାନ ହୋଇ ଭୋଗରାଇ ଥାନାରେ ପହଞ୍ଚିଗଲା ।

ଭାରତର ଶାସକ ସିନା ବିଦେଶୀ କିନ୍ତୁ ଥାନାବାବୁ ଥିଲେ ଦେଶର ଲୋକ । ସେତେବେଳେ ଆମ ଦେଶର ବାବୁମାନେ ଭାରତର ସ୍ୱାଧୀନତାକୁ ଇଂରେଜମାନଙ୍କ ଅପେକ୍ଷା ବେଶୀ ବିରୋଧ କରୁଥାନ୍ତି । ନିଜର ସ୍ୱାର୍ଥ ଓ ପେଟ ପାଟଣା ପାଇଁ ଦେଶର ଲୋକଙ୍କ ଉପରେ ବେଶୀ ଅତ୍ୟାଚାର କରୁଥାନ୍ତି । ତେଣୁ ଏଭଳି ଏକ ଅଭାବନୀୟ କାଣ୍ଡ ଶୁଣି ଥାନାବାବୁ ହଳେ ପୋଲିସ୍ କର୍ମଚାରୀଙ୍କୁ ଧରି ଘଟଣା ସ୍ଥଳକୁ ଦୌଡ଼ିଲେ ।

ଘଟଣାସ୍ଥଳରେ ପହଞ୍ଚି ଯାହା ଦେଖିଲେ ତାଙ୍କ ଅକଲ ଗୁଡୁମ୍ । ସ୍ୱାଧୀନ ଭାରତର ଜାତୀୟ ପତାକା ଫର୍ ଫର୍ ହୋଇ ଉଡୁଛି । ଚାରିପଟରେ ଘେରି ରହିଛନ୍ତି ଅସଂଖ୍ୟ ଲୋକ । ବେଳକୁ ବେଳ ଲୋକ ସଂଖ୍ୟା ବଢୁଛି ପଛେ କମିବାର ନାହିଁ । ଥାନାବାବୁଙ୍କ ମୁଣ୍ଡକୁ ପିତ୍ତ ଚଢ଼ିଗଲା । କିନ୍ତୁ ଏତେ ଲୋକ ଦେଖି କିଛି ଗୋଟାଏ ହଠାତ୍ କରିପକାଇବାକୁ ତାଙ୍କର ସାହସ ହେଲାନାହିଁ । ତଥାପି ସେ ଚିତ୍କାର କରି ଉଠିଲେ - ହଟାଅ, ହଟାଅ ଏ ପତାକା । କିଏ ଏହାକୁ ଉଡ଼ାଇଛି ଏଠାରେ ।

ଥାନାବାବୁଙ୍କ ଚିତ୍କାର ଶୁଣି କିଛି କିଛି ଲୋକ ପଳେଇଲେ । ଫଳରେ ତାଙ୍କ ମନରେ ଟିକିଏ ସାହସ ଆସିଲା । ପୋଲିସ୍ କର୍ମଚାରୀମାନେ ହାତରେ ଲାଠି ବନ୍ଧୁକ ଧରି ପଇଁତରା ମାରୁଥାନ୍ତି । ହଠାତ୍ ଥାନାବାବୁ ପତାକା ଦଣ୍ଡଟିକୁ ଧରି ଉପାଡ଼ିବାର ଉପକ୍ରମ କଲେ ।

ଏହି ସମୟରେ ଭିଡ଼ ଠେଲି ଜଣେ ଯୁବକ ଥାନାବାବୁଙ୍କ ସାମ୍ନାକୁ ଚାଲି ଆସିଲା । ସାଧାରଣ ସ୍ୱାସ୍ଥ୍ୟର ୩୨/୩୩ ବର୍ଷର ଯୁବକଟିଏ । ମୁହଁରେ ଅସମ୍ଭବ ଦୃଢ଼ତା । ପତାକା ଦଣ୍ଡ ପାଖରେ ପହଞ୍ଚି ସେ ଟାଣ ସ୍ୱରରେ କହିଲା - ଏ ପତାକା ଉଡ଼ିଛିମାନେ ଉଡ଼ିବ । ଉତ୍ତୋଳିତ ଧ୍ୱଜା ସନ୍ଧ୍ୟା ପୂର୍ବରୁ କଦାପି ଅବତରଣ କରାଯାଇ ପାରିବ ନାହିଁ ।

ଥାନାବାବୁ ଯୁବକଟି ଆଡ଼େ ଚାହିଁଲେ । ଦେଖିଲେ ଅତି ସାହସର ସହ ସେ ଠିଆ ହୋଇ ତାଙ୍କର କାର୍ଯ୍ୟଟିକୁ ବିରୋଧ କରୁଛି । ଥାନାବାବୁ ତାକୁ କହିଲେ - ଏ କାର୍ଯ୍ୟର ପରିଣାମ ଜାଣିଛ ? ହୁଏତ ମୁଁ ତୁମକୁ ଏଇଠି ଗିରଫ କରିବି । ତା'ପରେ ତୁମ ହାତରେ ହାତକଡ଼ି ଓ ଅଣ୍ଟାରେ ଦଉଡ଼ି ଦେଇ ତୁମକୁ ହାଜତକୁ ପଠାଇ ଦେବି । ଯୁବକଟି ପୋଲିସ୍ ବାବୁଙ୍କ ଏକଥା ଶୁଣି ହସିଲା । କହିଲା - ଯାହା କର ପଛେ ମୁଁ ଏଠାରେ ଥିବା ପର୍ଯ୍ୟନ୍ତ ତୁମେ ପତାକା ଦଣ୍ଡକୁ ହଟାଇପାରିବ ନାହିଁ । ଏହା ସନ୍ଧ୍ୟା ପର୍ଯ୍ୟନ୍ତ ଉଡ଼ିବ ହିଁ ଉଡ଼ିବ ।

ଥାନାବାବୁଙ୍କ ପାଇଁ ଯୁବକଟିର ଏ ଚରମ ବାଣୀ ଥିଲା ଯଥେଷ୍ଟ । ସେ ଯୁବକଟିକୁ ତତ୍‌କ୍ଷଣାତ୍ ଗିରଫ କରିବାକୁ ସିପାହୀମାନଙ୍କୁ ଆଦେଶ ଦେଲେ । ଏସବୁ ଘଟଣା ସତ୍ତ୍ୱେ ଯୁବକ ଜଣକ ଅବିଚଳିତ ଭାବେ ଠିଆ ହୋଇଥାଏ । କୁଆଡ଼େ ଧାଇଁ ପଳାଇବାର ଉପକ୍ରମ କରୁନଥାଏ । ତଥାପି ପୋଲିସ୍ କର୍ମଚାରୀ ଯୁବକକୁ ବନ୍ଧାଛନ୍ଦା

କରିବାରେ ଲାଗିଥାନ୍ତି । ଯୁବକର ଏପରିଭାବେ ଗିରଫଦାରୀରେ ଉପସ୍ଥିତ ଜନସାଧାରଣ ଉତ୍ତେଜିତ ହୋଇଯାଉଥିବା ବେଳେ ଯୁବକ ଜଣକ ଧୈର୍ଯ୍ୟ ଓ ସାହସର ସହିତ ଠିଆ ହୋଇ ରହିଥାଏ । ଗିରଫ ହେଲା ପରେ ଥାନାବାବୁ ପତାକା ଦଣ୍ଡ ସହ ଯୁବକକୁ ବାଲେଶ୍ୱର ବିଚାର ବିଭାଗୀୟ ମାଜିଷ୍ଟ୍ରେଟଙ୍କ ପାଖକୁ ପଠାଇ ଦେଇଥିଲେ ।

ସେଦିନ ଏଭଳି ଦେଶପ୍ରେମୀ କାର୍ଯ୍ୟକ୍ରମ ଦେଖାଇଥିବା ଯୁବକ ଜଣକ କିଏ? ସେ ଥିଲେ ଚିର ସଂଗ୍ରାମୀ ସ୍ୱରାଜପ୍ରେମୀ ପରମାନନ୍ଦ ପଟ୍ଟନାୟକ - ଭୋଗରାଇ ଥାନା ଚନ୍ଦନେଶ୍ୱର ଅଞ୍ଚଳର ଗୋଛିଦା ଗାଁ ରିଲିଫ୍ ସୂତାକଟା କେନ୍ଦ୍ରର ତାଲିମପ୍ରାପ୍ତ ସେବକ ।

ସେତେବେଳେ ବାଲେଶ୍ୱର ଜିଲ୍ଲାରେ ପ୍ରାକୃତିକ ବିପର୍ଯ୍ୟୟ ଯୋଗୁଁ ନାହିଁ ନଥିବା ପରିସ୍ଥିତି । ଜିଲ୍ଲାର ଉପକୂଳ ଅଞ୍ଚଳରେ ଝଡ଼ବାତ୍ୟା ସାଙ୍ଗକୁ ସମୁଦ୍ର ଜୁଆର ଆସି ବହୁ କ୍ଷତି ଘଟାଇଥାଏ । ସେଥିରେ ସମୁଦ୍ର ତଟବର୍ତ୍ତୀ ଅଞ୍ଚଳ ଛାରଖାର ହୋଇଯାଇଥାଏ । ଗାଁଗଣ୍ଡାର ଘରଦ୍ୱାର ଭାଙ୍ଗି ନଷ୍ଟ ହୋଇଯାଇଥାଏ । ସ୍ୱେଚ୍ଛାସେବୀମାନେ ବିଭିନ୍ନ ସ୍ଥାନରେ ରିଲିଫ୍ କେନ୍ଦ୍ରମାନ ପ୍ରତିଷ୍ଠା କରି ଲୋକମାନଙ୍କୁ ଯଥାସମ୍ଭବ ସାହାଯ୍ୟ ପ୍ରଦାନ କରୁଥାନ୍ତି । ଖାଦ୍ୟ ସାମଗ୍ରୀ ଯଥା- ଧାନ, ଚାଉଳ ଆଦି ଦୁଃସ୍ଥ ଲୋକମାନଙ୍କୁ ଦିଆଯିବାର ବ୍ୟବସ୍ଥା କରୁଥାନ୍ତି । ଲୋକମାନଙ୍କୁ ସୂତା କାଟିବା ପାଇଁ ପ୍ରବର୍ତ୍ତାଉଥାନ୍ତି । ଭୋଗରାଇ ଥାନା ଚନ୍ଦନେଶ୍ୱର ଅଞ୍ଚଳର ଗୋଛିଦାଠାରେ ଏମିତି ଏକ ସୂତାକଟା କେନ୍ଦ୍ର ସ୍ଥାପନ କରାଯାଇଥାଏ । ଏହାର ପରିଚାଳନା ଦାୟିତ୍ୱରେ ଥାଆନ୍ତି ଅଭ୍ୟସ୍ତ ତାଲିମପ୍ରାପ୍ତ ଯୁବ ସଂଗ୍ରାମୀ ପରମାନନ୍ଦ । ଈଶ୍ୱରଲାଲ ବ୍ୟାସ, ଧନେଶ୍ୱର ଦାସ, ଶଶୀକାନ୍ତ ଭଂଜ ପ୍ରଭୃତି ଏହି କେନ୍ଦ୍ରକୁ ଅଯାଚିତ ସାହାଯ୍ୟ ଯୋଗାଇ ଦେଇଥାନ୍ତି ।

୧୯୪୩ ମସିହାଠାରୁ ୧୯୪୫ ମସିହାର ଆଦ୍ୟଭାଗ ପର୍ଯ୍ୟନ୍ତ ଆଶ୍ରମ ପରିଚାଳନାର ଭାର ପରମାନନ୍ଦ ନେଇଥାନ୍ତି । ଏହି ସମୟରେ ଭାରତର ସ୍ୱାଧୀନତା ସଂଗ୍ରାମୀମାନେ ପ୍ରତ୍ୟେକ ବର୍ଷ ଜାନୁଆରୀ ମାସ ୨୬ ତାରିଖଟିକୁ ଜାତୀୟ ସ୍ୱାଧୀନତା ଦିବସ ରୂପେ ପାଳନ କରିବାକୁ ଭାରତର ଜାତୀୟ କଂଗ୍ରେସ କାର୍ଯ୍ୟକ୍ରମ ଘୋଷଣା କରିଥାଏ । ଅନ୍ୟପକ୍ଷରେ ଇଂରେଜ ସରକାର ମଧ୍ୟ ଏପରି ଏକ ରାଜଦ୍ରୋହମୂଳକ କାର୍ଯ୍ୟପ୍ରତି ନିଷେଧାଜ୍ଞା ଘୋଷଣା କରିଥାନ୍ତି ।

ସେଥର ଏଭଳି ଦୁଃସାହସିକ କାର୍ଯ୍ୟରେ ହାତ ଦେଇ ପରମାନନ୍ଦଙ୍କୁ ପ୍ରାୟ ତିନି ମାସ ଜେଲ୍ ଦଣ୍ଡ ଭୋଗିବାକୁ ପଡ଼ିଥିଲା । ସେଥିରେ ତାଙ୍କ ମନରେ ଗ୍ଲାନି ନଥିଲା । କାରଣ ଜେଲ୍‌ରେ ଥିବାବେଳେ ସ୍ୱାଧୀନତା ସଂଗ୍ରାମୀ ନିଳାମ୍ବର ଦାସ, କରୁଣାକର ପାଣିଗ୍ରାହୀଙ୍କ ପ୍ରଶ୍ନ- କ'ଣ ଦୁଃଖ ଲାଗୁଛିର ଉତ୍ତରରେ ପରମାନନ୍ଦ କହିଥିଲେ - ଦୁଃଖ କାହିଁକି ଲାଗିବ ମୁଁ ତ ଭାରତ ମାଆର ସେବା କରି ଜେଲ୍ ଦଣ୍ଡ ଭୋଗୁଛି ।

କେବଳ ସେ ଦିନ ନୁହେଁ, ଏହିପରି ଅନେକବାର ଜେଲଦଣ୍ଡ ଭୋଗିଥିବା ସ୍ୱାଧୀନତା ସଂଗ୍ରାମୀ, ସ୍ଥିତପ୍ରଜ୍ଞ, ସ୍ୱରାଜପ୍ରେମୀ ପରମାନନ୍ଦଙ୍କ ଜନ୍ମ ହୋଇଥିଲା ୧୯୧୨ ମସିହା ମାର୍ଚ୍ଚ ୭ ତାରିଖରେ, ଆନନ୍ଦପୁର ସବ୍‌ଡିଭିଜନର ଖପରାଖାଇ ନାମକ ଗ୍ରାମରେ । ତାଙ୍କ ପିତା ଥିଲେ ଆର୍ତ୍ତତ୍ରାଣ ପଟ୍ଟନାୟକ । ସେ ଥିଲେ ଆନନ୍ଦପୁର କଚେରୀରେ ଜଣେ ପଦସ୍ଥ କର୍ମଚାରୀ । ପରମାନନ୍ଦଙ୍କୁ ପାଠ ପଢ଼ାଇ କଚେରୀରେ ଜଣେ କର୍ମଚାରୀ କରିବାରେ ତାଙ୍କର ଅଭିଳାଷ ରହିଥିଲା । ମାତ୍ର ପିଲାଦିନରୁ ପରମାନନ୍ଦ ସ୍ୱେଚ୍ଛାସେବୀ ରୂପେ ବିଭିନ୍ନ ରଚନାତ୍ମକ କାର୍ଯ୍ୟରେ ଯୋଗ ଦେଇ ନିଜର ସେବାମୂଳକ ମନୋଭାବର ପରିଚୟ ଦେଇଥିଲେ । ଗ୍ରାମ ପରିମଳ, ପାଠାଗାର ସ୍ଥାପନା, ଦୁଃସ୍ଥ ଓ ଦୁର୍ଗତମାନଙ୍କର ସାହାଯ୍ୟ ଆଦି କାର୍ଯ୍ୟକ୍ରମ ଥିଲା ତାଙ୍କର ଦୈନନ୍ଦିନ କାର୍ଯ୍ୟାବଳୀ । ତାଙ୍କର ଚିନ୍ତାଧାରାର ପରିଚୟ ପାଇ ହରେକୃଷ୍ଣ ମହତାବ ତାଙ୍କୁ ଜାତୀୟ କଂଗ୍ରେସରେ ଗ୍ରହଣ କରି ନେଇ ତାଙ୍କଦ୍ୱାରା ପ୍ରତିଷ୍ଠିତ ବାଲେଶ୍ୱର କର୍ମ ମନ୍ଦିରରେ ଯୋଗ ଦେବା ପାଇଁ ପଠାଇ ଦେଇଥିଲେ ।

ତା'ପରେ ସେଇଠି ଆରମ୍ଭ ହୋଇଥିଲା ତାଙ୍କର ସଂଗ୍ରାମୀ ଜୀବନ । ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ ସେ ବହୁବାର ଜେଲ୍‌ଦଣ୍ଡ ଭୋଗ କରିଥିଲେ ହେଁ ତାଙ୍କ ମନରେ ଦୁଃଖ ନଥିଲା । ସେ ନିଜ ଜୀବନର ବହୁଳାଂଶ ସାଧାରଣ ଜନତାଙ୍କ ସେବାରେ ଉତ୍ସର୍ଗ କରିଥିଲେ । ୧୯୪୭ ମସିହାରେ ଭାରତ ସ୍ୱାଧୀନ ହେଲାପରେ ବି ସେ ନିଜ କାର୍ଯ୍ୟରୁ ବିରତ ହୋଇନଥିଲେ । ସ୍ୱାଧୀନତା ପରେ ନିଜ ଚେଷ୍ଟାରେ ଗୟଳମୁଣ୍ଡାଠାରେ ଗୋଟିଏ ସୂତାକଟା କେନ୍ଦ୍ର ପ୍ରତିଷ୍ଠା କରି ସେଠାରେ କର୍ମ ନିରତ ରହିଲେ । ଏହିଠାରେ ତାଙ୍କର କାର୍ଯ୍ୟଧାରା ଅଟକି ଗଲା ନାହିଁ । ବିନୋବାଜୀଙ୍କ ଭୂଦାନ ଯଜ୍ଞ, ଅନ୍ୟାନ୍ୟ ସାମାଜିକ କର୍ମ ସବୁଥିରେ ସେ ଥିଲେ ଆଗ୍ରହୀ । ତାଙ୍କର ଅହେତୁକ ନିଷ୍ଠା, ଆଗ୍ରହ ଓ କାମ କରିବାର ଇଚ୍ଛାଶକ୍ତି ଯୋଗୁଁ ସେ ସର୍ବଦା ଅନ୍ୟ ପାଖରେ ପ୍ରିୟପାତ୍ର ହୋଇ ରହିଥିଲେ । ସାମାଜିକ ଓ ଦେଶସେବା ସମ୍ବଳିତ ଯେତେ କାର୍ଯ୍ୟକ୍ରମ ହେଉଥିଲା ସବୁଠାରେ ସେଥିଲେ ଆଗଧାଡ଼ିର ଲୋକ । ସବୁଠି ଥିଲେ ନିର୍ବିବାଦୀୟ ଓ ଅଜାତଶତ୍ରୁ । କଥା କମ୍ ଓ କାମ ବେଶୀର ମଣିଷ । ବିନୋବାଜୀଙ୍କଠାରୁ ଆଚାର୍ଯ୍ୟ ମହାଶୟଙ୍କ ପର୍ଯ୍ୟନ୍ତ ସୁପ୍ରସିଦ୍ଧ ପଦଚାରୀଙ୍କ ସହଚର ।

ଆଜି ଚିର ସଂଗ୍ରାମୀ, କର୍ମଦ୍ୟୋଗୀ, ସ୍ୱରାଜ ଯୁଦ୍ଧର ସୈନିକ ପରମାନନ୍ଦ ପଟ୍ଟନାୟକ ନାହାନ୍ତି । ୨୦୦୮ ମସିହା ପବିତ୍ର ଗାନ୍ଧୀ ଜୟନ୍ତୀରେ ତାଙ୍କର ମହାପ୍ରୟାଣ ହୋଇଯାଇଛି । କିନ୍ତୁ ଅମଳିନ ରହିଛି ତାଙ୍କର ସ୍ମୃତି । ସବୁଠି ଓ ସବୁ ହୃଦୟରେ ।

ସୁଆଁପଦା
କେନ୍ଦୁଝର-୭୫୮୦୨୧

# ମହାତ୍ମା ଗାନ୍ଧୀଙ୍କ ଜୀବନର ସ୍ୱାସ୍ଥ୍ୟକଥା

ଡାକ୍ତର ଦୀନବନ୍ଧୁ ମହାରଣା

ମୋହନଦାସ କରମଚାନ୍ଦ ଗାନ୍ଧୀ ତାଙ୍କ 'ଆତ୍ମଜୀବନୀ'ରେ ନିଜ ଜୀବନର କେତେକ ଅନୁଭୂତି ବର୍ଣ୍ଣନା କରିଛନ୍ତି ଯେଉଁଥିରେ ସ୍ୱାସ୍ଥ୍ୟ ସମ୍ପର୍କରେ ତାଙ୍କର ଥିବା ଧାରଣା କ'ଣ ତାହା ଜଣାଯାଏ । ସେ ନିରାମିଷ ଆହାରକୁ ଭଲ ପାଉଥିଲେ ଏବଂ ଅନ୍ୟମାନଙ୍କୁ ତାହା ଅଭ୍ୟାସ କରିବା ପାଇଁ କହୁଥିଲେ । ଦକ୍ଷିଣ ଆଫ୍ରିକାରେ ଥିଲାବେଳେ ସେ ଗୋଟିଏ ନିରାମିଷ ହୋଟେଲକୁ ଚଳାଇବା ପାଇଁ ତାଙ୍କର ଜଣେ ଭାରତୀୟ ବନ୍ଧୁଙ୍କୁ ସାହାଯ୍ୟ କରିଥିଲେ । ସେ ସବୁବେଳେ ସରଳ ଜୀବନଯାପନ କରିବା ପାଇଁ ଚାହୁଁଥିଲେ । ଖାଦ୍ୟ ଓ ପୋଷାକରେ ତାଙ୍କର କୌଣସି ଆଡ଼ମ୍ବର ନଥିଲା । ଥରେ ସେ ଡରବାନ ସହରରେ ଥିଲାବେଳେ ତାଙ୍କ ସ୍ୱାସ୍ଥ୍ୟରେ ଖୁବ୍ ଦୁର୍ବଳତା ଦେଖାଦେଇଥିଲା ଏବଂ ସେ ଆଣ୍ଠୁଗଣ୍ଠି ଦରଜ ରୋଗରେ ପଡ଼ିଥିଲେ । ସେଥିପାଇଁ ଜଣେ ଭାରତୀୟ ଡାକ୍ତର ତାଙ୍କୁ ଚିକିତ୍ସାକରି ଭଲ କରିଦେଇଥିଲେ । ଭାରତକୁ ଫେରିବା ପରେ ସେ ଅନ୍ୟ କୌଣସି ରୋଗରେ ପଡ଼ି ନଥିଲେ । କେବଳ ତାଙ୍କର ଝାଡ଼ା ସଫା ହେଉ ନଥିଲା ଏବଂ ମୁଣ୍ଡ ବିନ୍ଧୁ ଥିଲା । ତେଣୁ ସେ ଖାଦ୍ୟରେ ସଂଯମ ଓ ତରଳ ଖାଦ୍ୟ ଖାଇବାରୁ ତାହା ଦୂର ହୋଇଥିଲା ।



ସେ ଖାଦ୍ୟରେ ତେଲ, ମସଲା ଖାଉ ନଥିଲେ । ତାଙ୍କ ମୁଣ୍ଡ ବିନ୍ଧା ଭଲ କରିବା ପାଇଁ ସେ ସକାଳ ଜଳଖିଆ ଛାଡ଼ି ଦେଇଥିଲେ । ଫଳରେ ସେ ମୁଣ୍ଡବିନ୍ଧାରୁ ଭଲ ହୋଇଗଲେ । ତେଣୁ ସେ ଅନୁଭବ କଲେ ଯେ ଆମେ ଅନେକ ସମୟରେ ଶରୀରର ଚାହିଦା ଅପେକ୍ଷା ଅଧିକ ଖାଉ । ତାହା କେବଳ ପାଟି ଲାଳସା । ତେଣୁ ସେ ଖାଦ୍ୟ କମେଇ ଦେଇ ତାଙ୍କର ସ୍ୱାସ୍ଥ୍ୟକୁ ଠିକ୍ ରଖିବାରେ ସଫଳ ହୋଇଥିଲେ ।

ସେହି ସମୟରେ ଜଣେ ଜର୍ମାନୀ ଲେଖକଙ୍କଦ୍ୱାରା ଲିଖିତ 'ପ୍ରକୃତିକୁ ଫେରିଚାଲ' ନାମକ ଏକ ବହି ସେ ପଢ଼ିବାକୁ ପାଇଲେ । ସେଥିରେ ଲେଖକ ତଟକା ଫଳ ଖାଇବା ଓ ବାଦାମ ଚୋବାଇବା ପାଇଁ ଲେଖିଥିଲେ । ତାହା ହେଉଛି ମଣିଷର ସ୍ୱାଭାବିକ ଖାଦ୍ୟ । ଅବଶ୍ୟ ଗାନ୍ଧିଜୀ ଫଳ ଖାଇବା ଉପରେ ଜୋର୍ ଦେଇ ନଥିଲେ । କିନ୍ତୁ ସେଥିରେ ଲେଖିଥିବା ମାଟି ଚିକିତ୍ସାକୁ ସେ ପରଖ କରିଥିଲେ ? ଏଇ ମାଟି ଚିକିତ୍ସାରେ ଶୋଇବା ସମୟରେ ଚିକ୍କଣ ମାଟି ଚକଟି ଗୋଟିଏ କନାରେ ତଳି ପେଟରେ ବାନ୍ଧିବାକୁ ପଡୁଥିଲା । ଏହି ପରୀକ୍ଷା କରିବା ପରେ ସେ ଆରାମ ପାଇଲେ ।

ଗାନ୍ଧିଜୀ ନିଜ ଜୀବନରେ ତାଙ୍କର ଅନେକ ରୋଗର ଚିକିତ୍ସା ପାଇଁ କେତେକ ସ୍ୱାଭାବିକ ଉପାୟ ଗ୍ରହଣ କରୁଥିଲେ । ସ୍ୱାସ୍ଥ୍ୟ ସମ୍ପର୍କରେ ତାଙ୍କର ମୌଳିକ ଦୃଷ୍ଟିକୋଣ ଥିଲା ଯାହାକୁ ଉପବାସ, ବ୍ରହ୍ମଚର୍ଯ୍ୟ, ଆତ୍ମସଂଯମ, ଶୁଦ୍ଧ ସାତ୍ତ୍ୱିକ ଆହାର, ଫଳାହାର, ଖୋଲା ପବନ, ସଫାସୁତୁରା ରହିବା ଇତ୍ୟାଦି ବୋଲି କହୁଥିଲେ । ତାହା ସହଜରେ ବିନା ଔଷଧରେ ତାଙ୍କୁ ନିରୋଗ କରିପାରୁଥିଲା । ସେ ତାଙ୍କ ଆତ୍ମ ଜୀବନୀରେ ଲେଖିଛନ୍ତି ଯେ ଗାଈ, ମଇଁଷିଙ୍କ କ୍ଷୀର ଖାଇବାଦ୍ୱାରା ସେପରି କିଛି ଉପକାର ମିଳେ ନାହିଁ । ମଣିଷ ତା'ର ଜନ୍ମ ସମୟରୁ ମା'ଠାରୁ ଯେଉଁ କ୍ଷୀର ଖାଇଥାଏ ତାହା ତା'ର ସାରା ଜୀବନ ପାଇଁ ସ୍ୱାଭାବିକ ସ୍ୱାସ୍ଥ୍ୟ ରକ୍ଷା କରିବାରେ ଯଥେଷ୍ଟ । ଗରିବ ଲୋକ ଖାଇପାରିଲା ଭଳି ପନିପରିବା, ଶାଗସବ୍‌ଜିକୁ ସେ ଉତ୍ତମ ସ୍ୱାସ୍ଥ୍ୟ ପାଇଁ ସୁପାରିଶ କରୁଥିଲେ । ତାଙ୍କୁ ଅନୁସରଣ କରିବାକୁ ବହୁ କର୍ମୀ ଯେପରି ଖାଦ୍ୟ ଗ୍ରହଣ କରିବାରେ ଅଭ୍ୟସ୍ତ ହେବାକୁ ଲାଗିଲେ । ମାଛ, ମାଂସ, ଅଣ୍ଡା, ତେଲ, ମସଲା ଓ ପାଟିସୁଆଦିଆ ଆଚାର ଇତ୍ୟାଦିକୁ ଛାଡ଼ିବା ପାଇଁ ସେ କହୁଥିଲେ ।

ଗାନ୍ଧିଜୀ ଦକ୍ଷିଣ ଆଫ୍ରିକାରେ ଥିଲାବେଳେ ସେ ନାଟାଲ ସହରରେ ରହୁଥିଲେ । ସେଠାରେ ରହୁଥିବା ଭାରତୀୟ ଲୋକଙ୍କ ଘରଦ୍ୱାର ଅପରିଷ୍କାର ରହୁଥିଲା । ଗାନ୍ଧିଜୀ ସେସବୁକୁ ପରିଷ୍କାର କରିବା ଉପରେ ଲୋକମାନଙ୍କୁ ବୁଝାଇଲେ । ସେତେବେଳେ ଆଖପାଖ ଅଞ୍ଚଳରେ ପ୍ଲେଗ୍ ବା ମହାମାରୀ ବ୍ୟାପିବାର ଦେଖାଯିବାକୁ ଲାଗିଥିଲା । ସେଥିପାଇଁ ଦକ୍ଷିଣ ଆଫ୍ରିକା ସରକାର ବଡ଼ ଚିନ୍ତିତ ହୋଇପଡ଼ିଥିଲେ । ଗାନ୍ଧିଜୀ ସରକାରୀ କଳକୁ ଏଥିପାଇଁ ସାହାଯ୍ୟ ଦେବାକୁ ନିବେଦନ କଲେ ଏବଂ ଘରକୁ ଘର ବୁଲି ପରିଷ୍କାର ପରିଚ୍ଛନ୍ନତା ସମ୍ପର୍କରେ କାର୍ଯ୍ୟ ଆରମ୍ଭ କରିଦେଲେ । ପରିବେଶ ନିର୍ମଳ ରହିଲେ ରୋଗ ବ୍ୟାପିବାର ସମ୍ଭାବନା ରହିବ ନାହିଁ ବୋଲି ସେଠାକାର ଲୋକ ବୁଝିପାରିଲେ । ଗାନ୍ଧିଜୀଙ୍କ ଦୃଷ୍ଟିରେ ପରିଷ୍କାର ପରିଚ୍ଛନ୍ନତା ସ୍ୱାସ୍ଥ୍ୟରକ୍ଷାର

ପ୍ରଥମ କଥା ଥିଲା । ତେଣୁ ସେ ସଫେଇକୁ ଏକ ସାମାଜିକ କାର୍ଯ୍ୟକ୍ରମ ଭାବରେ ଗ୍ରହଣ କରିନେଲେ । ତା'ପରଠାରୁ ସେ ଭାରତର ସ୍ୱାଧୀନତା ଆନ୍ଦୋଳନ ସମୟରେ ବସ୍ତି ସଫେଇକୁ ସମାଜସେବା ଭାବେ ଗ୍ରହଣ କରି ନେଲେ । ଗୋଟିଏ ନିର୍ମଳ ଓ ପ୍ରଦୁଷଣ ମୁକ୍ତ ପରିବେଶ ହିଁ ଉତ୍ତମ ସ୍ୱାସ୍ଥ୍ୟ ରକ୍ଷା କରିବାରେ ସହାୟକ ବୋଲି ସେ ମତ ଦେଇଥିଲେ ।

ଗାନ୍ଧିଜୀ ଥରେ ରେଳଗାଡ଼ିରେ ଯାତ୍ରା କରୁଥିଲାବେଳେ ସେ ଯେଉଁ ଡବାରେ ବସିଥିଲେ ତାହା ଥିଲା ତୃତୀୟ ଶ୍ରେଣୀର ଡବା । ସେଥିରେ ଗରିବ ଶ୍ରେଣୀର ଲୋକମାନେ ଯାତ୍ରା କରୁଥିଲେ । କିନ୍ତୁ ଯାତ୍ରୀମାନଙ୍କର ଭିଡ଼ ଓ ଅସ୍ୱାସ୍ଥ୍ୟକର ଆଚରଣ ତାଙ୍କ ଦୃଷ୍ଟିରେ ପଡ଼ିଲା । ଜଣେ ଯାତ୍ରୀର କାଶ ରୋଗ ଥିଲା, ସେ କାଶି କାଶି କଫ କାଢୁଥିଲା ସେଇ ଡବା ଭିତରେ । ଏହାଦ୍ୱାରା ଅନ୍ୟ ଯାତ୍ରୀମାନଙ୍କର ଘୃଣା ପ୍ରକାଶ ପାଇଲା । ଗାନ୍ଧିଜୀ ସେଥିରେ ବିରକ୍ତି ନହୋଇ ବରଂ ନିଜେ ସେ କଫକୁ ପୋଛି ବାହାରକୁ ଫୋପାଡ଼ି ଦେଲେ । ଏହାଦ୍ୱାରା ଯାତ୍ରୀମାନଙ୍କ ଉପରେ ଗାନ୍ଧିଜୀଙ୍କ ଏହି କାମର ପ୍ରଭାବ ପଡ଼ିଲା । ଗାନ୍ଧିଜୀ ନିଜେ ପ୍ରଥମେ ଯାହା ଉଚିତ ମନେ କରୁଥିଲେ ତାହା କାର୍ଯ୍ୟରେ କରି ଦେଖାଉଥିଲେ । ରେଳ ଡବାରେ ଯାତ୍ରୀମାନେ ନାନା ପ୍ରକାର ଅଳିଆ ଆବର୍ଜନା ସବୁ ପକାଇ ଯେପରି ଭାବରେ ଅସ୍ୱାସ୍ଥ୍ୟକର ପରିବେଶ ସୃଷ୍ଟି କରୁଥିଲେ, ତାହା ଗାନ୍ଧିଜୀଙ୍କ ଚେଷ୍ଟାଦ୍ୱାରା ରେଳ କର୍ମଚାରୀଙ୍କ ଦୃଷ୍ଟିକୁ ଅଣାଗଲା ଏବଂ ତୃତୀୟ ଶ୍ରେଣୀରେ ଯାତ୍ରା କରୁଥିବା ଯାତ୍ରୀମାନଙ୍କର ବଦଭ୍ୟାସ ଯଥା- ପାନଛେପ, ଖଣ୍ଡିଆ ବିଡ଼ି, ଜିନିଷପତ୍ର ସବୁ ଏତେଡେଣେ ଭର୍ତ୍ତି କରିବା ଭଳି ବିଶୃଙ୍ଖଳାକୁ ଦୂର କରିବା ପାଇଁ ରେଳ କର୍ମଚାରୀ ଚେଷ୍ଟା କଲେ । ସେହିପରି ଗାନ୍ଧିଜୀ ଥରେ ବାରଣାସୀର କାଶୀ ବିଶ୍ୱନାଥ ମନ୍ଦିରକୁ ଦର୍ଶନ କରିବାକୁ ଗଲାବେଳେ ମନ୍ଦିର ରାସ୍ତା ଓ ପରିବେଶର ଅଳିଆ ଆବର୍ଜନା ଦେଖି ଦୁଃଖ ପ୍ରକାଶ କରିଥିଲେ ।

ଆଉ ଥରେ ବମ୍ବେରେ ଗାନ୍ଧିଜୀ ଥିଲାବେଳେ ଦଶ ବର୍ଷର ତାଙ୍କ ପୁଅ ମନିଲାଲର କିଛିଦିନ ତଳେ ବସନ୍ତ ରୋଗ ହୋଇଥିବାରୁ ସେ ଆନ୍ତ୍ରିକ ଜ୍ୱର ବା ଟାଇଫଏଡ଼ରେ ପୀଡ଼ିତ ହୋଇଥିଲେ । ନିମୋନିଆ ଓ ପ୍ରଳାପ ଭଳି ଲକ୍ଷଣ ତାଙ୍କଠାରେ ଦେଖାଗଲା । ଜଣେ ଡାକ୍ତରଙ୍କୁ ଡକାଗଲା । ସେ ଆସିଲେ ଏବଂ କହିଲେ ଯେ ଏଥିପାଇଁ କୌଣସି ଔଷଧ କାମ କରିବ ନାହିଁ । ତାଙ୍କୁ ଅଣ୍ଡା ଖାଇବାକୁ ପଡ଼ିବ । ତେବେ ଯାଇ ଆରୋଗ୍ୟ ହେବ । ସେ ଡାକ୍ତରଙ୍କୁ କହିଲେ ଯେ ତାଙ୍କ ପରିବାର ସମ୍ପୂର୍ଣ୍ଣ ନିରାମିଷାହାରୀ । ତେଣୁ ଅଣ୍ଡା ଖାଇବା ସମ୍ଭବ ନୁହେଁ । ତେଣୁ ସେ ଡାକ୍ତରଙ୍କୁ କହିଲେ ମୁଁ ପୁଅର ଜଳଚିକିତ୍ସା କରିବାକୁ ଚାହେଁ । କିନ୍ତୁ ଆପଣ ତା'ର ନାଡ଼ି ଓ ଛାତି ପରୀକ୍ଷା କରି ଦେଖନ୍ତୁ । ଗାନ୍ଧିଜୀ ତା' ପରେ ତାଙ୍କ ପୁଅ ମନିଲାଲକୁ ଜଳଚିକିତ୍ସା ନିୟମ ଅନୁଯାୟୀ ଅଣ୍ଟା ପର୍ଯ୍ୟନ୍ତ ଗୋଟିଏ କୁଣ୍ଡରେ ତିନିମିନିଟ୍ ବସିବାକୁ କହିଲେ । ତା'ପରେ ତାକୁ କମଳା ରସ ଖାଇବାକୁ ଦେଲେ । କିନ୍ତୁ ଜ୍ୱର ୧୦୪°କୁ ଛୁଇଁଲା । ଗାନ୍ଧିଜୀ ବିଚଳିତ ହୋଇପଡ଼ିଲେ । ତଥାପି ସେ ରାମ ନାମ ଜପକରି ପୁଅର ଆରୋଗ୍ୟ ପାଇଁ ପ୍ରାର୍ଥନା କଲେ । କିଛି ସମୟ ପରେ ପୁଅ ତାଙ୍କୁ ଡାକି କହିଲା ବାହାରକୁ ନେବା ପାଇଁ । ତାଙ୍କ ଦେହରୁ ଝାଳ ବୋହିବାକୁ ଲାଗିଥିଲା, କ୍ରମେ ସେ ଭଲ ହୋଇଗଲେ । ତାଙ୍କୁ ଚାଳିଶଦିନ ଯାଏଁ କେବଳ ପାଣି ମିଶା କ୍ଷୀର ଓ ଫଳରସ ଖାଇବାକୁ ଦିଆଗଲା । ଶେଷକୁ ମନିଲାଲ ଖୁବ୍ ସୁସ୍ଥ ସବଳ ହୋଇଗଲେ । ଗାନ୍ଧିଜୀ ଭଗବାନଙ୍କୁ ଧନ୍ୟବାଦ ଜଣାଇଲେ । ତାଙ୍କର ବିଶ୍ୱାସ ଓ ଧୈର୍ଯ୍ୟର ସୁଫଳ ମିଳିଲା ।

**ଖାଦ୍ୟ ସଂଯମ ଉପରେ ଗାନ୍ଧିଜୀ ଗୁରୁତ୍ୱ ଦେଉଥିଲେ । ଜୀବନ ଧାରଣ ପାଇଁ ଖାଦ୍ୟ ନିହାତି ଆବଶ୍ୟକ । କିନ୍ତୁ ସେ ଖାଦ୍ୟରେ ସଂଯମ ଦରକାର । ସେ ଗାଈର କ୍ଷୀର ଖାଇବାକୁ ମଧ ବାରଣ କରୁଥିଲେ । ବରଂ ଖରାରେ ପାଚିଲା ଫଳ ଓ ବାଦାମ ମଞ୍ଜି ଖାଇବାକୁ ସୁପାରିଶ କରୁଥିଲେ । ଏହାଦ୍ୱାରା ଦେହର ତନ୍ତୁ ଓ କୋଷ ସବୁ ଠିକ୍ ଭାବରେ ଶକ୍ତି ପାଇପାରିବେ ।** ଅଙ୍ଗୁର ଓ ବାଦାମ ଏଥିପାଇଁ ବିଶେଷ ସାହାଯ୍ୟ କରିବ ଓ ମଣିଷର କାମ ବି କମିଯିବ । ଅସତ୍ ଚିନ୍ତା ଦୂର ହୋଇଯିବ । ସେ କହୁଥିଲେ, 'ଯେପରି ଅନ୍ନ ସେପରି ମନ' - ଅର୍ଥାତ୍ ଖାଦ୍ୟ ଯେପରି ମନ ସେପରି । ଥରେ ସେ ଭାରତର 'ଖେଡ଼ା'ଠାରେ ଆନ୍ଦୋଳନ କାର୍ଯ୍ୟ ଚାଲିଥିଲାବେଳେ ଭୁଲ୍ ଖାଦ୍ୟ ଖାଇବା ଯୋଗୁଁ ବେମାରରେ ପଡ଼ିଲେ । ଏପରିକି ମରଣ ମୁହଁକୁ ଚାଲିଗଲା ଭଳି ତାଙ୍କୁ ଜଣାପଡ଼ିଲା । ତେଣୁ ସେ ଡାକ୍ତରଙ୍କ ପରାମର୍ଶ ଚାହିଁଲେ । କ୍ଷୀର ବଦଳରେ କ'ଣ ଖାଇବାକୁ ପଡ଼ିବ ସେ କଥା ପଚାରିଲେ । କେତେକ କିଛି ପଥ୍ୟ ସମ୍ପର୍କରେ କହିଲେ କିନ୍ତୁ ତାହାଦ୍ୱାରା କିଛି ସୁଫଳ ମିଳିଲା ନାହିଁ । ସେ ରୋଗ ଶଯ୍ୟାରେ ପଡ଼ି ରହିଲେ । ଆୟୁର୍ବେଦ ଚିକିତ୍ସକ ତାଙ୍କୁ ଚରକ ସଂହିତାର ପ୍ରମାଣ ଦେଇ କହିଲେ ଯେ, ଚିକିତ୍ସା ପାଇଁ କୌଣସି ଧାର୍ମିକ କଟକଣା ରହିବା ଉଚିତ ନୁହେଁ । ଅର୍ଥାତ୍ ତାଙ୍କୁ ସୁସ୍ଥ ରହିବାକୁ ହେଲେ ଗୋମାଂସରୁ ତିଆରି ହୋଇଥିବା ଚା ଏବଂ ବ୍ରାଣ୍ଡି (ମଦ୍ୟ) ପିଇବାକୁ ପଡ଼ିବ । କିନ୍ତୁ ସେ ତାହା ଖାଇବାକୁ ମନା କରିଦେଲେ । ତାଙ୍କର ଶପଥରେ ସେ ଅଟଳ ରହିଲେ । ତେବେ ସେ ଗାଈ ଓ ମଇଁଷି କ୍ଷୀର ନ ଖାଇ ଛେଳି କ୍ଷୀର ଖାଇବାକୁ ରାଜି ହୋଇଗଲେ ।

**ଗାନ୍ଧିଜୀଙ୍କ ମତରେ କ୍ଷୀର ଅପେକ୍ଷା ପନିପରିବାରୁ ଯଥେଷ୍ଟ ପରିମାଣରେ ଶକ୍ତି ମିଳିପାରିବ । ଏହା ଯେ କେହି ଅଭ୍ୟାସ କରି ପାରନ୍ତି । କିନ୍ତୁ ସେ କହୁଛନ୍ତି ବୋଲି ନୁହେଁ । ଖାଦ୍ୟ ସଂଯମ ହେଉଛି ବଡ଼କଥା । ପାଟି ଲାଳସାରେ ଖାଦ୍ୟ ଖାଇବା ଉଚିତ୍ ନୁହେଁ । ମଣିଷ ବଞ୍ଚିବା ପାଇଁ ଖାଦ୍ୟ ଖାଏ । ଖାଦ୍ୟ ଖାଇବା ପାଇଁ ବଞ୍ଚିବା କଥା ନୁହେଁ ।** ଏହା ଥିଲା ଗାନ୍ଧିଜୀଙ୍କ ମତ । ମଣିଷର ଶରୀର ଯେଉଁ ଶୁଦ୍ଧ, ସାତ୍ତ୍ୱିକ ଆହାର ଗ୍ରହଣ କଲେ ନିରୋଗ ରହିପାରିବ, ତାହା ସେ ନିଜେ ଖୁବ୍ ଭଲ ଭାବରେ ବୁଝିଥିଲେ । ଉପବାସଦ୍ୱାରା ମଧ କେତେକ ସ୍ୱାସ୍ଥ୍ୟଗତ ସମସ୍ୟାର ସମାଧାନ ହୁଏ । ଗାନ୍ଧିଜୀ ନିଜେ ସେପରି ଉପବାସ ବ୍ରତ ଗ୍ରହଣ କରୁଥିଲେ । ଏହା କେବଳ ଏକ ଧାର୍ମିକ କଥା ନୁହେଁ । ଏହା ମଧ ଶରୀରର ବିଭିନ୍ନ ଯନ୍ତ୍ରକୁ ବିଶ୍ରାମ ଦେଇ, ସେସବୁକୁ ଆହୁରି ସତେଜ କରି ଦିଏ । ଗାନ୍ଧିଜୀ ତେଣୁ ବିଭିନ୍ନ ଉପାୟରେ ଶରୀର ଓ ମନକୁ ଶୁଦ୍ଧ କରୁଥିଲେ । ଏହାଦ୍ୱାରା ମଣିଷ କେତେକ ଶାରୀରିକ ଓ ମାନସିକ ଚାପରୁ ମୁକ୍ତ ହୋଇଯାଏ । **ଆମ ହିନ୍ଦୁ ଧର୍ମରେ ବହୁ ଓଷା, ବ୍ରତ ଉପବାସ କରିବାରେ ପରମ୍ପରା ରହିଛି । ଏସବୁ ସ୍ୱାସ୍ଥ୍ୟ ପାଇଁ ଦରକାର ବୋଲି ଗାନ୍ଧିଜୀ ଅନୁଭବ କରୁଥିଲେ ।**

ଖାଦ୍ୟ ସଂଯମ ବିଷୟରେ ଗାନ୍ଧିଜୀ ନିଜେ ଆତ୍ମଜୀବନୀରେ ଲେଖିଛନ୍ତି ଯେ ସେ ନିଜକୁ ବହୁତ ଖାଇବା ଲୋକ ବୋଲି ମନେ କରୁଥିଲେ । କିନ୍ତୁ ସେ ଯେତେବେଳେ ଖାଦ୍ୟ ସଂଯମ ଅଭ୍ୟାସ କଲେ ତା'ପରଠାରୁ ତାଙ୍କର ସ୍ୱାସ୍ଥ୍ୟ ଭଲ ରହିଲା । ସେ ତେଣୁ କେବଳ ଫଳ ଖାଇବାକୁ ଉଚିତ ମନେ କଲେ । ତାହା ମଧ୍ୟ ତାଙ୍କୁ ଶାନ୍ତି ଦେଲା ନାହିଁ । ତେଣୁ ସେ ଉପବାସ କରିବାକୁ ସ୍ଥିର କଲେ ଏବଂ ଦିନକୁ ଥରେ ମାତ୍ର ଖାଦ୍ୟ ଗ୍ରହଣ କଲେ । ସୁଆଦିଆ ଖାଦ୍ୟ ଖାଇବା ଉପରେ ସଂଯମ ଆଚରଣ କଲେ । ସେ ସଂଯମକୁ କଡ଼ାକଡ଼ି ଭାବରେ ପାଳନ କରି ନିଜକୁ ପ୍ରକୃତି ସହିତ ଯୋଡ଼ି ଦେବାକୁ ଚାହିଁଲେ । **ସେ କହୁଥିଲେ ଯେ ଆମେ ଅନେକ ସମୟରେ ଗୋଟିଏ ରୋଗକୁ ଭଲ କରିବାକୁ ଯାଇ ଯେଉଁ ଔଷଧ ଖାଉଁ, ତାହା ଆଉ ଶହ ଶହ ରୋଗକୁ ସୃଷ୍ଟି କରେ । ଏ ସମ୍ପର୍କରେ ସେ ନିଜର ସ୍ତ୍ରୀ କସ୍ତୁରବାଙ୍କ କଥା ଆତ୍ମଜୀବନୀରେ ଲେଖିଛନ୍ତି । କସ୍ତୁରବା ତାଙ୍କ ଜୀବନୀରେ ମୃତ୍ୟୁ ମୁହଁରୁ ରକ୍ଷା ପାଇଥିଲେ । କେବଳ କେତେକ ଘରୋଇ ଚିକିତ୍ସାଦ୍ୱାରା ତାଙ୍କୁ ସୁସ୍ଥ କରିପାରିଥିଲା ।** ତାଙ୍କୁ ଯେତେବେଳେ ପ୍ରଥମଥର ପାଇଁ ରୋଗ ଆକ୍ରମଣ କଲା ସେତେବେଳେ ତାଙ୍କର ବାରମ୍ବାର ରକ୍ତସ୍ରାବ ହେଉଥିଲା । ଡାକ୍ତର ତାଙ୍କର ଅପରେସନ ଦରକାର ବୋଲି ପରାମର୍ଶ ଦେଲେ । ସେଥିପାଇଁ କିନ୍ତୁ ନିଶା ଦିଆଯିବ ନାହିଁ ବୋଲି ଠିକ୍ ହୋଇଥିଲା । କସ୍ତୁରବା ପ୍ରଥମେ ଏହା ଗ୍ରହଣ କରୁନଥିଲେ ପରେ କିନ୍ତୁ ଗ୍ରହଣ କରି ନେଲେ । ଡାକ୍ତରଙ୍କ ଦାୟିତ୍ୱରେ ସେ ରହିଲେ । ଗାନ୍ଧିଜୀ ବାହାରକୁ ଚାଲିଗଲେ । କିଛିଦିନ ଗାନ୍ଧିଜୀ ଡାକ୍ତରଙ୍କ ପାଖରୁ ଚିଠି ପାଇଲେ କସ୍ତୁରବା ଏକବାରେ ଦୁର୍ବଳ ହୋଇଗଲେଣି ଏପରିକି ଚେତା ହରେଇଲେଣି । ତାଙ୍କୁ ମଦ ଓ ମାଂସ ଖାଇବାକୁ ନ ଦେଲେ ନ ଚଳେ । ସେଥିପାଇଁ ଡାକ୍ତର ଗାନ୍ଧିଜୀଙ୍କ ଅନୁମତି ଚାହିଁଥିଲେ । କାରଣ ସେଥିରେ ଗୋମାଂସ ସିଝାଯାଇ ତା'ର ରସକୁ ପିଇବାକୁ ଦିଆଯିବା କଥାଟି ଥିଲା । ଗାନ୍ଧିଜୀ କହିଲେ, ରୋଗୀର ଇଚ୍ଛା ଅନୁଯାୟୀ ମୁଁ ଚିକିତ୍ସା କରିପାରିବି ନାହିଁ । ତେଣୁ ତୁମେ ଆସି ମୋ' ଘରୁ ରୋଗୀକୁ ନେଇଯାଅ । ନଚେତ୍ କିଛି ଅଘଟଣ ଘଟିଲେ ମୁଁ ଦାୟୀ ହେବି ନାହିଁ । ଗାନ୍ଧିଜୀ ସଙ୍ଗେ ସଙ୍ଗେ ଆସିଲେ । ଡାକ୍ତର ତାଙ୍କୁ କହିଲେ ଯେ ସେ କସ୍ତୁରବାଙ୍କୁ ଗୋମାଂସ ସିଝାପାଣି ପିଇବାକୁ ଦେଇସାରିଛନ୍ତି । ଗାନ୍ଧିଜୀ ଏକଥା ଶୁଣି ବିରକ୍ତି ହେଲେ । କହିଲେ ତୁମେ ମୋତେ ଠକି ଦେଇଛ । ଡାକ୍ତର କହିଲେ, ନା, ମୁଁ ଚିକିତ୍ସା ପାଇଁ ଯାହା ନିହାତି ଦରକାର ତାହା ହିଁ କରିଛି । ରୋଗୀର ଜୀବନ ରକ୍ଷା ପାଇଁ ଏପରି କରିବାକୁ ଆମେ ବାଧ୍ୟ । କିନ୍ତୁ ପରେ କଥାଟି ଜଣା ପଡ଼ିବାରୁ ଗାନ୍ଧିଜୀ ଡାକ୍ତରଙ୍କ ଦାୟିତ୍ୱରେ ତାଙ୍କୁ ନ ରଖି ତାଙ୍କୁ ସାଙ୍ଗରେ ନେଇ ଆସିଲେ । କସ୍ତୁରବାଙ୍କ ଅବସ୍ଥା ସାଂଘାତିକ ହୋଇଯାଇଥିଲା । ତଥାପି ଗାନ୍ଧିଜୀ ଓ କସ୍ତୁରବା ନିଜ ଜିଦ୍‌ରେ ଅଟଳ ରହିଲେ । ଗୋମାଂସ ସିଝାପାଣି ପିଇବାକୁ ମନା କରିଦେଲେ । ଏପରି ବିଶ୍ୱାସ ଓ ନିଜ ଧର୍ମପ୍ରତି ଶ୍ରଦ୍ଧା ଅନ୍ୟତ୍ର ଦେଖିବାକୁ ପାଇବା ନାହିଁ । କସ୍ତୁରବାଙ୍କୁ କେବଳ ଜଳ ଚିକିତ୍ସାଦ୍ୱାରା ଭଲ କରାଯାଇଥିଲା ।

ଏହିପରି ଗାନ୍ଧିଜୀଙ୍କ ଜୀବନ ବଡ଼ ବିଚିତ୍ର ଘଟଣାରେ ପୂର୍ଣ୍ଣ । ତାଙ୍କ ମତରେ ଅହିଂସା, ସତ୍ୟାଗ୍ରହ ହେଉଛି ମଣିଷର ସବୁଠାରୁ ବଡ଼ ଶକ୍ତି । ସେବା, ସଂଯମ ଓ ତ୍ୟାଗ ଦ୍ୱାରା ମଣିଷ ସୁଖଶାନ୍ତିରେ ବଞ୍ଚିପାରିବ । ନିଜର ସୁଖପାଇଁ କାହାରିକୁ କଷ୍ଟ ଦେବା ଠିକ୍ ନୁହେଁ ବୋଲି ସେ ବରାବର କହୁଥିଲେ । ମଣିଷ କିପରି ସୁସ୍ଥ ସବଳ ରହିପାରିବ ସେ ସଂପର୍କରେ ସେ ସବୁବେଳେ ଶୁଦ୍ଧ ସାତ୍ତ୍ୱିକ ଆହାର ଗ୍ରହଣ କରିବାକୁ କହୁଥିଲେ । ଶରୀର ଶ୍ରମକୁ ସେ ବେଶୀ ଗୁରୁତ୍ୱ ଦେଉଥିଲେ । ଭଗବାନଙ୍କ ଉପରେ ବିଶ୍ୱାସ ରଖିବାକୁ ସେ କହୁଥିଲେ । ସମସ୍ତ ବିପଦ ଆପଦ ପାଇଁ ଭଗବାନଙ୍କୁ ପ୍ରାର୍ଥନା କରିବା ଉଚିତ୍ । 'ନିର୍ବଳର ବଳ ରାମ' ଅର୍ଥାତ୍ ଗରିବର ଶକ୍ତି ଭଗବାନ୍ । ସରଳ ଜୀବନଯାପନଦ୍ୱାରା ଜଣେ ସୁସ୍ଥ ରହିପାରିବ । ଖାଦ୍ୟ ଭାବନା ଓ ବାକ୍ୟରେ ପବିତ୍ରତା ରଖିବାଦ୍ୱାରା ହିଁ ଜଣେ ଶାନ୍ତି ପାଇପାରିବ । ଆଜି ସେ ମହାତ୍ମା ନାହାନ୍ତି ସତ, କିନ୍ତୁ ତାଙ୍କର ବାଣୀ ଓ ଆଦର୍ଶ ଆମ ସମସ୍ତଙ୍କ ପାଇଁ ଅଭୟଦାନ କରେ । ତାହା ହିଁ ଆମକୁ ଭଲ ବାଟରେ ଲକ୍ଷ୍ୟ ହାସଲ କରିବାରେ ସାହାଯ୍ୟ କରିବ । ଗାନ୍ଧିଜୀ କହୁଥିଲେ ଲକ୍ଷ୍ୟ କେବଳ ଭଲ ହେଲେ ଚଳିବ ନାହିଁ, ଲକ୍ଷ୍ୟ ହାସଲ ପାଇଁ ବାଟଟି ମଧ୍ୟ ଭଲ ହେବା ଉଚିତ୍ । 'ସତ୍ୟ ହିଁ ଭଗବାନ୍' ବୋଲି ସେ କହୁଥିଲେ । ସତ୍ୟ ଓ ଅହିଂସା ଉଭୟ ଗୋଟିଏ ମୁଦ୍ରାର ଏପାଖ ସେପାଖ ।

ଗାନ୍ଧିଜୀ ଭାରତର ସ୍ୱାଧୀନତା ପାଇଁ ଯେମିତି ଲଢ଼େଇ କରିଥିଲେ ସେମିତି ଭାରତର ସମାଜକୁ ନୂଆକରି ଗଢ଼ିବା ପାଇଁ ଏବଂ ଜୀବନକୁ ସୁସ୍ଥ ରଖିବାରେ କେତେକ ପ୍ରାକୃତିକ ଚିକିତ୍ସା ଉପାୟ ବିଷୟରେ ନିଜେ ପରୀକ୍ଷା କରି ସେଥିରେ ସଫଳ ହୋଇଥିଲେ । ସେ ଭାରତୀୟ ପୁରାତନ ଚିକିତ୍ସା ବିଜ୍ଞାନ ଆୟୁର୍ବେଦର ଉପକାର ବିଷୟରେ ଆଗ୍ରହୀ ହୋଇଥିଲେ ।

ସେ ଏକ ବୈଷ୍ଣବ ସଂସ୍କାରରେ ଚଳିବାପାଇଁ ବାଧ୍ୟ ହୋଇଥିବାରୁ ନିରାମିଷ ଓ ଫଳମୂଳ ଆହାରକୁ ସ୍ୱାସ୍ଥ୍ୟରକ୍ଷା ପାଇଁ ବେଶୀ ଉପଯୋଗୀ ବୋଲି ମନେ କରୁଥିଲେ । ଆଜି ମଧ୍ୟ ପୃଥିବୀରେ ନିରାମିଷ ଆହାରକୁ ପସନ୍ଦ କରାଯାଉଛି । କେବଳ ନିରାମିଷ ଆହାର ନୁହେଁ, ସମସ୍ତ ପ୍ରକାର ମାଦକ ଦ୍ରବ୍ୟ ବା ମଦ, ତମାଖୁ ଇତ୍ୟାଦି ନିଶାକାରକ ଦ୍ରବ୍ୟ ସେବନ କରିବାକୁ ବାରଣ କରାଯାଇଛି । କିନ୍ତୁ ଆମେ ଗାନ୍ଧିଜୀଙ୍କ ଭଳି କଠୋର ବ୍ରତ ଗ୍ରହଣ ନକଲେ ମଧ, କିଛି ପରିମାଣରେ ସଂଯମ, ଶୃଙ୍ଖଳା, ନୀତି, ନିୟମ ମାନିବାଦ୍ୱାରା ଆମର ଜୀବନ ସୁଖମୟ ହୋଇପାରିବ । ଗାନ୍ଧିଜୀଙ୍କ ଜୀବନ ହେଉଛି ସାରା ପୃଥିବୀ ପାଇଁ ଶାନ୍ତି ଆଉ ଅହିଂସାର ଉଦାହରଣ । ଖାଲି ସେତିକି ନୁହେଁ, ସେ ମଣିଷ ଜାତି ପାଇଁ କେତୋଟି ନୀତି ବାଣୀ ଦେଇଯାଇଛନ୍ତି । ସେଥିରେ (୧) ସତ୍ୟ, (୨) ଅହିଂସା, (୩) ଈଶ୍ୱର ବିଶ୍ୱାସ, (୪) ଆତ୍ମସଂଯମ, (୫) ସମ୍ପତ୍ତି ଠୁଳ ନ କରିବା, (୬) ଖାଦ୍ୟ ଲାଳସା ନ ରଖିବା, (୭) ଛୁଆଁଅଛୁଆଁ ଭାବ ନ ରଖିବା (୮) ସବୁ ଧର୍ମକୁ ସମାନ ମଣିବା, (୯) ସ୍ୱଦେଶ ଜାତ ଦ୍ରବ୍ୟ ପ୍ରତି ଶ୍ରଦ୍ଧା ରଖିବା, (୧୦) ଶରୀର ଶ୍ରମ (୧୧) ଭୟ ଛାଡ଼ିବା । ଏହାକୁ ଗାନ୍ଧିଜୀଙ୍କ ଏକାଦଶ ବ୍ରତ ବୋଲି କୁହାଯାଏ ।

ଓଡ଼ିଶା ଆୟୁର୍ବେଦ ସେବାସଦନ
୧୧୧, ମ୍ୟୁନିସିପାଲିଟି ମାର୍କେଟ
ଓ.ଏମ୍.ପି. ଛକ, କଟକ-୩

# ଅହିଂସା, ମୁକ୍ତି ଓ ଶାନ୍ତି

ଡଃ ଅତୁଲ ଚନ୍ଦ୍ର ପ୍ରଧାନ

ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଔପନିବେଶିକ ଶାସନରୁ ଦେଶକୁ ମୁକ୍ତ କରିବା ପାଇଁ ଭାରତୀୟ ଜାତୀୟ କଂଗ୍ରେସ ଅହିଂସାଭିତ୍ତିକ ଗଣ ଆନ୍ଦୋଳନ ଚଳାଇଥିଲା । ଏକ ଦୁର୍ବଳ ଜାତିକୁ ପରାକ୍ରମଶାଳୀ ସାମ୍ରାଜ୍ୟବାଦୀ ଶକ୍ତିର କବଳରୁ ମୁକ୍ତ କରିବା ପାଇଁ ଅହିଂସା ଏକ ସହଜ ମାର୍ଗ ବୋଲି ଅନେକେ ଭାବୁଥିଲେ । କିନ୍ତୁ ମହାତ୍ମା ଗାନ୍ଧୀଙ୍କ ପାଇଁ ଅହିଂସା ଏକ ଧର୍ମ ଥିଲା । ଏହା ବିନା ସ୍ୱାଧୀନତା ନିରର୍ଥକ ବୋଲି ସେ ଭାବୁଥିଲେ । ତାଙ୍କ ମତରେ ଆମେ ଯେଉଁ ପରିମାଣରେ ଅହିଂସାକୁ କାର୍ଯ୍ୟକାରୀ କରିବୁ ସେହି ପରିମାଣରେ ଆମେ ସ୍ୱାଧୀନତା ଲାଭ କରିବୁ । ଦାର୍ଶନିକ ସର୍ବପଲ୍ଲୀ ରାଧାକୃଷ୍ଣନ୍‌ଙ୍କ ମତରେ ଅତ୍ୟାଚାର, ଅନ୍ୟାୟ ବିରୋଧରେ ଲଢ଼େଇ କରିବା ପାଇଁ ମଣିଷ ଭିତରେ ଯେଉଁ ଉଚ୍ଚତର ପ୍ରବୃତ୍ତି ନିହିତ ରହିଛି ଗାନ୍ଧୀଙ୍କ ଅହିଂସା ନୀତି ତାହାରି ଉପରେ ପ୍ରତିଷ୍ଠିତ ଏବଂ ତାହା ଆମକୁ ଭୟ, ଲୋଭ, କ୍ରୋଧ ଓ ଅପରାଧ ବିରୋଧରେ ଚେତନା ଭିତରେ ଲଢ଼େଇ କରିବା ପାଇଁ ପ୍ରେରଣା ଦିଏ । ଅହିଂସା ନୀତିକୁ ଗାନ୍ଧୀ ସଭ୍ୟତା ଓ ସମାଜର ମୂଳଭିତ୍ତି ବୋଲି ବିଚାର କରୁଥିଲେ, କାରଣ ଆଦିମ ଅବସ୍ଥାରେ ବଣ ଜଙ୍ଗଲରେ ବାସ କରୁଥିବା ସମୟରେ ମଣିଷ ହିଂସାଦ୍ୱାରା ପରିଚାଳିତ ହେଉଥିଲା ଏବଂ ସଭ୍ୟତାର ବିକାଶ ଫଳରେ ଅହିଂସା ଏକ ସାମାଜିକ ନିୟମରେ ପରିଣତ ହେଲା । କିନ୍ତୁ ଶତାବ୍ଦୀ ଶତାବ୍ଦୀ ଧରି ଅହିଂସା ନୀତି ସାମାଜିକ ସ୍ତରରେ ବ୍ୟକ୍ତି ଓ ବ୍ୟକ୍ତି ମଧ୍ୟରେ ଥିବା ସମ୍ପର୍କରେ ସୀମିତ ରହି ଆସିଛି । ଜାତୀୟ ଓ ଆନ୍ତର୍ଜାତିକ କ୍ଷେତ୍ରରେ ଏହାର ପ୍ରୟୋଗ ଲାଗି ଗାନ୍ଧୀ ଆହ୍ୱାନ ଦେଇଥିଲେ ।



ଅହିଂସା ନୀତିରେ ପରିଚାଳିତ ବ୍ୟକ୍ତି ମଧ୍ୟରେ ଅସୀମ ସାହସ, ଧୈର୍ଯ୍ୟ ଓ ଶୃଙ୍ଖଳା ବିକଶିତ ହେବା ଆବଶ୍ୟକ । ଗାନ୍ଧୀଙ୍କ ଅନୁଗାମୀମାନଙ୍କ ମଧ୍ୟରେ ଏହି ଗୁଣଗୁଡ଼ିକ କେତେମାତ୍ରାରେ ବିକଶିତ ହୋଇଥିଲା ? ଏ ସମ୍ପର୍କରେ ତାଙ୍କର ଘନିଷ୍ଠ ସହଯୋଗୀ ବିନୋବା ଭାବେ କହନ୍ତି- 'ଗାନ୍ଧିଜୀ ଆମ ଭିତରେ ସାହସିକ ଅହିଂସାଭାବ ସୃଷ୍ଟି କରିବା ପାଇଁ ଚେଷ୍ଟା କରିଥିଲେ । କିନ୍ତୁ ଆମେ ଦୁର୍ବଳର ଅହିଂସା ପ୍ରଦର୍ଶନ କଲୁଁ । ଲୋକେ ତାଙ୍କୁ ବିଶ୍ୱାସ କରୁଥିଲେ ଏବଂ ତାଙ୍କୁ ଅନୁସରଣ କରୁଥିଲେ । କିନ୍ତୁ ଗାନ୍ଧିଜୀଙ୍କ ନେତୃତ୍ୱରେ ଆମେ ଯେଉଁ ଯୁଦ୍ଧ ଲଢ଼ିଲୁ ସେଥିରେ ଅହିଂସା ନୀତିର ଉଚ୍ଛୃଙ୍ଖଳତାର ପରିପ୍ରକାଶ ଘଟିଲା । ସ୍ୱରାଜ ଆସିଲା । କିନ୍ତୁ ତାହା ଅହିଂସାଦ୍ୱାରା ଆସିଲା ବୋଲି ହୃଦ୍‌ବୋଧ ହେଲା ନାହିଁ । ତେଣୁ ଆମେ ଅହିଂସାର ଆନନ୍ଦ ପାଇପାରିଲୁ ନାହିଁ । ଅହିଂସାର କିଞ୍ଚିତ ଆଭାସ ପାଇଲୁ କିନ୍ତୁ ତାହା ଆମ ହୃଦୟରେ ପ୍ରସ୍ଫୁଟିତ ହୋଇ ନଥିଲା ।'

ଅହିଂସାବାଦୀ ଅସହଯୋଗ ଏକ ଫଳପ୍ରଦ ଉପାୟ ଥିଲା । ଏହା ଇଂରେଜ ସରକାରଙ୍କ ସବୁ ଅସ୍ତ୍ରଶସ୍ତ୍ରକୁ ଅକାମୀ କରି ଦେଲା । କୌଣସି ସରକାର ଯେତେ ଶକ୍ତିଶାଳୀ ହେଲେ ମଧ୍ୟ ଲୋକଙ୍କ ସହଯୋଗ ବିନା ଚାଲିପାରେ ନାହିଁ । ଯଦି କୌଣସି ସରକାର ନ୍ୟାଯ୍ୟ ଓ ଅହିଂସାଭିତ୍ତିକ ଗଣ ଆନ୍ଦୋଳନକୁ କ୍ରୁର ଭାବରେ ଦମନ କରେ, ତାହା ହେଲେ ସେହି ସରକାର ଶାସନ କରିବା ପାଇଁ ନୈତିକ କ୍ଷମତା ହରାଏ ଏବଂ ସେହିଭଳି ଆନ୍ଦୋଳନ ଆଗରେ ଯଦି ସରକାର ମୁଣ୍ଡ ନୁଆଁଏ ତାହାହେଲେ ସତ୍ୟ ଓ ନ୍ୟାୟର ବିଜୟ ହୁଏ ।

ଗାନ୍ଧୀଙ୍କ ଅହିଂସା ନୀତିରେ ଭାରତ ସ୍ୱାଧୀନତା ହାସଲ କରିଥିଲା କି ନାହିଁ ଏ ବିଷୟରେ ବିଭିନ୍ନ ପ୍ରକାର ମତ ପ୍ରକାଶ ପାଇଛି । କେତେକ ଲୋକ ଇଂରେଜ ସରକାର ବିରୋଧରେ ହିଂସାତ୍ମକ ଆନ୍ଦୋଳନ ଚଳାଇଥିଲେ । ବିଭିନ୍ନ କାରଣରୁ ଇଂରେଜମାନେ ଭାରତରୁ ହଟିବା ପାଇଁ ବାଧ୍ୟ ହୋଇଥିଲେ । କଂଗ୍ରେସ ଭିତରେ ସୁଭାଷ ଚନ୍ଦ୍ର ବୋଷଙ୍କ ଭଳି ଦେଶପ୍ରେମୀ ବ୍ୟକ୍ତି ଏବଂ କଂଗ୍ରେସ ବାହାରେ ଭଗତ ସିଂହଙ୍କ ଭଳି ବିପ୍ଲବୀ ହିଂସା ନୀତିକୁ ଆପଣେଇ ନେଇଥିଲେ । କେତେକ କହନ୍ତି ଯେ ଇଂରେଜମାନଙ୍କ ନ୍ୟାୟାନୁରାଗ ଓ ଉଦାରତା ଉପରେ ଭରସା ରଖି ଗାନ୍ଧୀ ସତ୍ୟାଗ୍ରହ ଆନ୍ଦୋଳନ ଚଳାଇଥିଲେ । ଇଂରେଜମାନେ ଗାନ୍ଧୀ ଓ ତାଙ୍କ ସହଯୋଗୀମାନଙ୍କ ପ୍ରତି ଉଦାର ଓ ସଦୟ ମନୋଭାବ ପ୍ରଦର୍ଶନ କରିଥିଲେ ଏବଂ ଯେତେବେଳେ ରାଜନୈତିକ ସ୍ତରରେ ଔପନିବେଶିକ ଶାସନ ଚଳାଇବା ଅସମ୍ଭବ ହୋଇପଡ଼ିଲା ସେତେବେଳେ

ବାସ୍ତବବାଦୀ ଇଂରେଜମାନେ ଭାରତରୁ ହଟିଗଲେ । ତେଣୁ କେତେକ ଲୋକ ଇଂରେଜମାନଙ୍କ ଉଦାରତା ଓ ବିଜ୍ଞତାକୁ ପ୍ରଶଂସା କରନ୍ତି । କିନ୍ତୁ ଅପର ପକ୍ଷରେ ମହାତ୍ମା ଗାନ୍ଧୀଙ୍କ ଅହିଂସାତ୍ମକ ଆନ୍ଦୋଳନ ହେତୁ ଇଂରେଜମାନେ ଶାନ୍ତିପୂର୍ଣ୍ଣ ଭାବରେ ଓ ସମ୍ମାନର ସହିତ କ୍ଷମତା ହସ୍ତାନ୍ତର କରିପାରିଲେ ବୋଲି କେତେକ ବିଜ୍ଞ ଇଂରେଜ ଲୋକ ସ୍ୱୀକାର କରିଛନ୍ତି ଏବଂ ସେଥିପାଇଁ କୃତଜ୍ଞତା ପ୍ରକାଶ କରିଛନ୍ତି । ଉଦାହରଣ ସ୍ୱରୂପ- ଇଂଲଣ୍ଡର ପୂର୍ବତନ ପ୍ରଧାନମନ୍ତ୍ରୀ **ହେରୋଲଡ୍ ଉଇଲ୍‌ସନ୍ ଲେଖିଛନ୍ତି- 'ଅହିଂସା ନୀତିରେ ଲକ୍ଷ୍ୟ ହାସଲ ପାଇଁ ଆନ୍ତରିକ ଭାବରେ ଠିକ୍ ଭାବୁଥିବା ମାର୍ଗ ଉପରେ ମହାତ୍ମା ଗାନ୍ଧୀ ଦୃଢ଼ ରହିବା ଫଳରେ ଉଭୟ ପକ୍ଷର ସମ୍ମତି ଅନୁସାରେ ଭାରତ ସ୍ୱାଧୀନ ହେଲା, ଏଥିରେ କେହି ଜୟଯୁକ୍ତ ଅଥବା ପରାଜିତ ହେଲେ ନାହିଁ,** ଏଭଳି ସମାଧାନରେ ବ୍ରିଟେନ୍ ଆନନ୍ଦ ଅନୁଭବ କଲା ଏବଂ ରାଜ୍ୟଗୋଷ୍ଠୀରେ ଏକ ନୂଆ ଅଂଶୀଦାରକୁ ଆଗ୍ରହର ସହିତ ଅଭ୍ୟର୍ଥନା କଲା ।'

ଶାନ୍ତିପୂର୍ଣ୍ଣ ଉପାୟରେ କ୍ଷମତା ହସ୍ତାନ୍ତର ବ୍ୟତୀତ ଦେଶର ଏକତାକୁ ବଜାୟ ରଖିବାରେ ଅହିଂସା ନୀତିର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଅହିଂସା ଓ ପ୍ରେମଭାବଦ୍ୱାରା ହିନ୍ଦୁ-ମୁସଲମାନ ଏକତା ରକ୍ଷା କରିବା ସହିତ ସାମ୍ପ୍ରଦାୟିକ ଦଙ୍ଗା ଏଡ଼ାଇବା ପାଇଁ ମହାତ୍ମା ଗାନ୍ଧୀ ଉଦ୍ୟମ କରିଥିଲେ । ଏହି ଉଦ୍ୟମରେ ସେ ବିଶେଷ ସଫଳ ହୋଇ ପାରିନଥିଲେ । କାରଣ ସେ ଦେଶର ବିଭାଜନକୁ ରୋକି ପାରିନଥିଲେ । ସ୍ୱାଧୀନତା ପ୍ରାପ୍ତି ଓ ସାମ୍ପ୍ରଦାୟିକ ସଦ୍‌ଭାବ ବ୍ୟତୀତ ବୈଦେଶିକ ଆକ୍ରମଣର ମୁକାବିଲା କ୍ଷେତ୍ରରେ ମହାତ୍ମା ଗାନ୍ଧୀ ଅହିଂସା ନୀତିର ପରିକଳ୍ପନା କରିଥିଲେ ।

ଅନ୍ୟାୟ ବିରୋଧରେ ଅହିଂସାତ୍ମକ ଆନ୍ଦୋଳନକୁ ସୁଦୃଢ଼ କରିବା ପାଇଁ ସ୍ୱେଚ୍ଛାକୃତ ଗଠନମୂଳକ କାର୍ଯ୍ୟକ୍ରମର ଆବଶ୍ୟକତା ରହିଛି । ସ୍ୱାଧୀନତା ପୂର୍ବରୁ ସ୍ୱରାଜପ୍ରାପ୍ତିକୁ ପ୍ରାଧାନ୍ୟ ଦିଆଯାଇଥିଲା ଏବଂ ଗଠନମୂଳକ କାର୍ଯ୍ୟକ୍ରମକୁ ଅପେକ୍ଷାକୃତ କମ୍ ଗୁରୁତ୍ୱ ଦିଆଯାଇଥିଲା । ବର୍ତ୍ତମାନ ସ୍ୱାଧୀନ ଗଣତାନ୍ତ୍ରିକ ସମାଜର ସର୍ବାଙ୍ଗୀନ ଉନ୍ନତି ଏବଂ ବିଭିନ୍ନ ଗୋଷ୍ଠୀ ମଧ୍ୟରେ ସଦ୍‌ଭାବ ରକ୍ଷା କରିବା ପାଇଁ ଗଠନମୂଳକ କାର୍ଯ୍ୟକ୍ରମର ବହୁତ ଆବଶ୍ୟକତା ରହିଛି । ଲୋକମାନଙ୍କର ସ୍ୱେଚ୍ଛାକୃତ ଉଦ୍ୟମଦ୍ୱାରା ଗଣତନ୍ତ୍ରର ବିକାଶ ସମ୍ଭବ । ମହାତ୍ମା ଗାନ୍ଧୀ କହିଥିଲେ, 'ମୋ' ମତରେ ବାଧ୍ୟବାଧକତାଦ୍ୱାରା ଗଣତନ୍ତ୍ରର ବିକାଶ ଅସମ୍ଭବ । ଗଣତନ୍ତ୍ରର ଆତ୍ମାକୁ ବାହାରୁ ଲଦି ଦିଆଯାଇପାରିବ ନାହିଁ । ଏହା ଭିତରୁ ଆସିବା ଦରକାର ।'

ସ୍ୱାଧୀନ ଭାରତରେ ସ୍ୱେଚ୍ଛାକୃତ ଉଦ୍ୟମଦ୍ୱାରା ସମାଜର କଲ୍ୟାଣ ପାଇଁ କେତେଗୁଡ଼ିଏ ଉଦ୍ୟମ ହୋଇଛି, ଯଥା- ଜୟପ୍ରକାଶ ନାରାୟଣଙ୍କଦ୍ୱାରା ଚମ୍ବଲ ଉପତ୍ୟକାର ଡକାୟତମାନଙ୍କର ହୃଦୟ ପରିବର୍ତ୍ତନ ପାଇଁ ଉଦ୍ୟମ, ବାବା ଆମେତଙ୍କ କୁଷ୍ଠରୋଗୀ ସେବା ଓ କୁଷ୍ଠରୋଗ ନିରାକରଣ ପାଇଁ ଉଦ୍ୟମ, ହିମାଳୟରେ ଜଙ୍ଗଲ ସୁରକ୍ଷା ପାଇଁ ଚିପକୋ ଆନ୍ଦୋଳନ, ନାରୀ ଶ୍ରମିକମାନଙ୍କୁ ଶୋଷଣରୁ ରକ୍ଷା କରିବା ପାଇଁ ଶ୍ରୀମତୀ ଏଲା ଭଟ୍ଟଙ୍କ ପ୍ରଚେଷ୍ଟା ଇତ୍ୟାଦି । ଅପରପକ୍ଷରେ ବିଭିନ୍ନ ପ୍ରକାର ବିଶୃଙ୍ଖଳା ଓ ହିଂସାକାଣ୍ଡ, ଯଥା- ସାମ୍ପ୍ରଦାୟିକ ବିଭୀଷିକା ଓ ଦଙ୍ଗା, ଗୋଳାବାରୁଦ ବିସ୍ଫୋରଣ, ଆନ୍ଧ୍ର, ଓଡ଼ିଶା, ଛତିଶଗଡ଼ ଓ ଝାଡ଼ଖଣ୍ଡର ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ନକ୍ସଲବାଦୀ ଓ ମାଓବାଦୀ କାର୍ଯ୍ୟକଳାପ, ଦାରିଦ୍ର୍ୟ ଓ ଅର୍ଥନୈତିକ ବୈଷମ୍ୟ ଜନିତ ଉତ୍ତେଜନା ଓ ସଂଘର୍ଷ, ଶିଳ୍ପାୟନ ପାଇଁ ବିସ୍ଥାପନ ହେତୁ ଉତ୍ତେଜନା ଏବଂ ସହରାଞ୍ଚଳରେ ବସ୍ତି ବୃଦ୍ଧି ପରିଦୃଷ୍ଟ ହେଉଛି । ସୀମାନ୍ତରେ ପାକିସ୍ଥାନ ଓ ଚୀନ ସହିତ ଉତ୍ତେଜନା ଲାଗି ରହିଛି । କେବଳ ସରକାରୀ ପ୍ରଚେଷ୍ଟାଦ୍ୱାରା ଦେଶର ବିଭିନ୍ନ ସମସ୍ୟାଗୁଡ଼ିକର ସମାଧାନ ସମ୍ଭବ ହୋଇପାରିବ କି ? ଜନସାଧାରଣଙ୍କ ମଧ୍ୟରେ ସଚେତନତା ଜାଗ୍ରତ ହେବା ଦରକାର । ଅସାଧାରଣ ସାହସ, ତ୍ୟାଗ, ଧୈର୍ଯ୍ୟ, ଉଦ୍ୟମ ଓ ନୈତିକ ବଳ ବିନା ସମାଜକୁ ଠିକ୍ ରାସ୍ତାରେ ପରିଚାଳିତ କରିବା ଦିବାସ୍ୱପ୍ନରେ ପରିଣତ ହେବ । ଆନ୍ତର୍ଜାତିକ କ୍ଷେତ୍ରରେ ଅହିଂସାଭିତ୍ତିକ ସହଯୋଗ ହିଁ ଭବିଷ୍ୟତ ବଂଶଧରମାନଙ୍କ ପାଇଁ ଏକମାତ୍ର ମାର୍ଗ । କାରଣ ଦେଶ ଦେଶ ମଧ୍ୟରେ ପାରସ୍ପରିକ ନିର୍ଭରଶୀଳତା ଏଭଳି ବଢ଼ି ଯାଇଛି ଯେ କୌଣସି ଦେଶ ସଂପୂର୍ଣ୍ଣ ସ୍ୱାଧୀନ ବା ସ୍ୱତନ୍ତ୍ର ହୋଇ ଚଳିପାରିବ ନାହିଁ ।

ମହାତ୍ମା ଗାନ୍ଧୀ କହିଥିଲେ, 'ମୋ' ମତରେ ବାଧ୍ୟବାଧକତାଦ୍ୱାରା ଗଣତନ୍ତ୍ରର ବିକାଶ ଅସମ୍ଭବ । ଗଣତନ୍ତ୍ରର ଆତ୍ମାକୁ ବାହାରୁ ଲଦି ଦିଆଯାଇପାରିବ ନାହିଁ । ଏହା ଭିତରୁ ଆସିବା ଦରକାର ।'

**ଉପାଦାନ ଟୀକା**


୧. ଈଶ୍ୱର ଟୋପ, Ethos of Non-violence, ନବଜୀବନ ପବ୍ଲିସିଙ୍ଗ ହାଉସ୍, ଅହମଦାବାଦ, ୧୯୬୪, ପୃ.୯୯

୨. ସର୍ବପଲ୍ଲୀ ରାଧାକୃଷ୍ଣନ୍, Mahatma Gandhiji 100 years, ଗାନ୍ଧୀ ପିସ୍ ଫାଉଣ୍ଡେସନ୍, ନୂଆଦିଲ୍ଲୀ, ୧୯୬୮, ପୃ.୯

୩. ହରିଜନ, ଜାନୁଆରୀ ୭, ୧୯୩୯

୪. କାନ୍ତି ଶାହା (ସମ୍ପାଦିତ), Vinoba on Gandhi, ସର୍ବସେବା ସଂଘ ପ୍ରକାଶନ, ବାରାଣସୀ, ୨୦୦୦, ପୃ.୮୬

୫. ରାଧାକୃଷ୍ଣନ୍ op.cit., ପୃ.୩୯୧

୬. ଧୀରେନ୍ଦ୍ର ମୋହନ ଦତ୍ତ, The Philosophy of Mahatma Gandhi, କଲିକତା ବିଶ୍ୱବିଦ୍ୟାଳୟ, ୧୯୬୮, ପୃ.୧୫୫


ଅବସରପ୍ରାପ୍ତ ପ୍ରଫେସର (ଇତିହାସ)
ଏମ୍.ଆଇ.ଜି.-୬୮
ବରମୁଣ୍ଡା ହାଉସିଂ ବୋର୍ଡ଼ କଲୋନୀ
ଭୁବନେଶ୍ୱର- ୭୫୧୦୦୩

# ଲୋକନାୟକ ଜୟପ୍ରକାଶ

ଡକ୍ଟର ଉଦ୍ଧବ ଚରଣ ନାୟକ



'ଇନ୍‌କିଲାବ ଜିନ୍ଦାବାଦ୍' ! 'ଜୟପ୍ରକାଶ ଜିନ୍ଦାବାଦ୍' ! 'ଲୋକନାୟକ ଜୟପ୍ରକାଶ ଜିନ୍ଦାବାଦ୍' ! ୧୯୫୯ ମସିହାର କଥା । ଲୋକେ ଜୟପ୍ରକାଶ ନାରାୟଣଙ୍କୁ 'ଲୋକନାୟକ' ଭାବରେ ସମ୍ବୋଧନ କଲେ । ତା'ପରେ ୧୯୭୪ ମସିହା ଏପ୍ରିଲ ୧ ତାରିଖ ଦିନ ପାଟନାର ଗାନ୍ଧୀ ମଇଦାନରେ ଏକତ୍ର ହୋଇଥିବା ଏକ ଲକ୍ଷ ଜନତା ସର୍ବପ୍ରଥମେ ଜୟପ୍ରକାଶଙ୍କୁ 'ଲୋକନାୟକ' ବୋଲି ସମ୍ବୋଧନ କରି ଉଚ୍ଚସ୍ୱରରେ ଧ୍ୱନି ଦେଲେ । ସେହି ଦିନଠାରୁ ଆଜିଯାଏଁ ଜୟପ୍ରକାଶଜୀ ଲୋକନାୟକ ଭାବରେ ପରିଚିତ - ଯେମିତି ବାଲ ଗଙ୍ଗାଧରଙ୍କୁ 'ଲୋକମାନ୍ୟ' ବୋଲି ସମ୍ବୋଧନ କରାଯାଏ । ଜୟପ୍ରକାଶଜୀ ଥିଲେ ସର୍ବ ଭାରତୀୟସ୍ତରରେ ଜଣେ ବିଶିଷ୍ଟ ରାଜନୈତିକ ନେତା । ସିଦ୍ଧାନ୍ତବାଦୀ ଜନନେତା । ବିହାର ଓ ଗୁଜରାଟରେ ସାମାଜିକ-ରାଜନୈତିକ ଆନ୍ଦୋଳନର ମୁଖ୍ୟ ପୁରୋଧା । ଜଣେ ସ୍ୱାଧୀନତା ସଂଗ୍ରାମୀ, ସଚ୍ଚା ସମାଜବାଦୀ ନେତା ଭାବରେ ଆନ୍ତର୍ଜାତିକ ସ୍ତରରେ ତାଙ୍କର ଖ୍ୟାତି ଥିଲା । ସେ ଥିଲେ ଜଣେ ପକ୍କା ଜାତୀୟବାଦୀ-ଗାନ୍ଧିବାଦୀ । ସାରା ଜୀବନ ସେ ଖଦୀ ପରିଧାନ କରୁଥିଲେ ।

ଏହି ଜନପ୍ରିୟ ନେତା ଜୟପ୍ରକାଶଙ୍କର ଜନ୍ମ ୧୯୦୨ ମସିହା ଅକ୍ଟୋବର ୧୧ ତାରିଖ ବିଜୟାଦଶମୀ ତିଥିରେ ଉତ୍ତରପ୍ରଦେଶ ଓ ବିହାର ରାଜ୍ୟର ସୀମା ସୀତାବଜିୟାରଠାରେ । ତାଙ୍କ ପିତାଙ୍କର ନାମ ହରସୁ ଦୟାଲ ଓ ମା'ଙ୍କ ନାମ ଫୁଲରାଣୀ ଦେବୀ । ବାଲ୍ୟ କାଳରେ ଜୟପ୍ରକାଶଙ୍କ ନାମ ଥିଲା 'ବଉଲ' । ପାଞ୍ଚବର୍ଷ ବୟସରେ 'ବଉଲ' ଗ୍ରାମ ପାଠଶାଳାରେ ନାମ ଲେଖାଇଲେ । ତା'ପରେ ତାଙ୍କର ଉଚ୍ଚଶିକ୍ଷା ଆରମ୍ଭ ହେଲା ପାଟନା କଲେଜିଏଟ୍ ସ୍କୁଲରେ । ସ୍କୁଲରେ ତାଙ୍କ ନାମ ରହିଲା ଜୟପ୍ରକାଶ । ପାଟନାରେ ଅଧ୍ୟୟନ କାଳରେ ବହୁ ବଡ଼ ବଡ଼ ରାଜନେତାଙ୍କ ସଂସ୍ପର୍ଶରେ ଆସିଲେ । ସେମାନେ ହେଲେ ଅନୁଗ୍ରହ ନାରାୟଣ, ରାମଚରିତ ସିଂହ ଓ ପାଣ୍ଡେୟ ରଘୁନନ୍ଦନ ଆଦି ବିହାରର ନାମୀଦାମୀ ଜନନେତା । ହିନ୍ଦୀ, ସଂସ୍କୃତ, ବିଜ୍ଞାନ ଓ ଗଣିତ ଜୟପ୍ରକାଶଙ୍କର ସବୁଠାରୁ ପ୍ରିୟ ବିଷୟ । ସେ ଗଣିତରେ ରଖନ୍ତି ୧୦୦ରୁ ୯୮ ନମ୍ବର । ସେ କେବଳ ସ୍କୁଲ ପାଠରେ ବାନ୍ଧି ହୋଇ ରହିଲେ ନାହିଁ । ତୁଳସୀ ଦାସ, ହରିଶ୍ଚନ୍ଦ୍ର (ଭାରତେନ୍ଦୁ ହରିଶ୍ଚନ୍ଦ୍ର), ମୈଥିଳୀ ଶରଣ ଗୁପ୍ତ ଓ ମାଖନଲାଲ ଆଦି ହିନ୍ଦୀ ଭାଷାର ପ୍ରସିଦ୍ଧ କବିମାନଙ୍କର ରଚନା ପଢ଼ିବାରେ ମନ ନିବେଶ କଲେ । ସେହି ସମୟରେ ପ୍ରକାଶ ପାଉଥିବା ସରସ୍ୱତୀ ଓ 'ମର୍ଯ୍ୟାଦା' ନାମକ ଦୁଇଟି ହିନ୍ଦୀ ପତ୍ରିକା ସେ ମନଯୋଗ ସହକାରେ ପଢୁଥିଲେ । ଏପ୍ରିଲ ୧୯୧୯ରେ ଜୟପ୍ରକାଶ ପ୍ରଥମ ଶ୍ରେଣୀରେ ଏଣ୍ଟ୍ରାନ୍ସ ପାସ୍ କରି ମେରିଟ୍ ସ୍କଲରାସିପ୍ ଲାଭ କଲେ ।

ସେହି ସମୟରେ ଥାଆନ୍ତି ଗାନ୍ଧିଜୀଙ୍କର ଜଣେ ପ୍ରିୟ ସହକର୍ମୀ ବ୍ରଜ କିଶୋର ବାବୁ । ସେ ଉଚ୍ଚ ଶିକ୍ଷିତ । କଲିକତା, ବିଶ୍ୱବିଦ୍ୟାଳୟରୁ ଏମ୍.ଏ.ଏଲ୍.ଏଲ୍.ବି. ପାଶ୍ କରିଥାଆନ୍ତି । ତାଙ୍କର କନ୍ୟା ପ୍ରଭାବତୀଙ୍କ ସହ ଜୟପ୍ରକାଶଙ୍କର ଶୁଭ ପରିଣୟ ଅନୁଷ୍ଠିତ ହେଲା ୧୯୨୦ ମସିହା ମଇ ମାସ ୨୦ ତାରିଖ ଦିନ । ଶୁଭ ପରିଣୟ ବଡ଼ ହସଖୁସି ଓ ଜାକଜମକରେ ଅନୁଷ୍ଠିତ ହେଲା । ତା'ପରେ ଆରମ୍ଭ ହୋଇଗଲା ବନବାସ ପର୍ବ । ପତିପତ୍ନୀ ଦୁହେଁ ଦୁହିଁଙ୍କଠାରୁ ଅଲଗା ହୋଇଗଲେ । ଜୟପ୍ରକାଶ ଚାଲିଗଲେ ଆମେରିକା ଉଚ୍ଚଶିକ୍ଷା ଲାଭ କରିବା ପାଇଁ । ଆଉ ପତ୍ନୀ ପ୍ରଭାବତୀ ଚାଲିଗଲେ ସାବରମତୀ - ଗାନ୍ଧିଜୀଙ୍କ ଆଶ୍ରମକୁ ।

**ଆମେରିକାରେ ଜୟପ୍ରକାଶ**

୧୯୨୨ ମସିହା ମଇମାସ ୧୬ ତାରିଖରେ ଜୟପ୍ରକାଶ କଲିକତାରୁ 'ଜେନମ୍' ନାମକ ଜଳ ଜାହାଜରେ ଆମେରିକା ଯାତ୍ରା କଲେ ଉଚ୍ଚଶିକ୍ଷା ଲାଭ କରିବା ପାଇଁ । ସେ ଆମେରିକା ଯାଇ ଅଧ୍ୟୟନ କରିବା ସମ୍ପର୍କରେ କହିଥିଲେ - 'ପାଟନାରେ ହାଇସ୍କୁଲରେ ପଢ଼ିବା ସମୟରେ ସ୍ୱାମୀ ସତ୍ୟଦେବଙ୍କ ଭାଷଣ ଶୁଣି ଖୁବ୍ ପ୍ରଭାବିତ ହୋଇଥିଲି । ତାଙ୍କଠାରୁ ଆମେରିକା ସମ୍ପର୍କରେ ଅନେକ କଥା ଶୁଣିଥିଲି । ଧନୀ ପରିବାରରେ ମୋର ଜନ୍ମ ନୁହେଁ । ମୋତେ ଆମେରିକା ପଠେଇ ଉଚ୍ଚଶିକ୍ଷା ଦେବାପାଇଁ ମୋ ବାପାଙ୍କର ସେତେ ସମ୍ବଳ ନାହିଁ । ମୁଁ ଜାଣିଥିଲି ଛାତ୍ରମାନେ ସେଠାରେ କାମ କରି ପାଠ ପଢ଼ନ୍ତି । ମୁଁ ଠିକ୍ କରି ନେଇଥିଲି ସେଠାରେ କାମ କରି ରୋଜଗାର କରିବି, ଆଉ

ସେଇ ରୋଜଗାରରେ ପାଠ ପଢ଼ିବି । ପୁଣି ଆମେରିକାରେ ଶିକ୍ଷାଲାଭ କରିବାର ମୋର ଉଦ୍ଦେଶ୍ୟ ଥିଲା - ଦେଶରେ ସ୍ୱାଧୀନତା ଆନ୍ଦୋଳନ ଚାଲୁ ରହିଛି, ସେଥିରେ ଯୋଗଦେବା ପୂର୍ବରୁ ଆମେରିକାରେ ଶିକ୍ଷାଲାଭ କରି ଆସିବା ନିହାତି ଦରକାର ।

ଜଳ ଜାହାଜରେ ଯାତ୍ରା କରିବାର ତିନି ଦିନ ପରେ ଜୟପ୍ରକାଶ ରେଙ୍ଗୁନରେ ଆସି ପହଞ୍ଚିଲେ । ଏହାର ତିରିଶି ଦିନ ସମୁଦ୍ର ଯାତ୍ରା ପରେ ସେ ପହଞ୍ଚିଲେ ଜାପାନର କୋବେ ବନ୍ଦରଠାରେ । ସେ ଦଶଦିନ ଯାଏଁ ଜାପାନରେ ବୁଲାବୁଲି କରି ୟାକୋହାମା ଓ ଅଶୋକାଠାରେ ଆସି ପହଞ୍ଚିଲେ । ଏଠାରେ ତୌୟାମାରୁ ନାମକ ଆଉ ଗୋଟିଏ ଜାହାଜରେ ବସିଲେ । ୧୮ ଦିନ ପରେ ସେ ଆସି ପହଞ୍ଚିଲେ ସାନ୍‌ଫ୍ରାନ୍ସିସ୍କୋଠାରେ । ସେଠାରୁ ଗଲେ କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟକୁ । ସେଠାରେ 'ନାଲନ୍ଦା କ୍ଲବ' ନାମରେ ଏକ ଭାରତୀୟ କ୍ଲବ ଥାଏ । ସେଇଠି ତାଙ୍କୁ ଜୁଟିଗଲେ କିଛି ଉତ୍ତମ ଭାରତୀୟ ସାଙ୍ଗ । ଆମେରିକାରେ ଜୟପ୍ରକାଶ ଦୀର୍ଘ ସାତ ବର୍ଷ କାଳ କଟାଇଲେ । ଆମେରିକାର କାଲିଫର୍ଣ୍ଣିଆ, ୟୋବୋ, ଚିକାଗୋ ଓ ଉଇସ୍କୋନସିନ୍ ବିଶ୍ୱବିଦ୍ୟାଳୟମାନଙ୍କରେ ସେ ଅଧ୍ୟୟନ କଲେ । ଆମେରିକାର ବିଶ୍ୱବିଦ୍ୟାଳୟମାନଙ୍କରେ ଅଧ୍ୟୟନ କରିବା ପାଇଁ ହେଲେ ଅନେକ ଅର୍ଥର ଆବଶ୍ୟକତା ରହିଛି । ଏଣୁ ଜୟପ୍ରକାଶ ବିଭିନ୍ନ କାର୍ଯ୍ୟ କରି ଅର୍ଥ ଉପାର୍ଜନ କରିବା ସଙ୍ଗେ ସଙ୍ଗେ ଅଧ୍ୟୟନରେ ମନ ଦେଲେ । ପ୍ରଥମେ ସେ ବଗିଚା କାମ କଲେ । ତା'ପରେ କାରଖାନାରେ କାମ କଲେ । ଏଥିରୁ କିଛି ଅର୍ଥ ଉପାର୍ଜନ କରି ସଞ୍ଚୟ କରିବା ପରେ ଯାଇ ବିଶ୍ୱବିଦ୍ୟାଳୟରେ ନାମ ଲେଖାଇଲେ । ଛୁଟି ଦିନମାନଙ୍କରେ କାମ କରି ରୋଜଗାର କଲେ । କିଛି ଭାରତୀୟ ଛାତ୍ର ଏକାଠି ରହି ମେସ୍ କରି ହାତରେ ରୋଷେଇ କରି ଖାଇଲେ । ଏଥିରେ ମେସ୍ ଖର୍ଚ୍ଚ କମ୍ ପଡ଼ିଲା । ତା'ପରେ ଛୁଟିଦିନମାନଙ୍କରେ ହୋଟେଲକୁ ଯାଇ ବାସନ ମାଜିଲେ । ୱେଟର କାମ କଲେ । ଏହାଫଳରେ ଦୁଇ ବେଳା ଖାଇବା ଖର୍ଚ୍ଚଟା ସେ ଉଠେଇ ଦେଇପାରିଲେ । ମଝିରେ ମଝିରେ ସମୟ ଦେଖି ସୁସାଇନ ପାର୍ଲରକୁ ଯାଇ ଜୋତା ସଫା କରି କିଛି ପଇସା ରୋଜଗାର କଲେ । ଏହିପରି ଅନେକ ଦୁଃଖ କଷ୍ଟ କରି ସେ ଆମେରିକାରେ ପାଠ ପଢ଼ିବାରେ ଲାଗିଲେ । ସେ ବି.ଏ. ପାସ୍ କଲେ । ତାଙ୍କୁ ମେଧା ଛାତ୍ର ବୃତ୍ତି ମିଳିଲା । ବି.ଏ. ପାସ୍‌ର ତିନିମାସର ପରେ ନିଜ ବିଭାଗରେ ପାଠ ପଢ଼େଇଲେ । ଟ୍ୟୁଟରିଏଲ କ୍ଲାସ ନେଲେ । ସେଥିରୁ କିଛି ପଇସା ମିଳିଲା ଓ ଆର୍ଥିକ ଅବସ୍ଥା ଟିକିଏ ସୁଧୁରିଗଲା । ଏହି ସମୟରେ ମାର୍କ୍ସଙ୍କ ଦର୍ଶନ ପ୍ରତି ସେ ବିଶେଷ ଭାବରେ ଅନୁପ୍ରାଣିତ ହେଇ ପଡ଼ିଲେ ।

ତା'ପରେ ଛୁଟିଦିନମାନଙ୍କରେ ହୋଟେଲକୁ ଯାଇ ବାସନ ମାଜିଲେ । ୱେଟର କାମ କଲେ । ଏହାଫଳରେ ଦୁଇ ବେଳା ଖାଇବା ଖର୍ଚ୍ଚଟା ସେ ଉଠେଇ ଦେଇପାରିଲେ । ମଝିରେ ମଝିରେ ସମୟ ଦେଖି ସୁସାଇନ ପାର୍ଲରକୁ ଯାଇ ଜୋତା ସଫା କରି କିଛି ପଇସା ରୋଜଗାର କଲେ । ଏହିପରି ଅନେକ ଦୁଃଖ କଷ୍ଟ କରି ସେ ଆମେରିକାରେ ପାଠ ପଢ଼ିବାରେ ଲାଗିଲେ ।

ସେ ହେଲେ ଏମ୍.ଏ. ଶ୍ରେଣୀର ଛାତ୍ର । ଏମ୍.ଏ.ରେ ସେ ନେଇଥିବା ବିଷୟର ସ୍ୱତନ୍ତ୍ର ପ୍ରବନ୍ଧ 'ସୋସିଆଲ ଭେରିଏସନ୍' ବିଶ୍ୱବିଦ୍ୟାଳୟରେ ସର୍ବଶ୍ରେଷ୍ଠ ପ୍ରବନ୍ଧ ଭାବରେ ବିବେଚିତ ହେଲା । ୧୯୨୯ରେ ସେ ପି.ଏଚ୍.ଡି. ପାଇଁ ପ୍ରସ୍ତୁତ ହେଉଥିବା କାଳରେ ମା'ଙ୍କର ଭାଷଣ ଦେହ ଖରାପ ଖବର ପାଇ ସେ ଭାରତକୁ ଫେରିବା ପାଇଁ ବ୍ୟାକୁଳ ହୋଇ ଉଠିଲେ । ହେଲେ ଫେରିବେ କେମିତି ? ପାଖରେ ଯେ ପଇସା ନାହିଁ । ଥରେ ଆମେରିକାରେ ଜୟପ୍ରକାଶଙ୍କର ଭୀଷଣ ଦେହ ଖରାପ ହୋଇଥିଲା । ପଇସା ଅଭାବରୁ ଠିକ୍ ଭାବରେ ଚିକିତ୍ସିତ ହୋଇପାରିଲେ ନାହିଁ । ଏ ଖବର ସେ ମା'ଙ୍କୁ ଜଣାଇନଥିଲେ । ଘରକୁ କେମିତି ଯିବେ - ଏହି ଚିନ୍ତାରେ ସେ ପଡ଼ିଥାନ୍ତି, ତାଙ୍କର ଜଣେ ଭାରତୀୟ ବନ୍ଧୁ ତାଙ୍କୁ କିଛି ସାହାଯ୍ୟ ଦେଲେ । ଫଳରେ ସେ ଲଣ୍ଡନ ପର୍ଯ୍ୟନ୍ତ ଚାଲି ଆସିଲେ । ତା'ପରେ କ'ଣ କରିବେ ? ଶେଷରେ ଘରୁ ପଇସା ମଗାଇଲେ । ଅଠେଇଶ ଦିନ ପରେ ଘରୁ ଟଙ୍କା ଆସିଲା । ସେ ୧୯୨୯ ମସିହା ନଭେମ୍ବର ୨୩ ତାରିଖରେ ଘରେ ଆସି ପହଞ୍ଚିଲେ ।

**ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ**

ସାତବର୍ଷ ପରେ ମା' ପୁଅକୁ ପାଇ ଆନନ୍ଦରେ ଅଧୀର ହୋଇ ଉଠିଲେ । ଧୀରେ ଧୀରେ ମା'ଙ୍କ ଦେହ ଭଲ ହେବାରେ ଲାଗିଲା । ଜୟପ୍ରକାଶ ମୁଙ୍ଗେରଠାରେ ଅନୁଷ୍ଠିତ ହେଉଥିବା ବିହାର ରାଜନୈତିକ ସମ୍ମିଳନୀରେ ପ୍ରଥମେ ଯୋଗଦାନ କଲେ । ତା'ପରେ ଚାଲିଲେ ୱାର୍ଦ୍ଧା ବାପୁଜୀଙ୍କୁ ପ୍ରଣାମ କରିବା ପାଇଁ । କସ୍ତୁରବା ଓ ଗାନ୍ଧୀ ତାଙ୍କୁ ନିଜର କ୍ୱାଇଁ ପରି ସ୍ୱାଗତ କଲେ । ଏହାପରେ ଲାହୋରଠାରେ ଅନୁଷ୍ଠିତ ହେଲା ଐତିହାସିକ କଂଗ୍ରେସ ସମ୍ମିଳନୀ । ବାପୁଜୀ ଜୟପ୍ରକାଶ ଓ ପ୍ରଭାବତୀଙ୍କୁ ଧରି ଏହି ସମ୍ମିଳନୀରେ ଯୋଗ ଦେଲେ । ପଣ୍ଡିତ ଜବାହରଲାଲ ହେଲେ ଏହି ସମ୍ମିଳନୀର ଅଧ୍ୟକ୍ଷ । ଜୟପ୍ରକାଶ ବାପୁଜୀଙ୍କୁ କହିଲେ, 'ଭାରତରେ ସମାଜ ଶାସ୍ତ୍ର ଅଧ୍ୟୟନର ବ୍ୟବସ୍ଥା ନାହିଁ, ଏହି ପରିପ୍ରେକ୍ଷୀରେ ମୁଁ କିଛି ଭାବୁଛି ।' ଏ ସଂପର୍କରେ ବିହିତ ବ୍ୟବସ୍ଥା କରିବା ନିମନ୍ତେ ବାପୁଜୀ ଚିନ୍ତା କଲେ । ପଣ୍ଡିତ ମଦନମୋହନ ମାଳବ୍ୟଙ୍କୁ କହି ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ବ୍ୟବସ୍ଥା କରିବା ପାଇଁ ସେ ଜୟପ୍ରକାଶଙ୍କୁ କହିଲେ । ଏକଥା ଜବାହରଲାଲ ଜାଣିଲେ । ସେ ଜୟପ୍ରକାଶଙ୍କୁ କହିଲେ, 'ସେ ବିଶ୍ୱବିଦ୍ୟାଳୟ ଚିନ୍ତା ମନରୁ ଛାଡ଼ । କଂଗ୍ରେସ ଦଳର ଶ୍ରମିକ ସଂଗଠନର ଦାୟିତ୍ୱ ଗ୍ରହଣ କର ।' ଜୟପ୍ରକାଶ ଜବାହରଲାଲଙ୍କ ପ୍ରସ୍ତାବରେ ଏକମତ ହେଲେ । ସପତ୍ନୀକ ଆସି ଏହ୍ଲାବାଦର ସ୍ୱରାଜ୍ୟ ଆଶ୍ରମରେ ରହିଲେ । ତାଙ୍କ ସାଂଗଠନିକ ଦକ୍ଷତା ଦେଖି କଂଗ୍ରେସ ମହଲର ତୁଙ୍ଗନେତୃବର୍ଗ ଖୁବ୍ ପ୍ରୀତ ହୋଇଗଲେ । ଫଳରେ ଜୟପ୍ରକାଶଙ୍କୁ ସ୍ଥାୟୀ ସଂପାଦକ କରି ଦିଆଗଲା ।

ଏହ୍ଲାବାଦରେ ରହି ଜୟପ୍ରକାଶ ଜବାହରଲାଲଙ୍କୁ ଭାଇ ଓ କମଳା ନେହରୁଙ୍କୁ ଭାଉଜ ଭାବରେ ମାନ୍ୟତା ପ୍ରଦାନ କଲେ । ପ୍ରଭାବତୀ

ଦେବୀ ହୋଇ ଗଲେ କମଳା ନେହରୁଙ୍କର ସ୍ନେହର ପ୍ରଭାବତୀ । ଏହି ସମୟରେ ଆରମ୍ଭ ହୋଇଗଲା ବାପୁଙ୍କ ଦାଣ୍ଡିଯାତ୍ରା । ଜୟପ୍ରକାଶ ଖବର ପାଇଲେ କି, ମା'ଙ୍କର ଦେହ ଭୀଷଣ ଖରାପ । ଆମେରିକାରୁ ଭାରତକୁ ଫେରିବା ବେଳେ ଲଣ୍ଡନଠାରେ ଅଟକି ଯାଇ ଘରୁ ପଇସା ମଗାଇଥିଲେ ଜୟପ୍ରକାଶ । ସେତେବେଳେ ଘରର ଅବସ୍ଥା ଭଲ ନଥାଏ । ଫଳରେ ଧାର କରଜ କରି ବାପା ଟଙ୍କା ପଠାଇଥିଲେ ଜୟପ୍ରକାଶଙ୍କ ପାଖକୁ । ସେହି କରଜ ଟଙ୍କା ସୁଝା ହୋଇ ନଥାଏ । ଏଣେ ମା'ଙ୍କର ଦେହ ଭୀଷଣ ଖରାପ । ତାଙ୍କର ସାରା ପରିବାର ଆର୍ଥିକ ଦୁର୍ଗତି ଭିତରେ । ସେ ବାପୁଜୀଙ୍କୁ ଏସବୁ କଥା କହିଲେ । ବାପୁଜୀ ଘନଶ୍ୟାମ ଦାସ ବିରଳାଙ୍କୁ କହି ଜୟପ୍ରକାଶଙ୍କ ପାଇଁ ଚାକିରି ଖଣ୍ଡିଏ ଯୋଗାଡ଼ କରି ଦେଲେ । ଜୟପ୍ରକାଶ ହୋଇଗଲେ ବିରଳାଙ୍କ ସେକ୍ରେଟାରୀ । ମାସକୁ ଦରମା ତିନିଶହ ଟଙ୍କା । ସେ ସିନା ପରିସ୍ଥିତିରେ ପଡ଼ି ଚାକିରି କଲେ, ହେଲେ ତାଙ୍କ ମନ ରହିଥାଏ ସ୍ୱାଧୀନତା ସଂଗ୍ରାମରେ । ନେହରୁଙ୍କଠାରୁ ଡାକରା ପାଇ ଚାକିରି ଛାଡ଼ି ଜୟପ୍ରକାଶ ତାଙ୍କ ପାଖକୁ ଚାଲିଗଲେ । ଉଭୟ ସ୍ୱାମୀ ଓ ସ୍ତ୍ରୀ ଆନ୍ଦୋଳନରେ ସାମିଲ ହେଲେ । ସିଭିଲ ଡିସ୍ଓବିଡ଼ିଏନ୍ସ ଆଇନ ଅମାନ୍ୟ ଆନ୍ଦୋଳନରେ ଯୋଗଦେଇ ୧୯୩୨ ମସିହା ଫେବୃଆରୀ ୩ ତାରିଖ ଦିନ ଜୟପ୍ରକାଶଙ୍କ ପତ୍ନୀ ପ୍ରଭାବତୀ ଦେବୀ ଗିରଫ ହେଲେ । ୨୪ ତାରିଖରେ ଜୟପ୍ରକାଶ ଜେଲକୁ ଯାଇ ସ୍ତ୍ରୀ ପ୍ରଭାବତୀଙ୍କୁ ଭେଟିଲେ । ଏହି ସମୟରେ ବନାରସରେ କଂଗ୍ରେସ କାର୍ଯ୍ୟକାରୀ କମିଟି ବସିଲା । ଦିଲ୍ଲୀରେ ଅନୁଷ୍ଠିତ ହେଲା ଏକ ବିରାଟ ସଭା । କାହିଁ କେଉଁ ଆଡ଼େ ଥିଲେ ହଜାର ହଜାର ଲୋକ ହାତରେ ତ୍ରିରଙ୍ଗା ଝଣ୍ଡା ଧରି, ମହାତ୍ମା ଗାନ୍ଧୀ କି ଜୟ, ଇନ୍‌କିଲାବ ଜିନ୍ଦାବାଦ୍ ଧ୍ୱନି ଦେଇ ସଭାସ୍ଥଳରେ ଉପସ୍ଥିତ ହୋଇଗଲେ । ସରକାର ଜାଣିପାରିଲେ ଏହି ବିରାଟ ସଭା ଆୟୋଜନ କରିବା ମୂଳରେ ଅଛନ୍ତି ଜୟପ୍ରକାଶ ନାରାୟଣ । ପୋଲିସ୍ ତାଙ୍କୁ ଖୋଜିଲା । ହେଲେ ପାଇଲା ନାହିଁ । **ଶେଷରେ ଜୟପ୍ରକାଶ ପୋଲିସ୍ ହାତରେ ଧରାପଡ଼ିଲେ ମାଡ୍ରାସରେ । ବମ୍ବେଇ ଖବର କାଗଜରେ ବଡ଼ ବଡ଼ ଅକ୍ଷରରେ ପ୍ରକାଶ ପାଇଲା 'କଂଗ୍ରେସ ବ୍ରେନ୍ ଆରେଷ୍ଟେଡ଼' । ଜେଲରେ ରହିଲେ ଜୟପ୍ରକାଶ ନାରାୟଣ ।**

**ସମାଜବାଦୀ ଜୟପ୍ରକାଶ**

ଋଷରେ ଗରିବମାନଙ୍କର ସାଥୀ ହେଉଛନ୍ତି କାର୍ଲମାର୍କ୍ସ । ଜୟପ୍ରକାଶ ଆମେରିକାରେ ଥିବା ସମୟରେ ବହୁ ପରିମାଣରେ କାର୍ଲମାର୍କ୍ସଙ୍କ ସାହିତ୍ୟ ଅଧ୍ୟୟନ ଓ ଅନୁଧ୍ୟାନ କରିଥିଲେ । ସେ ଭାରତ ଫେରିବା ସମୟରେ ପୂରା ମାର୍କ୍ସବାଦୀ ହୋଇ କରି ଆସିଥିଲେ । ସେହି ଚିନ୍ତାଧାରାରେ ଭାରତବର୍ଷରେ ପରିବର୍ତ୍ତନ ଆଣିବା ପାଇଁ ସେ ସ୍ୱପ୍ନ ଦେଖୁଥିଲେ । ୧୯୩୪ ମସିହା ଜାନୁଆରୀ ୧୫ ତାରିଖରେ ବିହାରରେ ହୋଇଗଲା ବିରାଟ ଭୂମିକମ୍ପ । ବହୁ ଧନଜୀବନ କ୍ଷତି ହେଲା । ଜୟପ୍ରକାଶ ଚାଲି ଆସିଲେ ବିହାର ଭୂମିକମ୍ପ ପ୍ରପୀଡ଼ିତ ଲୋକଙ୍କ ସେବା କରିବା ପାଇଁ । ସେହି ଭୂମିକମ୍ପରେ ୧୮,୫୫୭ ଜଣ ଲୋକ ପ୍ରାଣ ହରାଇଲେ । ୧୦ ଲକ୍ଷ ୧୨ ହଜାର ଘରଦ୍ୱାର ଧ୍ୱଂସ ହୋଇଗଲା । ୬୬ ହଜାର କୂଅ ପୋଖରୀ ଶୁଖିଗଲା । ୮ ଲକ୍ଷ ୧୦ ହଜାର ବିଘା ଜମି ବାଲିଚର ହୋଇଗଲା । ସମ୍ପତ୍ତି କ୍ଷୟକ୍ଷତିର କୌଣସି ଠିକ୍ ହିସାବ ମିଳିଲା ନାହିଁ । ଦେଶ ବିଦେଶରୁ ପ୍ରଚୁର ପରିମାଣରେ ସାହାଯ୍ୟ ଆସି ପହଞ୍ଚିଲା । ରାଜେନ୍ଦ୍ର ପ୍ରସାଦ ଓ ଜମୁନାଲାଲ ବଜାଜଙ୍କ ତତ୍ତ୍ୱାବଧାନରେ ଦେଶର ବିଭିନ୍ନ ସ୍ଥାନରୁ ସ୍ୱେଚ୍ଛାସେବୀମାନେ ଆସି ପହଞ୍ଚିଲେ । ସହାୟତା କେନ୍ଦ୍ରର ମୁଖ୍ୟ ଦାୟିତ୍ୱରେ ରହିଲେ ଜୟପ୍ରକାଶ ନାରାୟଣ । ଏହି ଦୈବୀ ଦୁର୍ବିପାକରେ ତରୁଣମାନଙ୍କ ସହ ମିଳାମିଶା କରିବା ପାଇଁ ଜୟପ୍ରକାଶଙ୍କୁ ସୁଯୋଗ ମିଳିଗଲା । ସେ ଠିକ୍ କଲେ ବିହାର ହେବ ତାଙ୍କର ମୁଖ୍ୟ କର୍ମସ୍ଥଳୀ ।

୧୯୩୪ ମସିହା ମଇ ମାସ ୧୭ ତାରିଖ ଦିନ ପାଟଣାଠାରେ ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ଅଧ୍ୟକ୍ଷତାରେ ଏକ ବିରାଟ ସମାଜବାଦୀ ସମ୍ମିଳନୀ ଅନୁଷ୍ଠିତ ହେଲା । ଏହି ସମ୍ମିଳନୀରେ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ଭିତ୍ତିପ୍ରସ୍ତର ପଡ଼ିଲା । ସାରା ଦେଶର ବହୁ ସମାଜବାଦୀ ଚିନ୍ତାଧାରାର ନେତା ସେଥିରେ ଯୋଗଦାନ କଲେ । ଜୟପ୍ରକାଶ ହେଲେ ସେହି ଦଳର ମହାସଚିବ । ଡକ୍ଟର ରାମ ମନୋହର ଲୋହିଆ, ଅଚ୍ୟୁତ ପଟ୍ଟବର୍ଦ୍ଧନ, ସମ୍ପୂର୍ଣ୍ଣାନନ୍ଦ, ୟୁସୁଫ ମେହେର ଅଲୀ, ଅଶୋକ ମେହେଟା, ମିନୁମସାନୀ, କମଳା ଦେବୀ ଚଟ୍ଟୋପାଧ୍ୟାୟ, ଅରୁଣା ଆସଫ୍ ଅଲୀ, ପୂର୍ଣ୍ଣିମା ବାନାର୍ଜୀ, ନବକୃଷ୍ଣ ଚୌଧୁରୀ, ଫରୀଦୁଲହକ ଅଂସାରୀ, ଏସ୍.ଏମ୍. ଯୋଶୀ, ଏନ୍.ଜି. ଗୋରେ, ଏମ୍.ଏଲ୍. ଦାନ୍ତୱାଲ, ପୁରୁଷୋତ୍ତମ ତ୍ରିବିକ୍ରମ ଦାସ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ଶିବନାଥ ବାନାର୍ଜୀ, ଗଙ୍ଗାଶରଣ ସିଂହ, ରାମକୃଷ୍ଣ ବେଣୀପୁରୀ, ରାମନନ୍ଦନ ମିଶ୍ର, ଦାମୋଦର ସ୍ୱରୂପ ସେଠ, ମୁନ୍‌ସୀ ଅହମଦ୍ ଆଦି ବହୁ ବଳିଷ୍ଠ ତଥା ବରିଷ୍ଠ ନେତା ଜୟପ୍ରକାଶଙ୍କ ସହ ହାତ ମିଳାଇଲେ । ସାରା ଦେଶରେ ସମାଜବାଦୀ ଚେତନା ଖେଳିଗଲା ।

୧୯୩୭ ମସିହାରେ ଭାରତରେ ନୂଆ ନିୟମ ଅନୁସାରେ ନିର୍ବାଚନ ଅନୁଷ୍ଠିତ ହେଲା । କଂଗ୍ରେସ ସେହି ନିର୍ବାଚନରେ ବିଜୟୀ ହୋଇ ସରକାର ଗଠନ କଲା । ହେଲେ ତାହାକୁ ଜୟପ୍ରକାଶ ପସନ୍ଦ କଲେ ନାହିଁ । ସେ କହିଲେ, 'ଏବେବି ସ୍ୱାଧୀନତା ସଂଗ୍ରାମୀମାନେ ଜେଲରେ ବହୁ ସଂଖ୍ୟାରେ ଅଛନ୍ତି । ତେଣୁ କଂଗ୍ରେସ ସରକାର ଇସ୍ତଫା ଦେଇ ଦେବା ଉଚିତ ।' ତାଙ୍କର ଆହୁରି ଅନେକ ସହଯୋଗୀ ଜୟପ୍ରକାଶଙ୍କ କଥାରେ ଏକମତ ହେଲେ । ସମାଜବାଦ କ'ଣ ଓ କାହିଁକି ଏ ସମ୍ପର୍କରେ ଜୟପ୍ରକାଶ ଏକ ପୁସ୍ତକ ରଚନା କଲେ । ସେ ବହିରେ ଉଲ୍ଲେଖ କଲେ- 'ଉତ୍ପାଦନ, ବିତରଣ ଓ ବିନିମୟ ଏସବୁକୁ ଧୀରେ ଧୀରେ ଜାତୀୟକରଣ କରାଯିବା ଉଚିତ ।' ୧୯୩୯ ମସିହା ୧ ସେପ୍ଟେମ୍ବରରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ବନ୍ଦ ହୋଇଗଲା । ଜୟପ୍ରକାଶ ସେହି ଯୁଦ୍ଧକୁ 'ସାମ୍ରାଜ୍ୟବାଦୀ' କହି ସେ ସମ୍ପର୍କରେ ବିଭିନ୍ନ ସ୍ଥାନରେ ବିରାଟ ବିରାଟ ସଭାମାନଙ୍କରେ ମତବ୍ୟକ୍ତ କଲେ । ଜାମ୍‌ସେଦପୁର ଓ ଚାଇଁବସାଠାରେ ସେ ସମ୍ପର୍କରେ ଭାଷଣ ଦେଇ ବ୍ରିଟିଶ ସରକାର ହାତରେ ବନ୍ଦୀ ହେଲେ । ମାଜିଷ୍ଟ୍ରେଟ ତାଙ୍କୁ ନ' ମାସ ଜେଲ ଦଣ୍ଡରେ ଦଣ୍ଡିତ କଲେ ।

**ଭାରତଛାଡ଼ ଆନ୍ଦୋଳନରେ ଜୟପ୍ରକାଶ**

ଭାରତଛାଡ଼ ଆନ୍ଦୋଳନ ସାରା ଦେଶରେ ଖୁବ୍ ଜୋରରେ ଚାଲିଲା । ୧୯୪୨ ମସିହାରେ ଗାନ୍ଧୀ ଓ ବଡ଼ ବଡ଼ ନେତାମାନେ ରହିଲେ ଜେଲରେ । ଗାନ୍ଧୀ କହିଲେ- 'ନେତାମାନେ ସବୁ ଜେଲ୍‌ରେ। ଏଣୁ ପ୍ରତ୍ୟେକ ଲୋକ ନିଜକୁ ଜଣେ ଜଣେ ନେତା ଭାବରେ ଗ୍ରହଣ କରି ନେଇ ଯାହା ଉଚିତ ବୋଲି ମନେ କରୁଛନ୍ତି ସେଇଆ କରନ୍ତୁ । କିନ୍ତୁ ହିଂସା କରନ୍ତୁ ନାହିଁ ।' ଏହି ଆନ୍ଦୋଳନକୁ ଭଣ୍ଡୁର କରିବାକୁ ବ୍ରିଟିଶ ସରକାର ଦମନ ଲୀଳା ଚଳାଇଲେ । ଅର୍ଡ଼ିନାନ୍ସ ଜାରି କଲେ । ଜୟପ୍ରକାଶ ନାରାୟଣ ସେହି ସମୟରେ ଥାଆନ୍ତି ହଜାରିବାଗ ଜେଲରେ । ସେ ହଠାତ୍ ଦିନେ ଜେଲ ପାଚେରୀ ଡେଇଁ ବାହାରକୁ ଚାଲି ଆସିଲେ । ଲୋକମାନଙ୍କୁ ସଂଗଠିତ କଲେ । ବହୁ ସଂଖ୍ୟାରେ ସ୍ୱାଧୀନତା ସେନାନୀ ଆଗକୁ ଆସିବା ପାଇଁ ସେ ଆହ୍ୱାନ ଦେଲେ - 'ଆମର ଦେଶରେ ରହିଛି ୨୫୦ଟି ଜିଲ୍ଲା । ପ୍ରତ୍ୟେକ ଜିଲ୍ଲାରେ ରହିଛି କୋଡ଼ିଏଟି କରି ଥାନା । ପ୍ରତ୍ୟେକ ଥାନାରୁ ପାଞ୍ଚଜଣ ଲେଖାଏଁ ଯୁବକ ବାହାରି ଆସିବା ଉଚିତ । ପ୍ରତ୍ୟେକ ଯୁବକ ପାଖରେ ଗୋଟିଏ ହାତୁଡ଼ି, ଗୋଟିଏ ଛେଣି, ଗୋଟିଏ ଆରୀ, ଗୋଟିଏ ଟେକା, କିଛି ତାର ଏବଂ ରସି, ଗୋଟିଏ କୋଦାଳ, ଗୋଟିଏ ଠେଙ୍ଗା ରହିଲେ ସାମ୍ରାଜ୍ୟବାଦୀ ଇଂରେଜ ସରକାରର ଭିତ୍ତି ଦୋହଲିଯିବ । ରିଭରବଲ, ପିସ୍ତଲ ଓ ବୋମା ଅପେକ୍ଷା ଏହି ଛୋଟ ମୋଟ ଅସ୍ତ୍ର ବଡ଼ିଆ କାମରେ ଆସିବ ।'

ଜୟପ୍ରକାଶ ନାରାୟଣ ହଜାରୀବାଗ ଜେଲରୁ ଚମ୍ପଟ ମାରି ଖସି ଆସି ଛଦ୍ମ ବେଶରେ ରହି ସଂଗ୍ରାମୀ ଦଳ ସହ ବରାବର ସମ୍ପର୍କ ସ୍ଥାପନ କରିବାରେ ଲାଗିଲେ । କେତେବେଳେ ପୁରା ସାହେବ ତ କେତେବେଳେ ସେଠ୍, ଜମିଦାର ଆଉ କେତେବେଳେ କୃଷକ ଭାବରେ ସେ ନିଜକୁ ସଜାଇ ସଂଗଠନ କାର୍ଯ୍ୟରେ ଲାଗି ପଡ଼ିଲେ । ପୁଲିସ୍ ଆଖିରେ ଧୂଳି ଦେଇ ଆନ୍ଦୋଳନକୁ ସକ୍ରିୟ କରିବାରେ ଲାଗିଲେ । ଦେଶର କେତେକ ସ୍ଥାନ ବ୍ୟତୀତ ସେ ନେପାଳରେ ନିଜ ସଂଗଠନର କେନ୍ଦ୍ର ମଧ୍ୟ ସ୍ଥାପନ କଲେ । ସେ ଲାହୋର ଚାଲି ଯାଉଥିବା ସମୟରେ ମୋଗଲପୁରା ଷ୍ଟେସନଠାରେ ୧୯୪୩ ମସିହା ସେପ୍ଟେମ୍ବର ୧୮ ତାରିଖ ଦିନ ପୋଲିସ ହାତରେ ଧରାପଡ଼ିଲେ । ତାଙ୍କ ହାତଗୋଡ଼ ବାନ୍ଧି ଦେଇ ପୋଲିସ ତାଙ୍କୁ ଲାହୋର ଜେଲରେ ଭର୍ତ୍ତି କରି ଦେଲା । କିଛି ଦିନ ପରେ ଡଃ ରାମମନୋହର ଲୋହିଆଙ୍କୁ ମଧ୍ୟ ତାଙ୍କ ସହ ଜେଲରେ ରଖି ଦିଆଗଲା । ଧୀରେ ଧୀରେ ଦେଶର ପରିସ୍ଥିତି ବଦଳିଗଲା । ୧୯୪୬ ମସିହା ଏପ୍ରିଲ ୧୧ ତାରିଖରେ ଜୟପ୍ରକାଶ ଓ ଲୋହିଆ ଜେଲରୁ ଖଲାସ ହେଲେ । ଚାରିଆଡ଼େ ଆନନ୍ଦର ଲହରୀ ଖେଳିଗଲା । ତାପରେ ଦେଶ ସ୍ୱାଧୀନ ହେଲା । ସମୁଦାୟ ଆଠବର୍ଷ କାଳ ଜୟପ୍ରକାଶ ଜେଲରେ କଟାଇଥିଲେ ।

ଦେଶ ସ୍ୱାଧୀନ ହେବା ପୂର୍ବର କଥା । ୧୯୪୭ ମସିହା ଫେବୃଆରୀ ଶେଷ ସପ୍ତାହରେ ଡକ୍ଟର ରାମମନୋହର ଲୋହିଆଙ୍କ ଅଧ୍ୟକ୍ଷତାରେ କାନପୁରଠାରେ ସମାଜବାଦୀ ସମ୍ମିଳନୀ ଅନୁଷ୍ଠିତ ହେଲା । କଂଗ୍ରେସ ସମାଜବାଦୀ ଦଳର ବହୁ ସଦସ୍ୟ ଏହି ସମ୍ମିଳନୀରେ ଯୋଗ ଦେଲେ । ସେମାନେ 'କଂଗ୍ରେସ ସମାଜବାଦୀ ଦଳ' ନାମରୁ 'କଂଗ୍ରେସ'କୁ ଉଠେଇ ଦେଇ ସମାଜବାଦୀ ଦଳ ନାମରେ ଏକ ରାଜନୈତିକ ଦଳ ଗଠନ କଲେ । ଏଥିରେ ଜୟପ୍ରକାଶଜୀ ମୁଖ୍ୟ ଭୂମିକାରେ ଅବତୀର୍ଣ୍ଣ ହେଲେ । କଂଗ୍ରେସ ଦଳ ଛାଡ଼ିବା ପୂର୍ବରୁ ଜୟପ୍ରକାଶଜୀ ବାପୁଙ୍କ ଅନୁମତି ନେଇଥିଲେ । ସ୍ୱାଧୀନତା ପରେ କଂଗ୍ରେସ ଦଳ ନୂତନ ସରକାର (ମଧ୍ୟବର୍ତ୍ତୀକାଳୀନ) ଗଠନ କଲେ । ହେଲେ ଜୟପ୍ରକାଶ ରହିଗଲେ ସମାଜବାଦୀ ଦଳରେ ।

୧୯୫୨ ମସିହାରେ ଦେଶରେ ପ୍ରଥମ ସାଧାରଣ ନିର୍ବାଚନ ହେଲା । ସମାଜବାଦୀ ପାର୍ଟିର ଶୋଚନୀୟ ପରାଜୟ ଘଟିଲା । **ଗୋଟିଏ ପଟେ ନିର୍ବାଚନରେ ପରାଜୟ, ଅନ୍ୟପଟେ ସାଥୀ ସହକର୍ମୀମାନଙ୍କ ଗାଳି, ତିରସ୍କାର ଓ ଉପେକ୍ଷା । ଜୟପ୍ରକାଶ କାନ୍ଦି ପକାଇଲେ । ଦେଶର କଲ୍ୟାଣ କିପରି ହେବ ? ତାଙ୍କୁ ଚାରିଆଡ଼ ଅନ୍ଧାର ଦେଖାଗଲା । ଜୟପ୍ରକାଶ କୃଷକ ଓ ଶ୍ରମିକମାନଙ୍କର ସଂଗଠନ ଆରମ୍ଭ କଲେ ।** ରେଳୱେ, ଡାକ-ତାର, ଆଦି ବଡ଼ ବଡ଼ ଅଖିଳ ଭାରତୀୟ ଶ୍ରମିକ ସଂଗଠନଗୁଡ଼ିକର ସେ ଅଧ୍ୟକ୍ଷ ହେଲେ । ଏହାପରେ ଜୟପ୍ରକାଶଜୀ ବିନୋବାଙ୍କ ଭୂଦାନ ଆନ୍ଦୋଳନରେ ଯୋଗଦାନ କଲେ । ରାଜନୀତିରେ ରହିବା ପାଇଁ ତାଙ୍କର ଆଉ ଇଚ୍ଛା ହେଲା ନାହିଁ । ସେ ନୀରବତାର ସହ ଦେଶର ନାଗରିକମାନଙ୍କ ପାଇଁ କାର୍ଯ୍ୟରତ ହେଲେ ।

ହଠାତ୍ ୧୯୭୪ ମସିହାରେ ଭାରତୀୟ ରାଜନୀତି ଦୃଶ୍ୟ ପଟ୍ଟରେ ତାଙ୍କର ଆବିର୍ଭାବ ଘଟିଲା ରାଜନୀତିରେ ସଂସ୍କାର ଆଣିବାକୁ । ଅନ୍ୟ ବିରୋଧୀ ଦଳ ନେତାଙ୍କ ସହ ଜୟପ୍ରକାଶ ଜେଲରେ ରହିଲେ । ପାଞ୍ଚ ମାସ ପରେ ଜୟପ୍ରକାଶ ମୁକ୍ତି ଲାଭ କଲେ ଜନସଂଘ, ସମାଜବାଦୀ ଦଳ, ସଂଗଠନ କଂଗ୍ରେସ ଓ ଭାରତୀୟ ଲୋକଦଳ ଆଦି ଜୟପ୍ରକାଶଙ୍କ ଡାକରାରେ ଏକାଠି ହେଲେ । ଜୟପ୍ରକାଶ ଅଣ କଂଗ୍ରେସ ଓ କମ୍ୟୁନିଷ୍ଟଙ୍କୁ ନେଇ 'ଜନତା ପାର୍ଟି' ନାମରେ ଏକ ରାଜନୈତିକ ଦଳ ଗଠନ କଲେ । ୧୯୭୭ ସାଧାରଣ ନିର୍ବାଚନରେ ଜନତା ପାର୍ଟି ଲୋକସଭାରେ ପୂର୍ଣ୍ଣ ସଂଖ୍ୟା ଗରିଷ୍ଠତା ଲାଭ କରି କେନ୍ଦ୍ରରେ ପ୍ରଥମ ଥର ପାଇଁ ଅଣକଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନ କଲେ । ମୋରାରଜୀ ଭାଇ ଦେଶାଇ ହେଲେ ଭାରତର ପ୍ରଧାନମନ୍ତ୍ରୀ । ଜେ.ବି. କୃପାଳିନୀଙ୍କ ସହାୟତାରେ ଜୟପ୍ରକାଶଜୀ ମୋରାଜୀ ଦେଶାଇଙ୍କୁ ପ୍ରଧାନମନ୍ତ୍ରୀ ପଦପାଇଁ ମନୋନୀତ କରିଥିଲେ । କିନ୍ତୁ କିଛି ମାସ ପରେ ଦେଖାଗଲା ଯେ, ପ୍ରଧାନମନ୍ତ୍ରୀ ମୋରାରଜୀ ଦେଶାଇ ଜୟପ୍ରକାଶଙ୍କ ପରାମର୍ଶ ଗ୍ରହଣ କରୁନାହାନ୍ତି । ଆଶାବାଦୀ ଜୟପ୍ରକାଶ ଭଗ୍ନ ହୃଦୟରେ ୧୯୭୯ ମସିହା ଅକ୍ଟୋବର ଆଠ ତାରିଖ ଦିନ ସଂସାରରୁ ଚିରଦିନ ପାଇଁ ବିଦାୟ ନେଲେ । ହେଲେ ସେ ମରି ଆଜି ଅମର । କୌଣସି ପଦପଦବୀ ଆଶା ନରଖିଥିବା ଭାରତୀୟ ନେତାମାନଙ୍କ ମଧ୍ୟରେ ସେ ଥିଲେ ସର୍ବଶ୍ରେଷ୍ଠ । ସେ ଚିରଦିନ ଲୋକମାନଙ୍କର ହୋଇ ରହିଲେ ଏବଂ 'ଲୋକନାୟକ' ଭାବରେ ପୂଜା ପାଇଲେ ।

ସାଇ ଦିଗ୍‌ବଳୟ
ଇ-୬୫, ୟୁନିଟ୍-୮
ଭୁବନେଶ୍ୱର-୭୫୧୦୧୨

# ପଶ୍ଚିମ ଓଡ଼ିଶାରେ ଦେବଗଡ଼ର ବୈଶିଷ୍ଟ୍ୟ

ବରଦା ପ୍ରସନ୍ନ ଦାସ

ଏକଦା ପ୍ରକୃତିର ଲୀଳାକ୍ଷେତ୍ର ପ୍ରପାତମାଳିନୀ ବାମଣ୍ଡାର ରାଜଧାନୀ ଦେବଗଡ଼ରେ ସ୍ୱାଭିମାନର ଶିରମଣ୍ଡନ କରିଥିଲା ପ୍ରଧାନପାଟ । ପ୍ରାତଃସ୍ମରଣୀୟ ବାମଣ୍ଡାର ମହାରାଜା ସ୍ୱର୍ଗତଃ ସଚ୍ଚିଦାନନ୍ଦ ତ୍ରିଭୁବନାନନ୍ଦ ଦେବ ଭଗୀରଥ ହୋଇ ଗୁପ୍ତଗଙ୍ଗା ସ୍ୱରୂପିଣୀ ପ୍ରପାତରୁ ମାତୃସ୍ତନ୍ୟର କ୍ଷୀର ସ୍ୱରୂପ ପାନୀୟ ଜଳ ପାଇପ ଯୋଗେ ଆଣି ସହରବାସୀଙ୍କୁ ଯୋଗାଇ ଥିଲେ । ଏହାର ଏକ ଶାଖା କୋରଡ଼କୋଟ ଜଳପ୍ରପାତରୁ ଜଳ ବିଦ୍ୟୁତ୍ ଉତ୍ପନ୍ନ କରାଯାଇ ସହରକୁ ଆଲୋକିତ କରାଯାଇଥିଲା । ଏହା ଓଡ଼ିଶାର ପ୍ରଥମ ଜଳବିଦ୍ୟୁତ୍ ଯୋଜନା ।


ପ୍ରଧାନପାଟଠାରେ ରାଜ୍ୟପାଳ
ଶ୍ରୀ ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେ

କଳା, ସାହିତ୍ୟ ଓ ସଂସ୍କୃତି ସମୃଦ୍ଧ ବାମଣ୍ଡାର ଇତିହାସ ପ୍ରଣିଧାନଯୋଗ୍ୟ ଏବଂ ଏହାର ଅତୀତ ଗୌରବଗାଥା ଅବର୍ଣ୍ଣନୀୟ । ଏହାର ରାଜଧାନୀ ଥିଲା ଦେବଗଡ଼, ଦେବୋପମ ସହର ଉତ୍କଳର ଉଜ୍ଜୟିନୀ ନାମରେ ଖ୍ୟାତିଲାଭ କରିଛି । ବିକ୍ରମାଦିତ୍ୟଙ୍କ ପରି ସାର୍ ବାସୁଦେବ ସୁଢ଼ଳ ଦେବ ଓଡ଼ିଶାର କଳା, ସାହିତ୍ୟ, ବିଜ୍ଞାନ ଜଗତରେ ଚିରସ୍ମରଣୀୟ ହୋଇ ରହିଗଲେ ।

ସ୍ୱନାମଧନ୍ୟ ଦେବଗଡ଼ । 'ଗଡ଼' ସୁରକ୍ଷାର ବଳୟ, 'ଦୁର୍ଗ' ଶବ୍ଦର ପର୍ଯ୍ୟାୟବାଚୀ, ଯାହା ଶତ୍ରୁମାନଙ୍କ ପାଇଁ ଦୁର୍ଗମ ରାଜାମାନଙ୍କର ଶାସନ ଓ ପ୍ରଜାମାନଙ୍କର ଜୀବନ ନିର୍ବାହ ନିମିତ୍ତ ନିରାପଦ ସ୍ଥାନ । 'ଦେବଗଡ଼' ସଂଜ୍ଞା-ଉପନାମ ବିଶିଷ୍ଟ ବାମଣ୍ଡା ଗଙ୍ଗବଂଶୀୟ ରାଜାମାନଙ୍କର ଗଡ଼, ଦେବତାମାନଙ୍କର ଗଡ଼ - ଯେଉଁଠି ବାମଣ୍ଡାର ଗଙ୍ଗବଂଶୀୟ ରାଜାମାନେ ଦେବଶକ୍ତିଦ୍ୱାରା ସର୍ବତୋଭାବେ ସୁରକ୍ଷିତ ମନେ କରି ଆସିଛନ୍ତି ।

ଭୌଗୋଳିକ ଦୃଷ୍ଟିକୋଣରୁ ଦେବଗଡ଼ ପର୍ବତ ପରିବେଷ୍ଟିତ ସୁରମ୍ୟ-ସୁରକ୍ଷିତ-ବାସୋପଯୋଗୀ ସ୍ଥାନ । ବେଦ, ପୁରାଣ, ପରମ୍ପରା ଓ ଲୋକ ବିଶ୍ୱାସରେ ଏହା ନଦୀ, ଝରଣା, ପ୍ରଭୃତିର ଉତ୍ସ, ସଙ୍ଗମସ୍ଥଳୀ ଓ ଏହାର ତଟଦେଶ ଦେବସ୍ଥାନ ଅଟେ । ପ୍ରୟାଗ, ବିଷ୍ଣୁ ପ୍ରୟାଗ, ରୁଦ୍ର ପ୍ରୟାଗ, ନନ୍ଦ ପ୍ରୟାଗ, ଗଙ୍ଗୋତ୍ରୀ, ଯମୁନୋତ୍ରୀ, ବଦ୍ରିନାଥ, କେଦାରନାଥ, ଜଗନ୍ନାଥ, ଦ୍ୱାରିକାନାଥ, ନୃସିଂହନାଥ, ହରିଶଙ୍କର, ଚନ୍ଦ୍ରଭାଗା, ବେଦବ୍ୟାସ, କପିଳାସ ସବୁରି ପୀଠସ୍ଥଳ ନିକଟରେ ଜଳଧାରର ସ୍ଥିତି । ସମସ୍ତ ତୀର୍ଥଜଳ ସମୁଦ୍ରରେ ମିଶୁଛି, ତେଣୁ ସମୁଦ୍ର ତୀର୍ଥରାଜ । ସେଥିପାଇଁ ଭାରତୀୟ ସଭ୍ୟତା ଓ ସଂସ୍କୃତି ମୁଖ୍ୟତଃ ନଦୀ ଝରଣାର ତଟଦେଶ ଓ ସମୁଦ୍ର ବେଳାଭୂମିରେ ଗଢ଼ି ଉଠିଛି । ପ୍ରଧାନପାଟ ଜଳପ୍ରପାତ, କୋରଡ଼କୋଟ ଝରଣା, ବାଳିଆପିଟା ନାଳ ଏକ ସାତ୍ତ୍ୱିକ ବାସୋପଯୋଗୀ ପରିବେଶ ସୃଷ୍ଟି କରିବାରେ ସକ୍ଷମ । ଏହାର ବନଭୂମି ଆଦିବାସୀମାନଙ୍କର ଜୀବନ ନିର୍ବାହ ପାଇଁ ଯେପରି ଉପାଦେୟ, ପର୍ବତ ପରିବେଷ୍ଟିତ, ସବୁଜସାର-ପରିପୂର୍ଣ୍ଣ ସମତଳ ଅଞ୍ଚଳ କୃଷି ନିର୍ଭରଶୀଳ ଦେବଗଡ଼ ତଥା ସହରତଳି ବାସିନ୍ଦାଙ୍କର ସେହିପରି ପ୍ରାଣଧାର । ଭାରତୀୟ ଜୀବନଧାରର ଭିତ୍ତିଭୂମି ହେଉଛି ଆଧ୍ୟାତ୍ମିକତା । ଓଡ଼ିଶା ତଥା ଏହାର ଅନ୍ତର୍ଗତ ଦେବଗଡ଼ (ବାମଣ୍ଡା) ଏହି ଧାରାରୁ ସ୍ୱତନ୍ତ୍ର ନୁହେଁ । ଚତୁର ସମାଜପତି ଓ ରାଜନେତାମାନେ ଶାସନର ସୁଗମତା ପାଇଁ ପ୍ରଜାମଣ୍ଡଳର ମନକୁ ଅଧ୍ୟୟନ କରନ୍ତି ଓ ସେହି ଅନୁସାରେ ସେମାନଙ୍କ ଆଧ୍ୟାତ୍ମିକ ଭାବାବେଗ ନିୟନ୍ତ୍ରଣ କରନ୍ତି । ସେଥିପାଇଁ ଚୋଡ଼ଗଙ୍ଗ ଦେବ ଓଡ଼ିଶା ଜୟ କଲାପରେ ବଡ଼ଦେଉଳ ନିର୍ମାଣ କଲେ ଏବଂ ଦେବମୂର୍ତ୍ତିମାନଙ୍କୁ ଏପରି ପ୍ରତିଷ୍ଠା କଲେ ଯେ ସୌର, ଶାକ୍ତ, ଶୈବ, ବୈଷ୍ଣବ ଗାଣପତ୍ୟ, ବୌଦ୍ଧ ବେଦାନ୍ତର ସମସ୍ତଙ୍କ ମନରେ ତାଙ୍କପ୍ରତି ଶ୍ରଦ୍ଧା ଓ ଭକ୍ତି ଉତ୍ପନ୍ନ ହେଲା । ଚୋଡ଼ଗଙ୍ଗ ଦେବଙ୍କର ଏହି ଉଦାର ଆଧ୍ୟାତ୍ମିକ ଚିନ୍ତାଧାରା ବାମଣ୍ଡାର ଅନେକ ରାଜାଙ୍କଠାରେ ଦୃଷ୍ଟିଗୋଚର ହୁଏ । ଶ୍ରୀକ୍ଷେତ୍ର ସହ ବାମଣ୍ଡାର ସଂପର୍କ ନିବିଡ଼ । ସଂପର୍କର ନିବିଡ଼ତା ଏବଂ ବାମଣ୍ଡା ରାଜବଂଶର ମହାନତା ଯୋଗୁଁ ୧୯୨୬ ଖ୍ରୀ:ଅ:ରେ ମୁକୁନ୍ଦ ଦେବ (ତୃତୀୟ)ଙ୍କ ମୃତ୍ୟୁ ପରେ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କ ତୃତୀୟପୁତ୍ର ମୋହିନୀ ମୋହନ ଦେବ ପୋଷ୍ୟପୁତ୍ର ରୂପେ ଗଜପତି ରାମଚନ୍ଦ୍ର ଦେବଙ୍କର ମର୍ଯ୍ୟାଦା ଲାଭ କରି ଦୀର୍ଘ ୩୦ ବର୍ଷ (୧୯୨୬ରୁ ୧୯୫୬ ଖ୍ରୀ:) ସିଂହାସନ ଅଧିକାର କରିପାରିଥିଲେ ।

ଶ୍ରୀକ୍ଷେତ୍ର ଶଙ୍ଖକ୍ଷେତ୍ର । ବାମଣ୍ଡାର ଚିହ୍ନ ଶଙ୍ଖ । ଶଙ୍ଖ ସଂକଳ୍ପ ଓ ପବିତ୍ରତାର ପ୍ରତୀକ । ଶ୍ରୀକ୍ଷେତ୍ର କଳ୍ପବଟ, ବାମଣ୍ଡାରେ ଓଲଟ ବଟ । ରାଜା ସଚ୍ଚିଦାନନ୍ଦ ୧୯୧୫ ଖ୍ରୀ:ରେ ପ୍ରଧାନପାଟ ନିକଟରେ ବସନ୍ତ ବିଳାସ ଓ ଲଳିତବସନ୍ତ ନାମକ ଦୁଇଟି ଶୈଳ ନିବାସ ସ୍ଥାପନ କରିଥିଲେ ।

ପ୍ରଧାନ ଜଳପ୍ରପାତ 'ପ୍ରଧାନପାଟ' ନାମ ଧାରଣ କରି ଦେବଗଡ଼ବାସୀଙ୍କର ତ୍ରାଣକର୍ତ୍ତା ସଦୃଶ୍ୟ ପ୍ରତ୍ୟହ ନିରନ୍ତର ମଧୁର ଜଳଦାନ କରୁଥିବାରୁ ଏଠାକାର ଅଧିଷ୍ଠାତ୍ରୀ ଦେବୀ 'ପ୍ରଧାନ ପାଟେଶ୍ୱରୀ' ନାମରେ ନାମିତ ଏବଂ ପୂଜିତ ହୋଇଆସୁଛନ୍ତି । ଜନଶ୍ରୁତି ଅନୁସାରେ ପ୍ରଧାନପାଟ ଉପରିସ୍ଥ ସପ୍ତକୁଣ୍ଡ ମଧ୍ୟରୁ ସନ୍ନିକଟ 'ପଞ୍ଚକୁଣ୍ଡ' ଉପରେ ଆବିର୍ଭୂତ ଏବଂ ପୂଜିତ । ଦେବୀ କାଳକ୍ରମେ ସୁବିଧା ଦୃଷ୍ଟିରୁ ନିମ୍ନ ଭାଗରେ ପୂଜିତ ହୋଇ ଆସୁଅଛନ୍ତି । ଜଳପ୍ରପାତର ଜଳଧାରା ପର୍ବତ ଉପରେ ପ୍ରାୟ ୫ କି.ମି. ଦୂରରେ ଥିବା ଏକ ଗହ୍ୱରରୁ ସ୍ୱତଃ ନିର୍ଗତ ହୋଇ କବାଟ ଦ୍ୱାର ଏବଂ କୋରଡ଼କୋଟ ରାସ୍ତା ଦେଇ ବର୍ଷସାରା ଶୀତଳଜଳ ପ୍ରଦାନ କରିଥାଏ ।

ଦେବାଦେବୀମାନଙ୍କର ମହତ୍ୱ ସଂପର୍କରେ ଆଲୋଚନା କଲେ ଜଣାଯାଏ ଯେ- ଦେବଗଡ଼ର ଆରାଧ୍ୟ ଦେବୀ 'ପଞ୍ଚଖଣ୍ଡା' ନାମ ଧାରିଣୀ ଦୁର୍ଗା ଅଟନ୍ତି । ପାଞ୍ଚ କି.ମି. ଦୂରରୁ ଆସୁଥିବା ଜଳସ୍ରୋତ ପଞ୍ଚକୁଣ୍ଡ ମଧ୍ୟ ଦେଇ ନିପତିତ ଏବଂ ପଞ୍ଚଖଣ୍ଡା ଦେବୀଙ୍କ ସହିତ ପଞ୍ଚଦେବୀଙ୍କର ମଧ୍ୟରେ ରାଜବାଟୀ ସ୍ଥିତ କନକଦୁର୍ଗା, ଶ୍ରୀଜଗନ୍ନାଥ ମନ୍ଦିର ଭିତରେ ସ୍ଥାପିତ 'କାଳିକା', ପ୍ରଧାନପାଟସ୍ଥିତ ପ୍ରଧାନ ପାଟେଶ୍ୱରୀ ଏବଂ ପୁରୁଣାଗଡ଼ସ୍ଥିତ ମହାକାଳ ଭୈରବୀ ପତ୍ରାସ୍ଥିତ ଭୈରବୀ ପ୍ରସିଦ୍ଧ ଅଟନ୍ତି ।

ଦେବଗଡ଼ ଅଞ୍ଚଳକୁ ବିଭିନ୍ନ ପାର୍ଶ୍ୱରେ ଜଗି ରହିଥିବା 'ପଞ୍ଚଦେବୀ' ହେଉଅଛନ୍ତି - ବାସୁଦେବପୁର ବ୍ରାହ୍ମଣ ଶାସନର ରମ୍ଭାଦେବୀ, ବାରକୋଟ ଗ୍ରାମର ଅଧିଷ୍ଠାତ୍ରୀ ଦେବୀ ରମ୍ଭାଦେବୀ, ବଡ଼ରମା ଘାଟର ପୂଜିତା ଦେବୀ 'ବନଦୁର୍ଗା', ରିଆମାଳ ଦଶଘରିଆ ଗ୍ରାମର ମାହେଶ୍ୱରୀ ଏବଂ ପୂର୍ବତନ ନଇକୂଳ ତଥା ବର୍ତ୍ତମାନ ବିଜୟନଗରଠାରେ ଅବସ୍ଥାପିତା ଦେବୀ 'ଶନିପାଟ' । ପଞ୍ଚଦେବଙ୍କ ମଧ୍ୟରେ ଝାଡ଼େଶ୍ୱରର ମହାଦେବ, ଚମ୍ପକେଶ୍ୱର ମହାଦେବ, ଗୋକର୍ଣ୍ଣେଶ୍ୱର ମହାଦେବ, ବସୁନ୍ଧେଶ୍ୱର ମହାଦେବ ଏବଂ କଟାଶରଘାଟ ମହାଦେବଙ୍କ ନାମ ଆପାତତଃ ଉଲ୍ଲେଖଯୋଗ୍ୟ ଅଟେ ।

ଦେବଗଡ଼ ବାହାରୁ ରାଜା ଶାସନ ସମୟରେ ଆସିଥିବା ପଞ୍ଚକବିଙ୍କର ଆବିର୍ଭାବ ମଧ ଆମ ସାହିତ୍ୟକୁ ଋଦ୍ଧିମନ୍ତ କରିଛି । ଦେବଗଡ଼ ସହରକୁ ରାଧାନାଥ ରାୟ, ଫକୀରମୋହନ ସେନାପତି, ଗଙ୍ଗାଧର ମେହେର, ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ଏବଂ ପଣ୍ଡିତ ଦାମୋଦର ମିଶ୍ର ପ୍ରଭୃତି କବି ଓ ଲେଖକଗଣ ଆସି ସାହିତ୍ୟର ବିକାଶ କରିଥିଲେ । ରାଜପରିବାର ମଧ୍ୟରେ ମଧ ସ୍ୱନାମଧନ୍ୟ ପଞ୍ଚକବିଙ୍କର ନାମ ପ୍ରଣିଧାନଯୋଗ୍ୟ । ସେମାନେ ହେଲେ ସ୍ୱର୍ଗତଃ ବାସୁଦେବ ସୁଢ଼ଳଦେବ, ରାଜକବି ସ୍ୱର୍ଗତଃ ସଚ୍ଚିଦାନନ୍ଦ, ସ୍ୱର୍ଗତଃ ବଳଭଦ୍ର ଦେବ, ସ୍ୱର୍ଗତଃ ଜଳନ୍ଧର ଦେବ ଏବଂ ଶ୍ରୀ କେଶରୀ ଗଙ୍ଗଦେବ । ରାଜା ଶାସନ ସମୟରେ ଦେବଗଡ଼ ପ୍ରେସ୍‌ରୁ ପ୍ରକାଶିତ ପଞ୍ଚପତ୍ରିକା ମଧ୍ୟରେ ଉତ୍କଳ ଦର୍ପଣ, ସମ୍ବଲପୁର ହିତୈଷିଣୀ, ଉତ୍କଳ ମଧୁପ, ଉପହାର ଏବଂ ଶଙ୍ଖ ଆଦୃତ ହୋଇଥିଲା । ଏ ସମସ୍ତ ପତ୍ରିକା ସମାଜ ସଂସ୍କାରକ ରୂପେ କାର୍ଯ୍ୟ କରୁଥିଲେ ।

ଦେବଭୂଇଁ ଦେବଗଡ଼ର ପ୍ରାକୃତିକ ପରିବେଷ୍ଟନୀ ମଧ୍ୟରେ ରମଣୀୟ ଜଳପ୍ରପାତ ପ୍ରଧାନପାଟକୁ ଓଡ଼ିଶାର ମହାମାନ୍ୟ ରାଜ୍ୟପାଳ ଶ୍ରୀ ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେ ଗତ ତା.୬.୦୮.୦୮ରିଖ ଦିନ ପରିଦର୍ଶନ କରି ବିମୋହିତ ହୋଇଥିଲେ । ଶୈଳ ନିବାସ ଅନ୍ତର୍ଗତ ଲଳିତ ବସନ୍ତଠାରେ ସ୍ୱଳ୍ପ ସମୟ ଅତିବାହିତ କରି ସେ ରାଜଭବନ ଫେରି ଯାଇଥିଲେ । ଆମର ଭାଷା, ସାହିତ୍ୟ ଓ ସଂସ୍କୃତିର ବିକାଶ କ୍ଷେତ୍ରରେ ଦେବଗଡ଼ର ବୈଶିଷ୍ଟ୍ୟ ଉଲ୍ଲେଖନୀୟ ।

ଜିଲ୍ଲା ସୂଚନା ଓ ଲୋକ ସଂପର୍କ ଅଧିକାରୀ
ଦେବଗଡ଼

---

# ମାତୃ ବନ୍ଦନା

କଳ୍ପନା ଶତପଥୀ

ଆସ ମା' କରୁଣାମୟୀ
ଶାରଦୀୟ ପୂଜା ପାଇବା ପାଇଁ
କଳି କଳ୍ମଷ ନାଶିବା ପାଇଁ ଜନନୀଗୋ ।
କରି ପୂଜା ଅରଚନା
ନେତ୍ରୁ ନୀର ଢାଳି କରେ ବନ୍ଦନା
ହେଉ ଶ୍ରୀପୟରେ ଅଳି ଘେନା ଜନନୀଗୋ ।
ଧୂପ ଦୀପ ନଇବେଦ୍ୟ
କରି ଘଣ୍ଟ ଘଣ୍ଟା ନାଦ
କରି ନିରାଜନା ବନ୍ଦେ ତୋ ପଦ ଜନନୀଗୋ ।
ଧରା ଦୁଃଖ ନାଶ ପାଇଁ
ଅବତରୀ ଆସ କରୁଣାମୟୀ
ଯୁଗେ ଯୁଗେ ପରା ତୁହି ଜନନୀଗୋ ।
ଦେବ ଦାନବେ ପୂଜିତା
ମହିଷା ଧ୍ୱଂସ ସାଧନେ ଜଗତଜିତା
ତେଣୁ ତିନି ଜଗତେ ବିଦିତା ଜନନୀଗୋ ।
କାମ୍ପିଲ୍ୟବାସିନୀ ଜୟ
ଦୁଃଖ ଶୋକନାଶି କର ଅଭୟ
ଏତିକି ସହାୟ ହୁଅ ଜନନୀଗୋ ।
ଧରି ତୁଣ୍ଡେ ତୋର ନାମ
କରିବି ମହାପ୍ରୟାଣ
ପାଦପଦ୍ମ ଧ୍ୟାୟୀ ଯାଉ ଦୀନ ଜନନୀଗୋ ।
ଯାଜନଗ୍ର ନିବାସିନୀ
ଯଜ୍ଞାନଳୁ ରୂପ ଘେନି
ପୂଜେ ଦଶାନନ ପାଦପଦ୍ମ ତୋର
ପଞ୍ଚାନନ ସାଥେ ଘେନି ଜନନୀଗୋ ।
ଦେଖି ରାମ ଯୁଦ୍ଧେ ବ୍ୟସ୍ତ
ଅକାଳ ବୋଧିନୀ ପୂଜା ଆରମ୍ଭିଲେ
ହେଲୁ ତହିଁରେ ସନ୍ତୁଷ୍ଟ ଜନନୀଗୋ ।

କପିଳ ପ୍ରସାଦ, ଭୁବନେଶ୍ୱର

# ଭିନ୍ନକ୍ଷମଙ୍କ ପାଇଁ କେତେକ କଲ୍ୟାଣ ଯୋଜନା

ଏମ୍.ଆଇ. ହବିବୁଲ୍ଲା

**ଭି**ନ୍ନକ୍ଷମଙ୍କ ସମସ୍ୟା ହୃଦୟଙ୍ଗମ କରି ସରକାର ଭିନ୍ନକ୍ଷମ କଲ୍ୟାଣକୁ ପଞ୍ଚବାର୍ଷିକ ଯୋଜନାରେ ସାମିଲ କରିଛନ୍ତି । ଯୋଜନା ପରେ ଯୋଜନାରେ ଏହି କ୍ଷେତ୍ର ପାଇଁ ବ୍ୟୟବରାଦ ବୃଦ୍ଧି ପାଇବାରେ ଲାଗିଛି । ଭାରତୀୟ ସମ୍ବିଧାନର ୪୧ ଓ ୪୬ ଧାରାରେ ଭିନ୍ନକ୍ଷମ ସମୁଦାୟଙ୍କ 'ସର୍ବାଙ୍ଗୀନ ଉନ୍ନତି' ଉପରେ ଗୁରୁତ୍ୱ ଦିଆଯାଇଛି । ଭିନ୍ନକ୍ଷମଙ୍କୁ ପାଞ୍ଚୋଟି ଶ୍ରେଣୀରେ ବିଭକ୍ତ କରାଯାଇଛି, ଯଥା- ଦୃଷ୍ଟିହୀନ, ଶାରୀରିକ ଅକ୍ଷମ, ବଧିର, ମାନସିକ ଅନଗ୍ରସର ଓ କୁଷ୍ଠରୋଗମୁକ୍ତ ।

ଆମ ଦେଶରେ ସବୁ ଶ୍ରେଣୀର ଭିନ୍ନକ୍ଷମଙ୍କ ମୋଟ ଜନସଂଖ୍ୟା ଯଥେଷ୍ଟ ଅଧିକ । ସେମାନେ ଯେକୌଣସି କାର୍ଯ୍ୟକୁ ଆହ୍ୱାନ ରୂପେ ଗ୍ରହଣ କରିଥାନ୍ତି ।

> ଭିନ୍ନକ୍ଷମଙ୍କୁ ପାଞ୍ଚୋଟି ଶ୍ରେଣୀରେ ବିଭକ୍ତ କରାଯାଇଛି, ଯଥା- ଦୃଷ୍ଟିହୀନ, ଶାରୀରିକ ଅକ୍ଷମ, ବଧିର, ମାନସିକ ଅନଗ୍ରସର ଓ କୁଷ୍ଠରୋଗମୁକ୍ତ ।

**ଭିନ୍ନକ୍ଷମଙ୍କ ସଶକ୍ତିକରଣ ପାଇଁ ଭାରତ ଭିନ୍ନକ୍ଷମଙ୍କ ଅଧିକାର ସଂକ୍ରାନ୍ତୀୟ ଜାତିସଂଘ ପ୍ରସ୍ତାବରେ ୨୦୦୭ ମାର୍ଚ୍ଚ ୩୦ ତାରିଖରେ ସ୍ୱାକ୍ଷର କରିଥିଲା । ଏହିଦିନ ହିଁ ଏହି କନ୍‌ଭେନସନ ସ୍ୱାକ୍ଷର ପାଇଁ ଖୋଲାଯାଇଥିଲା । ଭାରତ ମଧ୍ୟ ୨୦୦୭ ଅକ୍ଟୋବର ୧ ତାରିଖରେ ଏହାକୁ ଅନୁମୋଦନ କରିବାର ପ୍ରଥମ ଦେଶ ହୋଇଥିଲା ।** ଏହି କନ୍‌ଭେନସନ୍ ୨୦୦୮ ମେ ୩ ତାରିଖରୁ କାର୍ଯ୍ୟକାରୀ ହୋଇଛି ।

ପ୍ରସ୍ତାବର ଉଦ୍ଦେଶ୍ୟ ହେଉଛି 'ସମସ୍ତ ଭିନ୍ନକ୍ଷମ ବ୍ୟକ୍ତି ମାନବାଧିକାର ଓ ମୌଳିକ ସ୍ୱାଧୀନତାର ସଂପୂର୍ଣ୍ଣ ଓ ସମାନ ଉପଭୋଗକୁ ପ୍ରୋତ୍ସାହିତ, ସୁରକ୍ଷିତ ଓ ସୁନିଶ୍ଚିତ କରିବା ତଥା ସେମାନଙ୍କ ଅନ୍ତର୍ନିହିତ ପରାକାଷ୍ଠାକୁ ପ୍ରୋତ୍ସାହିତ କରିବା ।' ପ୍ରସ୍ତାବର ୩ୟ ଧାରାରେ ୮ଟି ମାର୍ଗଦର୍ଶକ ନୀତି ଓ ୪ର୍ଥ ଧାରାରେ ସାଧାରଣ କର୍ତ୍ତବ୍ୟ ଉଲ୍ଲିଖିତ ହୋଇଛି ।

ଭିନ୍ନକ୍ଷମଙ୍କ ଥଇଥାନ ଦିଗରେ ପଦକ୍ଷେପ ରୂପେ ସରକାର ୧୯୫୭ରେ ମୁମ୍ବାଇରେ ଶାରୀରିକ ଅକ୍ଷମଙ୍କ ପାଇଁ ଏକ ବିଶେଷ କର୍ମନିୟୋଜନ ସଂସ୍ଥା ପ୍ରତିଷ୍ଠା କରିଥିଲେ । ଏହି ପ୍ରଥମ ପଦକ୍ଷେପ ସଫଳ ହେବାକୁ ସରକାର ଏବେ ଏପରି ବିଶେଷ କର୍ମନିୟୋଜନ ସଂସ୍ଥା ସଂଖ୍ୟା ୪୩କୁ ବୃଦ୍ଧି କରିଛନ୍ତି । ଦ୍ୱିତୀୟ ପଦକ୍ଷେପ ରୂପେ ଭିନ୍ନକ୍ଷମଙ୍କ ବୃତ୍ତିଗତ ଦକ୍ଷତାର ଆକଳନ ପାଇଁ ଦେଶର ପ୍ରମୁଖ ସ୍ଥାନରେ ବୃତ୍ତିଗତ ଥଇଥାନ କେନ୍ଦ୍ର ପ୍ରତିଷ୍ଠା କରାଯାଇଛି । ଏହିପରି ୨୦ଟି କେନ୍ଦ୍ର ମଧ୍ୟରୁ ପାଟନା (ବିହାର) ଓ ବଦୋଦରା (ଗୁଜରାଟ) କେନ୍ଦ୍ର ମହିଳା ଭିନ୍ନକ୍ଷମଙ୍କ ପାଇଁ ବିଶେଷ ରୂପେ ଉଦ୍ଦିଷ୍ଟ ।

ତାଲିମ, ଶିକ୍ଷା ଓ ରୋଜଗାର କ୍ଷେତ୍ରରେ ଜାତୀୟ ସ୍ତରର ସୁବିଧା ଯୋଗାଇବା ପାଇଁ ସାମାଜିକ ନ୍ୟାୟ ଓ ସଶକ୍ତିକରଣ ମନ୍ତ୍ରଣାଳୟ ପ୍ରତ୍ୟେକ ଶ୍ରେଣୀର ଭିନ୍ନକ୍ଷମଙ୍କ ପାଇଁ ୪ଟି ଜାତୀୟ ପ୍ରତିଷ୍ଠାନ ପ୍ରତିଷ୍ଠା କରିଛନ୍ତି । ଯଥା- ଦୃଷ୍ଟିହୀନଙ୍କ ପାଇଁ ଡେରାଡୁନ୍ (ଉତ୍ତରପ୍ରଦେଶ)ରେ ଜାତୀୟ ପ୍ରତିଷ୍ଠାନ, ଶାରୀରିକ ଅକ୍ଷମଙ୍କ ପାଇଁ କୋଲକତା (ପଶ୍ଚିମବଙ୍ଗ)ରେ ଜାତୀୟ ପ୍ରତିଷ୍ଠାନ, ବଧିରଙ୍କ ପାଇଁ ମୁମ୍ବାଇରେ ଅଲ୍ଲୀ ଜବରଜଙ୍ଗ ଜାତୀୟ ପ୍ରତିଷ୍ଠାନ ଓ ମାନସିକ ଅନଗ୍ରସରଙ୍କ ପାଇଁ ସିକନ୍ଦରାବାଦ (ଆନ୍ଧ୍ରପ୍ରଦେଶ)ରେ ଜାତୀୟ ପ୍ରତିଷ୍ଠାନ ।

ସାମାଜିକ ନ୍ୟାୟ ଓ ସଶକ୍ତିକରଣ ମନ୍ତ୍ରଣାଳୟ (ପୂର୍ବରୁ ସାମାଜିକ କଲ୍ୟାଣ ମନ୍ତ୍ରଣାଳୟ) ଚେନ୍ନାଇ ନିକଟବର୍ତ୍ତୀ ମୁଟ୍ଟୁକାଡୁଠାରେ ବହୁମୁଖୀ ଭିନ୍ନକ୍ଷମଙ୍କ ପାଇଁ ଏକ ଜାତୀୟ ପ୍ରତିଷ୍ଠାନ ପ୍ରତିଷ୍ଠା କରିଛି । ତାମିଲନାଡୁର ପୁଡୁକୋଟ୍ଟାଇସ୍ଥିତ 'ଟିମ୍ ସ୍ପେଶିଆଲିଟି ହସ୍‌ପିଟାଲ'ରେ ବିଶେଷଜ୍ଞ ଡାକ୍ତରଙ୍କ ସେବା ମାଧ୍ୟମରେ ଭିନ୍ନକ୍ଷମଙ୍କ ବିଶେଷ ଚିକିତ୍ସାର ବ୍ୟବସ୍ଥା କରିଛି ।

ଭିନ୍ନକ୍ଷମ ସମୁଦାୟଙ୍କ ସର୍ବାଙ୍ଗୀନ ଉନ୍ନତି ପାଇଁ ସରକାର ବିଭିନ୍ନ ମନ୍ତ୍ରଣାଳୟ ଜରିଆରେ ଅନେକଗୁଡ଼ିଏ ସୁବିଧା ସୁଯୋଗ ପ୍ରଦାନ କରୁଛନ୍ତି । ୧୯୭୭ରୁ ଗ୍ରୁପ୍ ଏ, ବି, ସି ଓ ଡି ପଦବୀ (ପ୍ରଥମ, ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ଶ୍ରେଣୀ)ରେ ଭିନ୍ନକ୍ଷମଙ୍କ ପାଇଁ ତିନି ଶତାଂଶ ଚାକିରି ସଂରକ୍ଷିତ କରାଯାଇଛି । ଦୃଷ୍ଟିହୀନ, ମୂକ ଓ ବଧିର ତଥା ଶାରୀରିକ ଅକ୍ଷମଙ୍କ ପାଇଁ ଏକ ଶତାଂଶ କରି ଚାକିରି ସଂରକ୍ଷଣ ରଖାଯାଇଛି । ସମସ୍ତ ରାଜ୍ୟ ସରକାର ଓ କେନ୍ଦ୍ର ଶାସିତ ଅଞ୍ଚଳ ପ୍ରଶାସନ ମଧ୍ୟ ଏହି ନୀତି ପାଳନ କରୁଛନ୍ତି ।

୨୦୦୬ରେ ଗୃହୀତ ଭିନ୍ନକ୍ଷମଙ୍କ ପାଇଁ ଜାତୀୟ ନୀତିରେ ଭିନ୍ନକ୍ଷମଙ୍କ ସମସ୍ତ ମାନବାଧିକାରକୁ ସଂପୂର୍ଣ୍ଣ ସ୍ୱୀକୃତି ଦିଆଯିବା ସହ ସେମାନଙ୍କ ପାଇଁ ସମାନ ସୁଯୋଗକୁ ପ୍ରୋତ୍ସାହନ ଦେବାର

ପ୍ରତିଶ୍ରୁତିବଦ୍ଧତା ରହିଛି । ଏହିସବୁ ପଦକ୍ଷେପ ଦ୍ୱାରା ଭିନ୍ନକ୍ଷମଙ୍କ ଅଧିକାର ସଂକ୍ରାନ୍ତୀୟ ଜାତିସଂଘ କନଭେନସନ ଅନ୍ତର୍ଗତ ନିଜର ଦାୟିତ୍ୱ ନିର୍ବାହ କରିବାରେ ଭାରତ ବିଶ୍ୱ ସମୁଦାୟରେ ପ୍ରଶଂସାଭାଜନ ହୋଇପାରିଛି ।

ସମସ୍ତ ପଦବୀରେ ସ୍ୱାଭାବିକ ବୟସସୀମା ତୁଳନାରେ ଭିନ୍ନକ୍ଷମ ପ୍ରାର୍ଥୀଙ୍କୁ ପାଇଁ ୧୦ ବର୍ଷ ବୟସ କୋହଳ କରାଯାଇଛି । ତୃତୀୟ ଶ୍ରେଣୀ ପଦବୀରେ ଟାଇପିଂ ପରୀକ୍ଷା ବାଧ୍ୟତାମୂଳକ ଥିବା ସମୟରେ ଏହି ପଦବୀ ପାଇଁ ଭିନ୍ନକ୍ଷମ ପ୍ରାର୍ଥୀ ଟାଇପ କରିପାରୁନଥିଲେ ସେମାନଙ୍କୁ ଏହି ପରୀକ୍ଷାରୁ ଛାଡ଼ କରାଯାଇଛି । ଯୋଗାଯୋଗ ମନ୍ତ୍ରଣାଳୟର ଦୂର ସଞ୍ଚାର ବିଭାଗ ଆତ୍ମ ନିୟୋଜନ ଯୋଜନା ଅନ୍ତର୍ଗତ ଭିନ୍ନକ୍ଷମଙ୍କ ପାଇଁ ଟେଲିଫୋନ ବୁଥ୍ ଖୋଲିଛି । ଏହି କଲ୍ୟାଣମୂଳକ ଯୋଜନା ଦ୍ୱାରା ଅଧିକାଂଶ ଭିନ୍ନକ୍ଷମ ବ୍ୟକ୍ତି ଟେଲିଫୋନ ବୁଥ୍ ଚଳାଇ ଜୀବିକା ନିର୍ବାହ କରିପାରୁଛନ୍ତି । ଦୃଷ୍ଟିହୀନମାନଙ୍କ ପାଇଁ ଉଦ୍ଦିଷ୍ଟ ବ୍ରେଲି ଅକ୍ଷରରେ ଲିଖିତ ଚିଠି ଉପରେ ଡାକ ଟିକଟ ଲଗାଇବାରୁ ମନ୍ତ୍ରଣାଳୟ ଛାଡ଼ କରିଛି ।

**କେନ୍ଦ୍ରୀୟ ଓ ରାଜ୍ୟ ସରକାରୀ କାର୍ଯ୍ୟାଳୟରେ ଚେୟାରଗୁଡ଼ିକରେ ବେତ ବୁଣିବା କାର୍ଯ୍ୟ କଡ଼ାକଡ଼ି ରୂପେ ଦୃଷ୍ଟିହୀନ ବୁଣାକାରଙ୍କ ପାଇଁ ସଂରକ୍ଷିତ କରାଯାଇଛି । ପେଟ୍ରୋଲିୟମ ଓ ରସାୟନ ମନ୍ତ୍ରଣାଳୟ ସରକାରୀ କ୍ଷେତ୍ରର ତୈଳ କମ୍ପାନୀଙ୍କ ସମସ୍ତ ପ୍ରକାର ଡିଲରସିପ୍/ଏଜେନ୍ସିର ପନ୍ଦର ଶତାଂଶ ଭାଗ ଭିନ୍ନକ୍ଷମ ପ୍ରାର୍ଥୀଙ୍କ ପାଇଁ ଆରକ୍ଷିତ ରଖିଛି । ଅର୍ଥ ମନ୍ତ୍ରଣାଳୟଙ୍କ ନିର୍ଦ୍ଦେଶକ୍ରମେ ସମସ୍ତ ଜାତୀୟକରଣ ବ୍ୟାଙ୍କ ଭିନ୍ନକ୍ଷମଙ୍କୁ ବିନା କୌଣସି ଗ୍ୟାରେଣ୍ଟିରେ ୬,୫୦୦ ଟଙ୍କା ଯାଏଁ ବାର୍ଷିକ ୪ ଶତାଂଶ ସୁଧ ହାରରେ ଋଣ ଯୋଗାଇ ଦେଉଛନ୍ତି । ଏ ପ୍ରକାର ଋଣ ଭିନ୍ନକ୍ଷମ ବ୍ୟକ୍ତିଙ୍କ ଆତ୍ମନିୟୋଜନ ପାଇଁ ଦିଆଯାଉଛି ।**

ଦେଶର ଭିନ୍ନକ୍ଷମ ସମୁଦାୟଙ୍କ ସର୍ବାଙ୍ଗୀନ ଉନ୍ନତି ପାଇଁ ନିକଟରେ ସାମାଜିକ ନ୍ୟାୟ ମନ୍ତ୍ରଣାଳୟ 'ଜାତୀୟ ଭିନ୍ନକ୍ଷମ ଆର୍ଥିକ ଉନ୍ନୟନ ନିଗମ' ଗଠନ କରିଛି । ବେକାର ଭିନ୍ନକ୍ଷମଙ୍କ ପାଇଁ ଆତ୍ମନିୟୋଜନ କାର୍ଯ୍ୟକ୍ରମ ଚଳାଇବା ପାଇଁ ଏହି ନିଗମ ବିଶେଷ ରୂପେ ଉଦ୍ଦିଷ୍ଟ । ଭିନ୍ନକ୍ଷମ ବ୍ୟକ୍ତିମାନଙ୍କ କାର୍ଯ୍ୟଶାଳାରେ ନିର୍ମିତ ସାମଗ୍ରୀଗୁଡ଼ିକର ବିକ୍ରୟ ଓ ବିପଣନର ବ୍ୟବସ୍ଥା ମଧ୍ୟ ଏହି ନିଗମ କରୁଛି ।

ଭିନ୍ନକ୍ଷମଙ୍କ କଲ୍ୟାଣ କାର୍ଯ୍ୟକ୍ରମ ପାଇଁ ମୁଖ୍ୟତଃ ବେସରକାରୀ ସ୍ୱେଚ୍ଛାସେବୀ ସଂସ୍ଥା (ଏନ୍.ଜି.ଓ.), ଜାତୀୟ ପ୍ରତିଷ୍ଠାନ, ଭାରତୀୟ କୃତ୍ରିମ ଅଙ୍ଗ ନିର୍ମାଣ ନିଗମ ଓ ଜାତୀୟ ଭିନ୍ନକ୍ଷମ ଆର୍ଥିକ ଉନ୍ନୟନ ନିଗମ ଜରିଆରେ ୨୦୦୪-୦୫, ୨୦୦୫-୦୬ ଓ ୨୦୦୬-୦୭ ବର୍ଷରେ ଯଥାକ୍ରମେ ୧୩୦.୫୫ କୋଟି, ୧୨୪.୭୧ କୋଟି ଓ ୧୨୨.୧୯ କୋଟି ଟଙ୍କା ଦିଆଯାଇଛି ।

ଅତୀତ ଅଭିଜ୍ଞତା ଆଧାରରେ ଚଳିତ ଆର୍ଥିକ ବର୍ଷରୁ ବେସରକାରୀ ସ୍ୱେଚ୍ଛାସେବୀ ସଂସ୍ଥାମାନଙ୍କୁ ଅନୁଦାନ ରାଶିର ଅନୁମୋଦନ ପ୍ରକ୍ରିୟାକୁ ସଜଡ଼ା ଯାଇଛି । ରାଜ୍ୟ ସରକାରମାନଙ୍କୁ ଏ ସମ୍ବନ୍ଧିତ ସମ୍ମିଳିତ ପ୍ରସ୍ତାବ ଏକ ବହୁ ବିଭାଗୀୟ ସମିତିଦ୍ୱାରା ଭଲ ଭାବେ ଯାଞ୍ଚ କରାଯିବାପରେ ପଠାଇବାକୁ ପରାମର୍ଶ ଦିଆଯାଇଛି । ପାଣ୍ଠିର ସଦୁପଯୋଗ ସୁନିଶ୍ଚିତ କରିବା ପାଇଁ ସମୟେ ସମୟେ ପ୍ରଗତି ବିବରଣୀ ଓ ତା'ସହିତ ଅଡ଼ିଟ୍ ହୋଇଥିବା ହିସାବ, ହିତାଧିକାରୀ ତାଲିକା ଓ ବିନିଯୋଗ ପ୍ରମାଣପତ୍ର ମଗାଯାଉଛି ।

ଭିନ୍ନକ୍ଷମଙ୍କୁ ସମାନ ସୁବିଧା ଦେବା ପାଇଁ ସାମାଜିକ ନ୍ୟାୟ ଓ ସଶକ୍ତିକରଣ ମନ୍ତ୍ରଣାଳୟ ଦୃଷ୍ଟିହୀନମାନଙ୍କ ସୁବିଧା ସକାଶେ ସୂଚନା ଅଧିକାର ଆଇନକୁ ବ୍ରେଲି ଲିପିରେ ପ୍ରକାଶିତ କରିଛି । ବ୍ରେଲି ଲିପିରେ ଲିଖିତ ସୂଚନା ଅଧିକାର ଆଇନର ନକଲ ଦୃଷ୍ଟିହୀନଙ୍କ ପାଇଁ ଜାତୀୟ ପ୍ରତିଷ୍ଠାନ, ୧୬ ରଜପୁର ରୋଡ଼, ଡେରାଡୁନ୍‌ରୁ ମିଳିପାରିବ ।

ଅତିରିକ୍ତ କେନ୍ଦ୍ରୀୟ ମାଧ୍ୟମିକ ଶିକ୍ଷା ପରିଷଦ ଶାରୀରିକ ଅକ୍ଷମ ଛାତ୍ରଛାତ୍ରୀଙ୍କୁ ନିମ୍ନଲିଖିତ ରିହାତି ଯୋଗାଉଛି ।

- ସାଧାରଣ ଛାତ୍ରଛାତ୍ରୀଙ୍କ ପାଇଁ ଦୁଇଟି ବାଧ୍ୟତାମୂଳକ ଭାଷା ବିଷୟ ଥିବାବେଳେ ଭିନ୍ନକ୍ଷମମାନେ ଗୋଟିଏ ବାଧ୍ୟତାମୂଳକ ଭାଷା ବିଷୟ ଅଧ୍ୟୟନ କରିପାରିବେ ଓ ଗଣିତ କିମ୍ବା ବିଜ୍ଞାନ ପରିବର୍ତ୍ତେ ଅନ୍ୟ ବିଷୟ ନେଇପାରିବେ ।
- ଯଦି ଅନୁରୋଧ କରାଯାଏ ତେବେ ପରୀକ୍ଷା ସମୟରେ ଜଣେ ଲେଖକ ଯୋଗାଇ ଦିଆଯିବ ।
- ପ୍ରଶ୍ନପତ୍ରଗୁଡ଼ିକର ଉତ୍ତର ଲେଖିବାକୁ ୩୦ ମିନିଟ୍‌ରୁ ୬୦ ମିନିଟ୍ ଯାଏଁ ଅତିରିକ୍ତ ସମୟ ଦିଆଯିବ ।
- ଦର୍ଶନ ଶକ୍ତି ବାଧିତ ପରୀକ୍ଷାର୍ଥୀଙ୍କ ପାଇଁ ବଡ଼ ଅକ୍ଷରରେ ଅଲଗା ପ୍ରଶ୍ନ ପତ୍ର ଦିଆଯିବ ।
- ଦର୍ଶନ ଶକ୍ତି ବାଧିତ ପରୀକ୍ଷାର୍ଥୀଙ୍କୁ ଦଶମ ଶ୍ରେଣୀ ପରୀକ୍ଷାରେ ସାମାଜିକ ବିଜ୍ଞାନ ଓ ଇଂରାଜୀ ବିଷୟରେ ଓ ଦ୍ୱାଦଶ ଶ୍ରେଣୀ ପରୀକ୍ଷାରେ ଇତିହାସ, ଭୂଗୋଳ ଓ ଅର୍ଥନୀତି ବିଷୟରେ ଚିତ୍ର ଦର୍ଶନ ସମ୍ବନ୍ଧିତ ପ୍ରଶ୍ନ ସ୍ଥାନରେ ବିକଳ୍ପ ପ୍ରଶ୍ନ ଦିଆଯିବ ।
- ଯେତେ ଦୂର ସମ୍ଭବ ତଳ ମହଲାରେ ବସି ପରୀକ୍ଷା ଦେବାର ବିଶେଷ ବ୍ୟବସ୍ଥା କରାଯିବ ।
- ଫିଜିଓ ଥେରାପି ବ୍ୟାୟାମକୁ ଶାରୀରିକ ଶିକ୍ଷା ଓ ସ୍ୱାସ୍ଥ୍ୟ ଶିକ୍ଷା ସମତୁଲ୍ୟ ଧରାଯିବ ।
- ଏପରି ପରୀକ୍ଷାର୍ଥୀଙ୍କ ଉତ୍ତରଖାତା ଅଲଗା ଭାବେ ମୂଲ୍ୟାୟନ କରାଯିବ ।

ସାରା ଦେଶର ସମସ୍ତ କେନ୍ଦ୍ରୀୟ ମାଧ୍ୟମିକ ଶିକ୍ଷା ପରିଷଦ (ସି.ବି.ଏସ୍.ଇ.) ଅନୁବନ୍ଧିତ ବିଦ୍ୟାଳୟରେ ସମସ୍ତ ଭିନ୍ନକ୍ଷମ ପରୀକ୍ଷାର୍ଥୀଙ୍କୁ ଉପର ଲିଖିତ ସୁବିଧା ସୁଯୋଗ ଯୋଗାଇ ଦିଆଯାଉଛି ।

ଏହିପରି ଭାବେ ବିଭିନ୍ନ କଲ୍ୟାଣକାରୀ ପଦକ୍ଷେପ କାର୍ଯ୍ୟକାରୀ କରି ସରକାର ଭିନ୍ନକ୍ଷମଙ୍କୁ ଜାତୀୟ ମୁଖ୍ୟ ଧାରା ସହ ସାମିଲ କରୁଛନ୍ତି । ସେମାନଙ୍କୁ ନିଜ ଗୋଡ଼ରେ ଛିଡ଼ା ହେବାକୁ ସାହାଯ୍ୟ କରାଯାଉଛି ।

ସୌଜନ୍ୟ : ପି.ଆଇ.ବି.

# ଅବକାରୀ ବିଭାଗର ୨୦୦୭-୦୮ ବର୍ଷର କାର୍ଯ୍ୟାବଳୀ ରିପୋର୍ଟ

ଅବକାରୀ ବିଭାଗର ଏକ ସ୍ୱତନ୍ତ୍ର ବିଭାଗ ଭାବେ ତା.୦୧.୧୨.୧୯୯୯ରିଖରୁ ରାଜସ୍ୱ ଓ ଅବକାରୀ ବିଭାଗରୁ ପୃଥକ୍ ହୋଇ କାର୍ଯ୍ୟ କଲା । ଏହା ମୁଖ୍ୟତଃ ଏକ ରାଜସ୍ୱ ଆଦାୟକାରୀ ବିଭାଗ । ଏହି ବିଭାଗ ରାଜ୍ୟ ଅବକାରୀ ଆଇନକୁ ମଧ୍ୟ କାର୍ଯ୍ୟକାରୀ କରିଥାଏ ।

### ଅବକାରୀ ନୀତି

ଭାରତୀୟ ସମ୍ବିଧାନର ଅନୁଚ୍ଛେଦ ୪୭ ଅନୁସାରେ ପ୍ରତ୍ୟେକ ରାଜ୍ୟ ନିଶା ନିବାରଣ କରିବାକୁ ପ୍ରୟାସ କରିବେ । ଜନକଲ୍ୟାଣପ୍ରତି ବଚନବଦ୍ଧ ଥିବା ସରକାର, ଖାଉଟିମାନଙ୍କର ଆଚରଣକୁ ଦୃଷ୍ଟିରେ ରଖି ଅନ୍ୟ ଖାଉଟି ଦ୍ରବ୍ୟ ଭଳି, ନିଶାଯୁକ୍ତ ଦ୍ରବ୍ୟଗୁଡ଼ିକର ଚାହିଦା ଏବଂ ଯୋଗାଣ ପ୍ରତି ସର୍ବଦା ସଜାଗ ଏବଂ ସକ୍ରିୟ ରହିଥାନ୍ତି । ଏଣୁ ଏହି ନିଶାଯୁକ୍ତ ଦ୍ରବ୍ୟର ଚାହିଦା ଅନୁସାରେ ଯୋଗାଣ ସର୍ବଦା ସୂଚାରୁ ରୂପେ ହେବା ଆବଶ୍ୟକ । ବର୍ତ୍ତମାନର ଚାହିଦାକୁ ଦୃଷ୍ଟିରେ ରଖି ବିଧିସଙ୍ଗତ ଏବଂ ନିରାପଦ ଦ୍ରବ୍ୟର ଯୋଗାଣ ନିମନ୍ତେ ସରକାର ସର୍ବଦା ପ୍ରୟାସ କରିଥାନ୍ତି । ଚାହିଦାଠାରୁ ସ୍ୱଳ୍ପ ଯୋଗାଣ, ବିଷାକ୍ତ ଏବଂ ଚୋରା କାରବାରର କାରଣ ହୋଇଥାଏ, ଯାହାକି ଖାଉଟି ତଥା ଜନସାଧାରଣଙ୍କ ନିରାପତ୍ତା ବିପନ୍ନ କରେ ।

ବିଭିନ୍ନ ନ୍ୟାୟିକ ମାମଲାରେ ଏହା ମଧ୍ୟ ସ୍ୱୀକାର କରାଯାଇଅଛି ଯେ ମାଦକ ଦ୍ରବ୍ୟ କାରବାରର ବିଶେଷାଧିକାର ପ୍ରଦାନର ଏକମାତ୍ର ଉଦ୍ଦେଶ୍ୟ ହେଲା ରାଜସ୍ୱ ସଂଗ୍ରହ । ଏହାଦ୍ୱାରା ସରକାର ସତର୍କତାର ସହ ମାଦକ ଦ୍ରବ୍ୟର ନିୟନ୍ତ୍ରଣ ପାଇଁ ନୀତି ନିର୍ଦ୍ଧାରଣ କରନ୍ତି ଓ ପରିଣାମତଃ ସାମାଜିକ ରକ୍ଷଣଶୀଳତା ଉପରେ କୌଣସି ପ୍ରଭାବ ନ ପକାଇ ବିପୁଳ ପରିମାଣର ରାଜସ୍ୱ ଆଦାୟ କରିଥାନ୍ତି ।

ଭାରତ ସମ୍ବିଧାନର ଅନୁଚ୍ଛେଦ ୨୪୬(୩) ଧାରା ଏବଂ ତାଲିକା-IIର ୭ମ ଅନୁଚ୍ଛେଦରେ ଅନ୍ତର୍ଗତ କରାଯାଇଥିବା ଯେକୌଣସି ବିଷୟରେ ରାଜ୍ୟ ବା ରାଜ୍ୟର ଯେକୌଣସି ପ୍ରାନ୍ତ ପାଇଁ ରାଜ୍ୟ ବିଧାନମଣ୍ଡଳ ଆଇନ ପ୍ରଣୟନ କରିବାର ବିଶେଷ ଅଧିକାର ରହିଛି । ମଦ ଅର୍ଥାତ୍ ଏହାର ଉତ୍ପାଦନ, ପ୍ରସ୍ତୁତି, ମହଜୁଦ, ପରିବହନ, କ୍ରୟ ଓ ବିକ୍ରୟକୁ ଉକ୍ତ ତାଲିକା-IIର କ୍ରମିକ ସଂଖ୍ୟା ୮ରେ ଦର୍ଶାଯାଇଅଛି । ଯେକୌଣସି ବିଷୟରେ ଫି ଧାର୍ଯ୍ୟ କରିବା ପାଇଁ ଭାରତୀୟ ସମ୍ବିଧାନର ଧାରା-II ଅନ୍ତର୍ଗତ କ୍ରମିକ ସଂଖ୍ୟା- ୬୬ରେ ରାଜ୍ୟ ବିଧାନମଣ୍ଡଳକୁ କ୍ଷମତା ପ୍ରଦାନ କରାଯାଇଅଛି । ରାଜ୍ୟ ଭିତରେ କିମ୍ବା ଭାରତର ଯେକୌଣସି ସ୍ଥାନରେ ମନୁଷ୍ୟ ବ୍ୟବହାର ଉପଯୋଗୀ ସୁରାସାର ମଦ ଉପରେ ଅବକାରୀ ଶୁଳ୍କ ଲାଗୁ କରାଯାଇପାରିବ ।

ରାଜ୍ୟରେ ବିଦେଶୀ ମଦ (IMFL) ଓ ଦେଶୀ ମଦ (Country Spirit)ର ଏକଚାଟିଆ କାରବାର ରାଜ୍ୟ ସରକାର ଓଡ଼ିଶା ରାଜ୍ୟ ପାନୀୟ ନିଗମକୁ ପ୍ରଦାନ କରିଅଛନ୍ତି । ରାଜ୍ୟରେ ମଦର ଆମଦାନୀ ଓ ବିତରଣ କେବଳ ପାନୀୟ ନିଗମ ମାଧ୍ୟମରେ ହୋଇପାରିବ ଏବଂ ମଦ ପ୍ରସ୍ତୁତକାରୀ ସଂସ୍ଥାଗୁଡ଼ିକ ରାଜ୍ୟ ମଧ୍ୟରେ ପାନୀୟ ନିଗମ ବ୍ୟତୀତ ଅନ୍ୟ କାହାକୁ ମଦ ବିକ୍ରୟ କରିପାରିବେ ନାହିଁ । ମଦର ଖୁଚୁରା ବିକ୍ରୟ କେବଳ ରାଜ୍ୟ ସରକାରଙ୍କଠାରୁ ଲାଇସେନ୍ସ ପ୍ରାପ୍ତ ଖୁଚୁରା ବିକ୍ରେତାମାନଙ୍କ ଜରିଆରେ ନିୟନ୍ତ୍ରିତ ।

ଯେହେତୁ ମଦ ବ୍ୟବସାୟରୁ ରାଜସ୍ୱ ସଂଗ୍ରହ ମୁଖ୍ୟ ଉଦ୍ଦେଶ୍ୟ ଓ ଯେହେତୁ ଅଧିକ ସମ୍ବଳ ସଂଗ୍ରହର ଉତ୍କଟ ଆବଶ୍ୟକତା ରହିଛି, ଲାଇସେନ୍ସ ପ୍ରାପ୍ତ ଦୋକାନ ସଂଖ୍ୟା ବଢ଼ାଇବା ଅପରିହାର୍ଯ୍ୟ ହୋଇଛି ।

ବିଦେଶୀ ମଦ ଓ ଦେଶୀ ମଦର ଏକଚାଟିଆ ପାଇକାରୀ କାରବାର ସରକାରଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ଅଟେ । ଅବକାରୀ ରାଜସ୍ୱ ଏହା ପରେ ଉଲ୍ଲେଖନୀୟ ଭାବେ ବୃଦ୍ଧି ପାଇଛି । ଗତ ପାଞ୍ଚବର୍ଷର ଅବକାରୀ ରାଜସ୍ୱ ଆଦାୟ ବିବରଣୀ ନିମ୍ନମତେ ପ୍ରଦାନ କରାଗଲା -

| ବର୍ଷ | (କୋଟି ଟଙ୍କାରେ) | ଶତକଡ଼ା ଅଭିବୃଦ୍ଧି ହାର |
|---|---|---|
| ୨୦୦୦-୦୧ | ୧୩୫.୩୫ | ୧୭.୮୮% |
| ୨୦୦୧-୦୨ | ୧୯୭.୩୫ | ୪୫.୮୧% |
| ୨୦୦୨-୦୩ | ୨୪୬.୦୫ | ୨୪.୬୯% |
| ୨୦୦୩-୦୪ | ୨୫୬.୬୯ | ୪.୩୧% |
| ୨୦୦୪-୦୫ | ୩୦୬.୬୧ | ୧୯.୪୪% |

| ବର୍ଷ | (କୋଟି ଟଙ୍କାରେ) | ଶତକଡ଼ା ଅଭିବୃଦ୍ଧି ହାର |
|---|---|---|
| ୨୦୦୫-୦୬ | ୩୮୯.୨୦ | ୨୬.୯୩% |
| ୨୦୦୬-୦୭ | ୪୩୦.୧୨ | ୧୦.୫୧% |
| ୨୦୦୭-୦୮ | ୫୨୪.୮୩ | ୨୨.୦୧% |

### ଭାରତ ପ୍ରସ୍ତୁତ ବିଦେଶୀ ମଦ ଓ ବିୟର

ଭାରତ ପ୍ରସ୍ତୁତ ବିଦେଶୀ ମଦ ଓ ବିୟରରୁ ଶୁଳ୍କ ଓ ଫି ବାବଦକୁ ଆଦାୟ ହେଉଥିବା ରାଜସ୍ୱ ଅବକାରୀ ରାଜସ୍ୱର ଏକ ମୁଖ୍ୟ ଉତ୍ସ । ବର୍ତ୍ତମାନ ଜାନୁଆରୀ ତା.୧୪.୦୧.୨୦୦୮ରିଖ ସୁଦ୍ଧା ରାଜ୍ୟରେ ୮୧୩ଟି ଠିପିବନ୍ଦ ବିଦେଶୀ ମଦ ଦୋକାନ, ୨୦୮ଟି ଠିପିଖୋଲା ବିଦେଶୀ ମଦ ଦୋକାନ, ୧୩ଟି ଠିପିଖୋଲା କ୍ଲବ୍ ଏବଂ ୩୭ଟି ବିୟର ପାର୍ଲର ଅଛି ।

ଠିପିବନ୍ଦ ବିଦେଶୀ ମଦ ଦୋକାନ ଲଟେରୀ ମାଧ୍ୟମରେ ବନ୍ଦୋବସ୍ତ କରାଯାଇଥାଏ । ୨୦୦୭-୦୮ ବର୍ଷ (ଜାନୁଆରୀ ୦୮ ମାସ ଶେଷସୁଦ୍ଧା) ଠିପିବନ୍ଦ ବିଦେଶୀ ମଦ ଦୋକାନରୁ ଆଦାୟ ହୋଇଥିବା ଜରସମନ ମୂଲ୍ୟର ପରିମାଣ ୨୭.୪୪ କୋଟି ଓ ଠିପିଖୋଲା ବିଦେଶୀମଦ ଦୋକାନରୁ ଆଦାୟ ହୋଇଥିବା ଜରସମନ ମୂଲ୍ୟର ପରିମାଣ ୨.୦୦ କୋଟି ଟଙ୍କା ଅଟେ । ଏହି ପ୍ରତ୍ୟାଭୂତି ଅର୍ଥ ବ୍ୟତୀତ ଖୁଚୁରା ବିକ୍ରେତାମାନେ ଉଠାଉଥିବା ବିଦେଶୀ ମଦ ଓ ବିୟର ପାଇଁ ନିର୍ଦ୍ଦିଷ୍ଟ ପରିମାଣରେ ବିଦେଶୀ ମଦ ଓ ବିୟର ଉଠାଣ ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଥାଏ ଏବଂ ସେଥିରୁ ଅବକାରୀ ଶୁଳ୍କ ମିଳିଥାଏ ।

### ମହୁଲିମଦ

ବର୍ତ୍ତମାନ ରାଜ୍ୟରେ ୨୦ ଗୋଟି ଜିଲ୍ଲା, ଯଥା- ସମ୍ବଲପୁର, ବରଗଡ଼, ଝାରସୁଗୁଡ଼ା, ଦେଓଗଡ଼, କଳାହାଣ୍ଡି, ନୂଆପଡ଼ା, ବଲାଙ୍ଗିର, ସୋନପୁର, ବୌଦ୍ଧ, କୋରାପୁଟ, ରାୟଗଡ଼ା, ନବରଙ୍ଗପୁର, ମାଲକାନଗିରି, ସୁନ୍ଦରଗଡ଼, ଅନୁଗୁଳ, କେନ୍ଦୁଝର, ମୟୂରଭଞ୍ଜ, ଗଞ୍ଜାମ, ଗଜପତି ଓ ଢେଙ୍କାନାଳମାନଙ୍କରେ ମହୁଲିମଦ ପ୍ରଚଳନ କରାଯାଇଛି । ଏହି ମହୁଲିମଦ ଦୋକାନଗୁଡ଼ିକ ଲଟେରୀ ମାଧ୍ୟମରେ ବନ୍ଦୋବସ୍ତ କରାଯାଇଥାଏ । ବର୍ତ୍ତମାନ ରାଜ୍ୟରେ ୫୩୬ ଗୋଟି ମୁଖ୍ୟ ଓ ୮୯୩ ଗୋଟି ଶାଖା ମହୁଲିମଦ ଦୋକାନ ଅଛି । ସରକାର ଏହି ମୁଖ୍ୟ ଓ ଶାଖା ଦୋକାନଗୁଡ଼ିକରୁ ୨୦୦୭-୦୮ ବର୍ଷ (ଜାନୁଆରୀ ୮ ଶେଷ ସୁଦ୍ଧା) ୩୪.୦୩ କୋଟି ଟଙ୍କା ଜରସମନ ମୂଲ୍ୟ ଭାବେ ପାଇଛନ୍ତି ।

### ଦେଶୀ ମଦ

୨୦୦୭-୦୮ ବର୍ଷରେ କଟକ, ଜଗତସିଂହପୁର, କେନ୍ଦ୍ରାପଡ଼ା, ଯାଜପୁର, ପୁରୀ, ନୟାଗଡ଼, ଖୋର୍ଦ୍ଧା, ଫୁଲବାଣୀ, ବାଲେଶ୍ୱର ଓ ଭଦ୍ରକ ଆଦି ୧୦ଟି ଜିଲ୍ଲାରେ ଦେଶୀ ମଦ ପ୍ରଚଳନ କରାଯାଇଛି । ଦେଶୀ ମଦ ଦୋକାନଗୁଡ଼ିକ ଲଟେରୀ ମାଧ୍ୟମରେ ବନ୍ଦୋବସ୍ତ ହୋଇଥାଏ । ରାଜ୍ୟରେ ମୋଟ ୧୫୨ ଗୋଟି ଦେଶୀ ମଦ ଦୋକାନ ଅଛି । ସରକାର ଦେଶୀ ମଦରୁ ୨୦୦୭-୦୮ ବର୍ଷ (ଜାନୁଆରୀ ୮ ଶେଷସୁଦ୍ଧା) ୩.୫୬ କୋଟି ଟଙ୍କା ଜରସମନ ମୂଲ୍ୟ ଭାବେ ପାଇଛନ୍ତି ।

### ଡିଷ୍ଟିଲାରୀ, ବ୍ରିୱେରୀ ଓ ବଟଲିଂ ପ୍ଲାଣ୍ଟ

ରାଜ୍ୟରେ ୩ଟି ଡିଷ୍ଟିଲାରୀ, ୧୧ଟି ବଟଲିଂ ପ୍ଲାଣ୍ଟ ଓ ୪ଟି ବ୍ରିୱେରୀ ଅଛି । ରାଜ୍ୟ ଭିତରେ ଏଗୁଡ଼ିକର ବାର୍ଷିକ ଉତ୍ପାଦନ କ୍ଷମତା ୨୦୦.୭୧ ଲକ୍ଷ ଏଲ୍.ପି.ଏଲ୍. ଭାରତ ପ୍ରସ୍ତୁତ ବିଦେଶୀ ମଦ ଏବଂ ୫୧୦.୨୦ ଲକ୍ଷ ବି.ଏଲ୍. ବିୟର ଅଟେ ।

### ବିଦେଶୀ ମଦ ଓ ବିୟର ଉଠାଣ

୨୦୦୬-୦୭ ମସିହାରେ ୧୪୩.୦୬ ଲକ୍ଷ ଏଲ୍.ପି.ଏଲ୍. ଭାରତ ପ୍ରସ୍ତୁତ ବିଦେଶୀ ମଦ ଓ ୧୩୯.୦୬ ଲକ୍ଷ ବି.ଏଲ୍. ବିୟର ଉଠାଣ ହୋଇଥିବାବେଳେ ୨୦୦୭-୦୮ ବର୍ଷ (ଜାନୁଆରୀ ୮ ମାସ ଶେଷସୁଦ୍ଧା) ୧୨୫.୩୭ ଲକ୍ଷ ଏଲ୍.ପି.ଏଲ୍. ଭାରତ ପ୍ରସ୍ତୁତ ବିଦେଶୀ ମଦ ଓ ୨୧୮.୭୨ ଲକ୍ଷ ବି.ଏଲ୍. ବିୟର ଉଠାଯାଇଅଛି ।

### ଦେଶୀ ମଦ ଉଠାଣ

୨୦୦୬-୦୭ ବର୍ଷରେ ୫୨.୫୫ ଲକ୍ଷ ଏଲ୍.ପି.ଏଲ୍. ଦେଶୀ ମଦ ଉଠାଣ ହୋଇଥିବାବେଳେ ୨୦୦୭-୦୮ ବର୍ଷ (ଜାନୁଆରୀ ୮ ଶେଷସୁଦ୍ଧା) ୪୭.୭୧ ଲକ୍ଷ ଏଲ୍.ପି.ଏଲ୍. ଦେଶୀ ମଦ ଉଠାଯାଇଅଛି ।

### ଓଡ଼ିଶା ରାଜ୍ୟ ପାନୀୟ ନିଗମର କାର୍ଯ୍ୟ

ରାଜ୍ୟ ସରକାର ଓଡ଼ିଶା ରାଜ୍ୟ ପାନୀୟ ନିଗମ ଗଠନ କରି ବିଦେଶୀ ମଦ ଓ ଦେଶୀ ମଦର ଏକଚାଟିଆ କାରବାର ହାତକୁ ନେଇଅଛନ୍ତି । ସେହି ଅନୁଯାୟୀ କମ୍ପାନୀ ଆଇନ, ୧୯୫୬ ଅନୁସାରେ ଓଡ଼ିଶା ରାଜ୍ୟ ପାନୀୟ ନିଗମକୁ ରାଜ୍ୟର ଏକ ସଂପୂର୍ଣ୍ଣ ନିୟନ୍ତ୍ରଣାଧୀନ ନିଗମ ଭାବେ ପଞ୍ଜିକୃତ କରାଯାଇଛି । ଏହା ଫଳରେ ଅବକାରୀ ଶୁଳ୍କ ଓ ବିକ୍ରୀକର ଆଦାୟ ଉଲ୍ଲେଖନୀୟ ଭାବେ ବୃଦ୍ଧି ପାଇଛି । ଅବକାରୀ ଶୁଳ୍କ ଓ ବିକ୍ରୀକର ବୃଦ୍ଧିର ଏକ ତୁଳନାତ୍ମକ ବିବରଣୀ ସାରଣୀ-୧ରେ ପ୍ରଦାନ କରାଗଲା ।

ନିଗମର ପ୍ରାଧିକୃତ ପୁଞ୍ଜିରାଶି ୫.୦୦ କୋଟି ଟଙ୍କା ହୋଇଥିବାବେଳେ ରାଜ୍ୟସରକାର ନିଗମକୁ ଅଂଶଧନ ବାବଦରେ ୧.୦୦ କୋଟି ଟଙ୍କା ଓ ଋଣ ବାବଦରେ ୧.୦୦ କୋଟି ଟଙ୍କା ଦେଇଅଛନ୍ତି । ଏହି ଋଣ ରାଶି ଉପରେ ପାନୀୟ ନିଗମ ରାଜ୍ୟ ସରକାରଙ୍କୁ ଶତକଡ଼ା ୨୪% ସୁଧ ପଇଠ କରୁଅଛି । ନିଗମ ଖୋର୍ଦ୍ଧା, କଟକ, ବ୍ରହ୍ମପୁର, ସମ୍ବଲପୁର, ବାଲେଶ୍ୱର ଓ ରାୟଗଡ଼ାଠାରେ

### ସାରଣୀ-୧

(କୋଟି ଟଙ୍କାରେ)

| | ନାମ | ୨୦୦୨-୦୩ | ୨୦୦୩-୦୪ | ୨୦୦୪-୦୫ | ୨୦୦୫-୦୬ | ୨୦୦୬-୦୭ | ୨୦୦୭-୦୮ (ଜାନୁଆରୀ ୮ ଶେଷସୁଦ୍ଧା) |
|---|---|---|---|---|---|---|---|
| ୧ | ୨ | ୩ | ୪ | ୫ | ୬ | ୭ | ୮ |
| ୧. | ଅବକାରୀ ଶୁଳ୍କ | ୧୩୭.୩୭ | ୧୪୩.୭୨ | ୧୬୪.୪୬ | ୨୧୦.୨୯ | ୨୪୨.୪୨ | ୨୩୪.୪୯ |
| ୨. | ବିକ୍ରୀକର ଓ ପ୍ରବେଶ କର | ୫୮.୨୪ | ୬୯.୩୯ | ୭୩.୮୫ | ୮୬.୧୮ | ୧୧୦.୪୩ | ୯୬.୫୩ |
| | **ମୋଟ** | **୧୯୫.୬୧** | **୨୧୩.୧୧** | **୨୩୮.୩୧** | **୨୯୬.୪୭** | **୩୫୨.୮୫** | **୩୩୧.୦୨** |

ଡିପୋମାନ ଖୋଲିଅଛି । ନିଗମ ବ୍ରହ୍ମପୁର, ଖୋର୍ଦ୍ଧା ଓ ବାଲେଶ୍ୱରରେ ମଧ୍ୟ ଦେଶୀ ମଦ ଡିପୋମାନ ଖୋଲିଛନ୍ତି । ମଦର ଚାହିଦାକୁ ଦୃଷ୍ଟିରେ ରଖି ଆଉ ୩ ଗୋଟି ନୂତନ ଡିପୋ କେନ୍ଦୁଝର, ଅନୁଗୁଳ ଏବଂ ବଲାଙ୍ଗିରଠାରେ ଖୋଲାଯିବାପାଇଁ ପ୍ରସ୍ତାବ ରଖାଯାଇଛି ।

ନିଗମ ବିଗତ ଚାରି ବର୍ଷରେ ଦେଇଥିବା ଫିଗୁଡ଼ିକର ବିଶଦ ବିବରଣୀ ନିମ୍ନରେ ପ୍ରଦାନ କରାଗଲା ।

| ବର୍ଷ | ଲାଇସେନ୍‌ସ ଫି (କୋଟି ଟଙ୍କାରେ) | ପ୍ରିଭିଲେଜ୍ ଫି (କୋଟି ଟଙ୍କାରେ) |
|---|---|---|
| ୨୦୦୩-୦୪ | ୬.୦୦ | ୫.୦୦ |
| ୨୦୦୪-୦୫ | ୧୦.୦୦ | ୫.୦୦ |
| ୨୦୦୫-୦୬ | ୧୨.୦୦ | ୫.୦୦ |
| ୨୦୦୬-୦୭ | ୨୦.୦୦ | ୨୦୦୬-୦୭ ବର୍ଷଠାରୁ ଆଦାୟ କରାଯାଉ ନାହିଁ |
| ୨୦୦୭-୦୮ | ୩୦.୦୦ | ୨୦୦୬-୦୭ ବର୍ଷଠାରୁ ଆଦାୟ କରାଯାଉ ନାହିଁ |

ଓଡ଼ିଶା ରାଜ୍ୟ ପାନୀୟ ନିଗମ ବିଗତ ଛଅ ବର୍ଷରେ କରିଥିବା ମୋଟ କାରବାରର ସବିଶେଷ ବିବରଣୀ ନିମ୍ନରେ ପ୍ରଦାନ କରାଗଲା ।

| ବର୍ଷ | ମୋଟ କାରବାର (କୋଟି ଟଙ୍କାରେ) | ମନ୍ତବ୍ୟ |
|---|---|---|
| ୨୦୦୧-୦୨ | ୨୭୫.୪୩ | ଅଡ଼ିଟ ହୋଇଅଛି |
| ୨୦୦୨-୦୩ | ୩୪୭.୨୫ | ଅଡ଼ିଟ ହୋଇଅଛି |
| ୨୦୦୩-୦୪ | ୩୭୮.୦୦ | ଅନନ୍ତିମ |
| ୨୦୦୪-୦୫ | ୪୫୨.୩୮ | ଅନନ୍ତିମ |
| ୨୦୦୫-୦୬ | ୫୨୩.୦୯ | ଅନନ୍ତିମ |
| ୨୦୦୬-୦୭ | ୬୧୨.୨୩ | ଅନନ୍ତିମ |
| ୨୦୦୭-୦୮ (ଜାନୁଆରୀ ୮ ଶେଷ ସୁଦ୍ଧା) | ୪୮୫.୯୧ | ଅନନ୍ତିମ (ପ୍ରୋଭିଜନାଲ) |

**ବଳବତ୍‌କରଣ**

ରାଜ୍ୟର ଚାରିଗୋଟି ଅବକାରୀ ଗୋଇନ୍ଦା ସଂସ୍ଥା ଓ ବଳବତ୍‌କରଣ ବ୍ୟୁରୋ (ଇ.ଆଇ. ଆଣ୍ଡ ଇ.ବି. ୟୁନିଟ୍) ରହିଅଛି । ଏହା ମଧ୍ୟରୁ ଗୋଟିଏ କରି ୟୁନିଟ୍ ଅବକାରୀ ଗୋଇନ୍ଦା ଓ ବଳବତ୍‌କରଣ ସଂସ୍ଥାର ଶାଖା, ତିନିଗୋଟି ଅବକାରୀ ଉପ-ଆୟୁକ୍ତଙ୍କ ଅଧୀନରେ କଟକ, ବ୍ରହ୍ମପୁର ଓ ସମ୍ବଲପୁରଠାରେ କାର୍ଯ୍ୟରତ ଓ ଗୋଟିଏ ଅବକାରୀ ଗୋଇନ୍ଦା ଓ ବଳବତ୍‌କରଣ ସଂସ୍ଥାର ଶାଖା ରାଜ୍ୟର ଅବକାରୀ କମିଶନରଙ୍କ ଅଧୀନରେ ଅବସ୍ଥାପିତ । ଏତଦ୍‌ବ୍ୟତୀତ ଜିଲ୍ଲାମାନଙ୍କରେ ଫ୍ଲାଇଙ୍ଗସ୍କ୍ୱାର୍ଡ଼ ଓ ଭ୍ରାମ୍ୟମାଣ ଶାଖାମାନ ଅବକାରୀ ବଳବତ୍‌କରଣ କାର୍ଯ୍ୟ କରୁଅଛନ୍ତି । ବିଗତ ଚାରିବର୍ଷର ଅବକାରୀ ବଳବତ୍‌କରଣ କାର୍ଯ୍ୟାବଳୀର ଏକ ତୁଳନାତ୍ମକ ବିବରଣୀ ସାରଣୀ-୨ରେ ଦିଆଯାଇଅଛି ।

**ଜବତ ଓ ନଷ୍ଟ କରାଯାଇଥିବା ଗଞ୍ଜେଇ ଗଛ**

୨୦୦୭-୦୮ ବର୍ଷ (ଜାନୁଆରୀ ୮ ଶେଷସୁଦ୍ଧା) ରାଜ୍ୟର (୧୩) ତେର ଗୋଟି ଜିଲ୍ଲାରୁ ଧରପଗଡ଼ କରାଯାଇ ଜବତ ଏବଂ ନଷ୍ଟ କରାଯାଇଥିବା ଗଞ୍ଜେଇ ଗଛର ବିବରଣୀ ନିମ୍ନରେ ପ୍ରଦାନ କରାଗଲା ।

**ସାରଣୀ-୨**

| ଧରପଗଡ଼ର ବିବରଣୀ | ବର୍ଷ | | | | |
|---|---|---|---|---|---|
| | ୨୦୦୩-୦୪ | ୨୦୦୪-୦୫ | ୨୦୦୫-୦୬ | ୨୦୦୬-୦୭ | ୨୦୦୭-୦୮ (ଡିସେମ୍ବର ୭ ଶେଷସୁଦ୍ଧା) |
| ୧. ରୁଜୁ ହୋଇଥିବା ମାମଲା ସଂଖ୍ୟା | ୩୧,୧୯୯ | ୩୦,୫୪୧ | ୩୦,୫୩୪ | ୧୭,୩୬୭ | ୧୧,୨୪୬ |
| ୨. ଗିରଫ ବ୍ୟକ୍ତି ସଂଖ୍ୟା | ୧୫,୮୮୫ | ୧୫,୭୩୨ | ୧୪,୯୫୫ | ୫,୪୮୯ | ୩,୮୮୨ |
| ୩. ଜବତ ଜିନିଷର ପରିମାଣ | | | | | |
| କ) ଚୋରାମଦ (ଲିଟର) | ୨,୯୦,୪୬୮ | ୨,୫୭,୬୨୭ | ୨,୭୭,୯୯୦ | ୧,୭୭,୦୯୪ | ୯୯,୩୨୯ |
| ଖ) ଭାରତ ପ୍ରସ୍ତୁତ ବିଦେଶୀ ମଦ (ଏଲ୍.ପି.ଏଲ୍.) | ୮,୩୮୭ | ୧୧,୬୫୨ | ୧୮,୭୩୭ | ୫,୭୧୩ | ୨,୯୦୭ |
| ଗ) ବିୟର (ବି.ଏଲ୍.) | ୬,୫୩୬ | ୧୦,୩୯୪ | ୬,୭୧୧ | ୨,୦୬୭ | ୩,୧୧୪ |
| ଘ) ପୋଚ (କି.ଗ୍ରା.) | ୪୯,୯୯,୬୪୫ | ୪୮,୩୬,୮୮୯ | ୪୨,୮୨,୦୪୮ | ୨୭,୫୫,୬୮୧ | ୧୭,୩୧,୬୮୪ |

| କ୍ର. ସଂ. | ଜିଲ୍ଲାର ନାମ | ନଷ୍ଟ ହୋଇଥିବା ଗଞ୍ଜେଇ ଗଛ ସଂଖ୍ୟା | ଆନୁମାନିକ ମୂଲ୍ୟ (ଟଙ୍କାରେ) |
|---|---|---|---|
| ୧. | ଅନୁଗୁଳ | ୭,୩୨,୦୦୦ | ୭୩,୨୦,୦୦,୦୦୦ |
| ୨. | ସମ୍ବଲପୁର | ୧,୮୯,୫୪୩ | ୧,୮୯,୫୪୩,୦୦୦ |
| ୩. | ବୌଦ | ୪୩,୫୦୦ | ୪,୩୫,୦୦,୦୦୦ |
| ୪. | ଗଜପତି | ୨,୩୮,୬୦୦ | ୨୩,୮୬,୦୦,୦୦୦ |
| ୫. | କୋରାପୁଟ | ୨,୩୪୯ | ୨୩,୪୯,୦୦୦ |
| ୬. | କନ୍ଧମାଳ | ୪୬,୮୬୪ | ୪,୬୮,୬୪,୦୦୦ |
| ୭. | ମାଲକାନାଗିରି | ୧୦,୦୨,୦୧୨ | ୧୦,୦୨,୦୧୨,୦୦୦ |
| ୮. | ନୂଆପଡ଼ା | ୫,୦୦,୦୦୦ | ୫୦,୦୦,୦୦,୦୦୦ |
| ୯. | କଟକ | ୨,୪୯,୭୧୦ | ୨୪,୯୭,୧୦,୦୦୦ |
| ୧୦. | ମୟୂରଭଞ୍ଜ | ୯୩ | ୯୩,୦୦୦ |
| ୧୧. | ନୟାଗଡ଼ | ୫,୧୯୮ | ୫୧,୯୮,୦୦୦ |
| ୧୨. | ଝାରସୁଗୁଡ଼ା | ୧ | ୧,୦୦୦ |
| ୧୩. | କେଉଁଝର | ୪୩ | ୪୩,୦୦୦ |
| | **ସର୍ବମୋଟ** | **୩୦,୦୯,୯୧୩** | **୩୦,୦୯,୯୧୩,୦୦୦** |
| | ଇ.ଆଇ. ଓ ଇ.ବି. ୟୁନିଟ୍ | ୧,୧୦,୧୦୦ | ୧୧,୦୧,୦୦,୦୦୦ |
| | | **୩୧,୨୦,୦୧୩** | **୩୧୨,୦୦,୧୩,୦୦୦** |

ଜବତ ଓ ନଷ୍ଟ କରାଯାଇଥିବା ଗଞ୍ଜେଇ ଗଛଗୁଡ଼ିକର ଆନୁମାନିକ ମୂଲ୍ୟ ପ୍ରତିଗଛ ପିଛା ଟ.୧,୦୦୦/- ଧରାଯାଇ ଏହାର ମୂଲ୍ୟ ଆକଳନ କରାଯାଇଅଛି ।

**ଅବୈଧ ମଦ କାରବାର ରୋକିବା ପାଇଁ ପଦକ୍ଷେପ**

ବେଆଇନ ମଦ ରନ୍ଧା ନିୟନ୍ତ୍ରଣ ନ ହେବା ପର୍ଯ୍ୟନ୍ତ ଆଶାନୁରୂପକ ଅବକାରୀ ରାଜସ୍ୱ ଆଦାୟ ହେବା ସମ୍ଭବ ନୁହେଁ । ଅବକାରୀ ଶୁଳ୍କ ପୈଠ ହୋଇନଥିବା ମଦର ପ୍ରସାରକୁ ରୋକିବା ପାଇଁ ଓ ଚିହ୍ନଟ କରିବା ପାଇଁ ପ୍ରତି ମଦ ବୋତଲ/ଦେଶୀ ମଦ ପ୍ୟାକେଟ ଉପରେ ଅନନ୍ୟ କ୍ରମିକ ନମ୍ବର ଥିବା ଅବକାରୀ ଅଠାପଟି ଲଗାଯାଉଅଛି । ଏହାଛଡ଼ା ବେଆଇନ ମଦ ରନ୍ଧା କେନ୍ଦ୍ରମାନଙ୍କରେ ବ୍ୟାପକ ଚଢ଼ାଉ କରିବା ପାଇଁ ପୋଲିସ୍, ଅବକାରୀ ଓ ଜଙ୍ଗଲ ବିଭାଗର ଖ୍ୟାତି ସଂପନ୍ନ ବଛା ବଛା ଅଧିକାରୀମାନଙ୍କୁ ନେଇ ମଲ୍ଟି-ଡିସିପ୍ଲିନାରୀ ସ୍କ୍ୱାର୍ଡ଼ ଗଠନ କରିବାକୁ ଜିଲ୍ଲାପାଳମାନଙ୍କୁ ନିର୍ଦ୍ଦେଶ ଦିଆଯାଇଛି ।

ଚୋରାମଦର ଭୟାବହତା ବିଷୟରେ ସ୍ୱେଚ୍ଛାସେବୀ ସଙ୍ଗଠନ, ସ୍ୱୟଂ ସହାୟକ ଗୋଷ୍ଠୀ ଓ ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କୁ ଅବଗତ କରାଯାଉଛି ।

ବିହାର ଏବଂ ଓଡ଼ିଶା ଅବକାରୀ (ସଂଶୋଧିତ) ଆଇନ ୨୦୦୬ ଅନୁସାରେ ତା.୦୧.୦୬.୨୦୦୬ରିଖଠାରୁ ଚୋରାମଦ

କାରବାର ବିରୁଦ୍ଧରେ ଦଣ୍ଡବିଧାନକୁ ଅଧିକ କଡ଼ାକଡ଼ି କରାଯାଇ ଏହାକୁ ଜାମିନ ବିହୀନ କରାଯାଇଛି ।

ଉପରୋକ୍ତ ସଂଶୋଧିତ ଅବକାରୀ ଆଇନ ୨୦୦୬ ଯୋଗୁଁ ମାଫିଆ ଓ ବେଆଇନ ମଦ ପ୍ରସ୍ତୁତକାରୀମାନଙ୍କ ମନରେ ଭୟସଂଚାର ହେବାର ପରିଲକ୍ଷିତ ହୋଇଛି । ବେଆଇନ ମଦ କାରବାର ଧୀରେ ଧୀରେ କମିବାର ଲାଗିଛି । ସମାଜର ପ୍ରତ୍ୟେକ ସ୍ତରରୁ ଅବକାରୀ କର୍ମଚାରୀମାନଙ୍କ ପ୍ରତି ସହଯୋଗ ବୃଦ୍ଧି ପାଉଛି । ଅବକାରୀ ଆଇନରେ ଅପରାଧ ପାଇଁ ଦଣ୍ଡ ପରିମାଣ ବୃଦ୍ଧି ପାଇଥିବାରୁ ବହୁ ଅଭିଯୁକ୍ତ ବର୍ତ୍ତମାନ ଜେଲ୍ ଭୋଗୁଛନ୍ତି । ଏଥିପାଇଁ ଜନସଚେତନତା ବୃଦ୍ଧି ପାଇଛି । ଅଦାଲତ ମଧ୍ୟ ସହଜରେ ଜାମିନ ମଞ୍ଜୁର କୁରୁନାହାନ୍ତି । ତେଣୁ ଅବକାରୀ ଅପରାଧଗୁଡ଼ିକ କ୍ରମେ କମିଯିବାର ପରିଲକ୍ଷିତ ହେଉଅଛି । ଅବକାରୀ କ୍ଷେତ୍ରୀୟ କର୍ମକର୍ତ୍ତାମାନଙ୍କୁ ଉପଯୁକ୍ତ ତାଲିମ ଦେବାପାଇଁ ଆବଶ୍ୟକୀୟ ମିଳିତ ଉଦ୍ୟମ କରାଯାଉଅଛି, ଯାହାକି ସବୁ ସହଯୋଗୀ ସଂସ୍ଥାମାନଙ୍କର ସହାୟତାରେ ଅବକାରୀ ଆଇନର ଉଲଙ୍ଘନକାରୀଙ୍କୁ ଆଖିଦୃଶିଆ ଦଣ୍ଡବିଧାନ କରାଯାଇପାରିବ ।

ଏନ୍.ଡି.ପି.ଏସ୍. କେଶଗୁଡ଼ିକ ଉପରେ ଅବକାରୀ ଉପନିରୀକ୍ଷକ ଏବଂ ତା'ଠାରୁ ଅଧିକ ପାହ୍ୟାର ଅବକାରୀ ଅଫିସରମାନଙ୍କୁ ଗିରଫ, ଜବତ ଏବଂ ଅନୁସନ୍ଧାନ କରିବା ପାଇଁ କ୍ଷମତା ପ୍ରଦାନ କରାଯାଇଛି ।

**ଅବକାରୀ ବିଭାଗର କମ୍ପ୍ୟୁଟରୀକରଣ**

ଏକାଦଶ ଅର୍ଥ କମିଶନଙ୍କ ଅନୁଦାନରେ ସମସ୍ତ ଜିଲ୍ଲା ଅବକାରୀ କାର୍ଯ୍ୟାଳୟ, ଅବକାରୀ ଡେପୁଟି କମିଶନରମାନଙ୍କର କାର୍ଯ୍ୟାଳୟ, ଅବକାରୀ କମିଶନରଙ୍କ କାର୍ଯ୍ୟାଳୟ ଓ ଅବକାରୀ ବିଭାଗକୁ କମ୍ପ୍ୟୁଟର ଯୋଗାଇ ଦିଆଯାଇଛି । ଏହି ଉଦ୍ଦେଶ୍ୟରେ ୫୦.୦୦୦ ଲକ୍ଷ ଟଙ୍କା ଅନୁଦାନ ମିଳିଥିଲା ଏବଂ ତାହା ଏହି ଉଦ୍ଦେଶ୍ୟରେ ବିନିଯୋଗ ହୋଇଅଛି । ସମସ୍ତ ଜିଲ୍ଲାର ସଦର ମହକୁମାକୁ ରାଜ୍ୟ ମହକୁମା ସହିତ କମ୍ପ୍ୟୁଟର ମାଧ୍ୟମରେ ଯୋଗାଯୋଗ ବ୍ୟବସ୍ଥା କରିବା ପାଇଁ ପଦକ୍ଷେପ ନିଆଯାଉଛି ।

**କର୍ମଚାରୀ ସଂଖ୍ୟା**

ରାଜ୍ୟରେ ଏକ ଅବକାରୀ ନିର୍ଦ୍ଦେଶାଳୟ ରହିଅଛି । ଅବକାରୀ କମିଶନର, ଏହାର ମୁଖ୍ୟ ଅଟନ୍ତି । ତାଙ୍କ ଅଧୀନରେ କଟକ, ବ୍ରହ୍ମପୁର ଓ ସମ୍ବଲପୁରଠାରେ ତିନି ଜଣ ଅବକାରୀ ଉପକମିଶନର ଅଛନ୍ତି । ରାଜ୍ୟ ମଞ୍ଜୁରୀପ୍ରାପ୍ତ ଅବକାରୀ କ୍ଷେତ୍ର କର୍ମଚାରୀଙ୍କ ସଂଖ୍ୟା ନିମ୍ନରେ ଦର୍ଶାଗଲା -

| | | | |
|---|---|---|---|
| ୧. | ଅବକାରୀ ଅଧିକ୍ଷକ | - | ୨୬ |
| ୨. | ଉପଅବକାରୀ ଅଧିକ୍ଷକ | - | ୬ |
| ୩. | ଅବକାରୀ ନିରୀକ୍ଷକ | - | ୭୯ |
| ୪. | ଉପଅବକାରୀ ନିରୀକ୍ଷକ | - | ୨୦୫ |
| ୫. | ସହକାରୀ ଉପ ଅବକାରୀ ନିରୀକ୍ଷକ | - | ୧୮୫ |
| ୬. | କନେଷ୍ଟବଳ | - | ୧,୧୨୭ |

**ବଜେଟ୍**

ଅବକାରୀ ବିଭାଗ ପାଇଁ ୨୦୦୭-୦୮ ଆର୍ଥିକ ବର୍ଷରେ ୧୮୬୪.୧୩ ଲକ୍ଷ ଟଙ୍କା ଅର୍ଥ ବ୍ୟବସ୍ଥା କରାଯାଇଛି । ଏହାବ୍ୟତୀତ ପ୍ରଥମ ଅତିରିକ୍ତ ବଜେଟ୍‌ରେ ୨୯୦.୪୦ ଲକ୍ଷ ଟଙ୍କା ବ୍ୟୟବରାଦ କରାଯାଇଛି । ୨୦୦୭-୦୮ ବର୍ଷ ବଜେଟ୍‌ରେ ଅବକାରୀ ରାଜସ୍ୱର ଆଦାୟ ଲକ୍ଷ୍ୟ ଟ.୫୫୩.୭୦ କୋଟି ଟଙ୍କା ଥିଲା । ଉକ୍ତ ଆର୍ଥିକ ବର୍ଷର ଜାନୁଆରୀ ମାସ ଶେଷସୁଦ୍ଧା ୩୪୮.୨୨ କୋଟି ଅବକାରୀ ରାଜସ୍ୱ ବାବଦକୁ ଆଦାୟ ହୋଇଛି ।

ବିଭିନ୍ନ ପ୍ରକାର ମାମଲିମକଦ୍ଦମା ଯୋଗୁଁ ଅବକାରୀ ଦୋକାନଗୁଡ଼ିକର ନବୀକରଣ ନ ହୋଇପାରିବାରୁ ଏବଂ ବନ୍ଦୋବସ୍ତର ବିଳମ୍ବ ଯୋଗୁଁ ନିର୍ଦ୍ଧାରିତ ଅବକାରୀ ରାଜସ୍ୱ ଆଦାୟରେ ବ୍ୟାଘାତ ଘଟୁଛି । ରାଜ୍ୟରେ ମଦ ଚାହିଦା ଥିବା ଏବଂ ମଦ ଦୋକାନ ନଥିବା ସ୍ଥାନମାନଙ୍କରେ ଉତ୍ତମମାନର ସରକାରୀ ମଦ ଯୋଗାଇ ଦେବାର ବ୍ୟବସ୍ଥା କରାଯାଉଅଛି । ମୁଣ୍ଡ ପିଛା କମ୍ ମଦ ବ୍ୟବହାରକୁ ଦୃଷ୍ଟିରେ ରଖି, ଅବକାରୀ ରାଜସ୍ୱ ଆଦାୟ ବୃଦ୍ଧି କରିବାକୁ ହେଲେ ଅବକାରୀ ଭିତ୍ତିଭୂମିକୁ ଦୃଢ଼ କରିବା ଆବଶ୍ୟକ । ଏହି ଉଦ୍ଦେଶ୍ୟକୁ ଦୃଷ୍ଟିରେ ରଖି ଅବକାରୀ ଭିତ୍ତିଭୂମିର ଉନ୍ନତି କରିବା ପାଇଁ ପ୍ରଚେଷ୍ଟା ଜାରି ରହିଛି ।

**ମଦ ମୃତ୍ୟୁ କମିଶନ**

ତା.୧୬.୦୩.୨୦୦୬ରିଖଠାରୁ ତା.୨୨.୦୩.୨୦୦୬ରିଖ ପର୍ଯ୍ୟନ୍ତ ଗଞ୍ଜାମ ଜିଲ୍ଲାର ରମ୍ଭା ଏବଂ ତା.୨୩.୦୪.୨୦୦୬ ଏବଂ ତା.୨୪.୦୪.୨୦୦୬ରିଖରେ ଉକ୍ତ ଜିଲ୍ଲାରେ ଗୋଳାବନ୍ଧ ଅଞ୍ଚଳରେ ବିଷାକ୍ତ ମଦ୍ୟପାନ କରି ମୃତ୍ୟୁବରଣ କରିଥିବା ୨୯ ଜଣ ବ୍ୟକ୍ତିଙ୍କ ମଦ ମୃତ୍ୟୁ ଅଭିଯୋଗର ତଦନ୍ତ ପାଇଁ ସରକାର ଅବକାରୀ ବିଭାଗର ନୋଟିଫିକେସନ୍ ସଂଖ୍ୟା ୨୫୪୪ ତା.୦୪.୦୫.୨୦୦୬ରିଖରେ ମାନ୍ୟବର ଅବସରପ୍ରାପ୍ତ ନ୍ୟାୟମୂର୍ତ୍ତି ଶ୍ରୀ ପ୍ରସନ୍ନ କୁମାର ପାତ୍ରଙ୍କୁ ଜଣିକିଆ ତଦନ୍ତ କମିଶନ ଭାବେ ନିଯୁକ୍ତି ଦେଇଛନ୍ତି । ଇତିମଧ୍ୟରେ ତା.୩୧.୦୩.୨୦୦୭ରିଖ ସୁଦ୍ଧା କମିଶନଙ୍କ ଇଜଲାସରେ ସମୁଦାୟ ୩୪ ଜଣ ସାକ୍ଷ୍ୟ ପ୍ରଦାନ କରିସାରିଛନ୍ତି । ତଦନ୍ତ କମିଶନଙ୍କ କାର୍ଯ୍ୟକାଳକୁ ତା.୦୫.୦୩.୦୮ରିଖ ପର୍ଯ୍ୟନ୍ତ ବର୍ଦ୍ଧିତ କରାଯାଇଛି ।

# ଓଡ଼ିଶାର ନୂତନ ଅବକାରୀ ଆଇନ : ଏକ ଯୁଗାନ୍ତକାରୀ ପଦକ୍ଷେପ

ଗୁରୁକଲ୍ୟାଣ ମହାପାତ୍ର

**ସେ**ତେବେଳେ ବିହାର ଓ ଓଡ଼ିଶା ରାଜ୍ୟ ମିଶି ଏକତ୍ର ଥିଲା । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହୋଇ ନଥିଲା । ୧୯୧୫ ମସିହାରେ ବିହାର-ଓଡ଼ିଶା ଅବକାରୀ ଆଇନ ପ୍ରଣୀତ ହୋଇଥିଲା । ମାତ୍ର ଏହି ପୁରୁଣା କାଳିଆ ଆଇନର ସଂଶୋଧନ ଓ ପରିବର୍ତ୍ତନ ପାଇଁ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବାର ୭୨ ବର୍ଷ ପରେ ଏହି ସରକାରଙ୍କ ଅମଳରେ ଏହା ସମ୍ଭବ ହୋଇଛି । ଗତ ବିଧାନସଭା ଅଧିବେଶନରେ ଅର୍ଥାତ୍ ତା.୨୭.୦୮.୦୮ରିଖରେ ସେହି ନୂତନ ଅବକାରୀ ବିଧେୟକଟି ପାରିତ ହୋଇ ଗୃହର ଅନୁମୋଦନ ଲାଭ କରିଥିଲା । ଅଥଚ ଓଡ଼ିଶା ପାଇଁ ରାଜ୍ୟ ସରକାରଙ୍କର ତାହା ଥିଲା ଏକ ଯୁଗାନ୍ତକାରୀ ପଦକ୍ଷେପ ।

ଉଲ୍ଲେଖନୀୟ ଯେ ପ୍ରାୟ ତିନିବର୍ଷ ତଳେ ୨୦୦୫ ଅପ୍ରେଲ ୫ ତାରିଖରେ ଏ ସଂକ୍ରାନ୍ତୀୟ ବିଧେୟକ ବା ବିଲ୍‌ଟି ବିଧାନସଭାରେ ଆଗତ କରାଯିବାର ପ୍ରାୟ ଚାରିମାସ ପରେ ଏହାର ଗୁରୁତ୍ୱ ଦୃଷ୍ଟିରୁ ବିଲ୍‌ଟିକୁ ତା.୧୧.୦୮.୦୫ରିଖରେ ବିଧାନସଭାର ଯାଞ୍ଚ କମିଟିକୁ ପଠାଯାଇଥିଲା, ମାତ୍ର ଏହି କମିଟି କୌଣସି ରିପୋର୍ଟ ଦେଇ ନପାରିବାରୁ ଏହାର ସମୟସୀମାକୁ ବୃଦ୍ଧି କରାଯାଇଥିଲା । ପରେ ବିଧାନସଭାରେ ଗତ ନଭେମ୍ବର ୨୯ ତାରିଖ ୨୦୦୭ରେ ଗୃହୀତ ହୋଇଥିବା ଏକ ପ୍ରସ୍ତାବ ଅନୁଯାୟୀ ତ୍ରୟୋଦଶତମ ବିଧାନସଭା ଅଧିବେଶନର ଶେଷ ସପ୍ତାହରେ ଯାଞ୍ଚ କମିଟି ତା'ର ରିପୋର୍ଟ ଉପସ୍ଥାପନ କରିବା ପାଇଁ କୁହାଯାଇଥିଲା । ଗତ ୨୦୦୬ ଜୁଲାଇ ୧୭ ତାରିଖରେ ଏହି କମିଟି ନେଇଥିବା ନିଷ୍ପତ୍ତି ଅନୁଯାୟୀ ତାମିଲନାଡୁ, ଗୋଆ ଓ ମହାରାଷ୍ଟ୍ର ପ୍ରଭୃତି ରାଜ୍ୟକୁ ଏହି କମିଟି ଗସ୍ତ କରି ସେସବୁ ରାଜ୍ୟର ଅବକାରୀ ଆଇନ୍ ସଂକ୍ରାନ୍ତରେ ଅନୁଧ୍ୟାନ କରିଥିଲେ । ଭାରତ ସରକାରଙ୍କର ବିଭିନ୍ନ ଅବକାରୀ ଆଇନକୁ ମଧ୍ୟ ଦୃଷ୍ଟିରେ ରଖାଯାଇ ଏହି କମିଟି ତାଙ୍କର ରିପୋର୍ଟ ପ୍ରଦାନ କରିଥିଲେ ।

ଓଡ଼ିଶା ବିଧାନସଭାରେ ଗତ ଅଗଷ୍ଟ ୨୭ ତାରିଖ (୨୦୦୮)ରେ ଓଡ଼ିଶା ଅବକାରୀ ବିଲ୍-୨୦୦୮କୁ ଅବକାରୀ ମନ୍ତ୍ରୀ ଶ୍ରୀ ଦେବୀପ୍ରସାଦ ମିଶ୍ର ପାରିତ ହେବା ଲାଗି ସେଦିନ ବିଧାନସଭାରେ ଆଗତ କରିଥିଲେ ଓ ତାହା ଗୃହର ଅନୁମୋଦନ ଲାଭ କରି ଆଇନରେ ପରିଣତ ହୋଇଥିଲା ।

ପ୍ରକୃତରେ ୯୩ ବର୍ଷ ପରେ ରାଜ୍ୟରେ ନୂତନ ଅବକାରୀ ଆଇନ ପ୍ରଣୀତ ହୋଇଥିଲା । କାରଣ 'ବିହାର ଓଡ଼ିଶା ଅବକାରୀ ଆଇନ'ଟି ୧୯୧୫ରେ ପ୍ରଣୀତ ହୋଇ ଏ ପର୍ଯ୍ୟନ୍ତ ରାଜ୍ୟରେ କାର୍ଯ୍ୟକାରୀ ହୋଇ ଆସୁଥିଲା ।

ତେବେ ଏହି ପରିବର୍ତ୍ତିତ ଆଇନରେ ନୂତନ କରି ଅବକାରୀ ଥାନା ଓ ସ୍ୱତନ୍ତ୍ର କୋର୍ଟ ଗଠନ କରାଯିବା, ଚୋରା ମଦ ବେପାରୀଙ୍କ ସଂପତ୍ତି ବାଜ୍ୟାପ୍ତି କରାଯିବା ସହିତ ଚୋରା ମଦ ବେପାରରେ ଜଡ଼ିତ ଥିବା ଅପରାଧୀମାନଙ୍କୁ ଆଜୀବନ କାରାଦଣ୍ଡାଦେଶ ମିଳିବା ପ୍ରଭୃତି ବହୁ ଗୁରୁତ୍ୱପୂର୍ଣ୍ଣ ବ୍ୟବସ୍ଥା ରହିଛି ବୋଲି ମନ୍ତ୍ରୀ ଶ୍ରୀ ମିଶ୍ର ସେଦିନ ଗୃହରେ ପ୍ରକାଶ କରିଥିଲେ ।

ପ୍ରକୃତରେ ରାଜ୍ୟରେ ବିଷାକ୍ତ ମଦ ପାନ କରି ଅନେକ ମୃତ୍ୟୁବରଣ କରିଥିବା ଓ ଆଉ କେତେକ ଅକର୍ମଣ୍ୟ ହୋଇ ପଡ଼ିଥିବା ପରି ଦୁର୍ଭାଗ୍ୟଜନକ ପରିସ୍ଥିତିରୁ ରକ୍ଷା ପାଇବା ଦିଗରେ ଏପରି ଆଇନ ଯେ ସହାୟକ ହୋଇପାରିବ, ଏଥିରେ ସନ୍ଦେହ ନାହିଁ ।

ଅବକାରୀ ଅପରାଧଗୁଡ଼ିକର ସଫଳ ନିୟନ୍ତ୍ରଣ ସକାଶେ ପୁରୁଣା ୧୯୧୫ର 'ବିହାର ଓଡ଼ିଶା ଅବକାରୀ ଆଇନ'ରେ ଥିବା ଧାରା ୪୭, ୪୯, ୫୨, ୫୩, ୫୪, ୫୫, ୫୬, ୫୭, ୬୮ ଓ ୮୫ ପ୍ରଭୃତିର ସଂଶୋଧନ ୨୦୦୬ରେ କରାଯାଇଥିଲା । ମାତ୍ର ପରିବର୍ତ୍ତିତ ପରିସ୍ଥିତିରେ ଭାରତ ସରକାରଙ୍କ ଖାଦ୍ୟ ପ୍ରକ୍ରିୟାକରଣ ଓ ଶିଳ୍ପ ମନ୍ତ୍ରାଳୟ ଆଦର୍ଶ ଅବକାରୀ ଆଇନ/ଟିକସ, ଆଇନ/ନିୟମାବଳୀ, ୨୦୦୫ ପ୍ରଭୃତିକୁ ଦୃଷ୍ଟିରେ ରଖି ପୁରାତନ ଆଇନର ପରିବର୍ତ୍ତନ କରାଯାଇ ନୂତନ ଆଇନର ପ୍ରବର୍ତ୍ତନ କରାଯାଇଛି ।

ତେବେ ୨୦୦୫ର ଓଡ଼ିଶା ଅବକାରୀ ବିଲ୍ (ଯାହାକୁ ଯାଞ୍ଚ କମିଟି ସଂଶୋଧନ କରିଥିଲା) ସେଗୁଡ଼ିକର ମୁଖ୍ୟ ଅଂଶଗୁଡ଼ିକ ହେଲା -

- ଧାରା-୨ରେ ଅବକାରୀ ସଂକ୍ରାନ୍ତୀୟ ବୈଷୟିକ ଦିଗ ସଂପର୍କରେ ସଂଜ୍ଞା ନିରୂପଣ କରାଯିବା ।
- ଧାରା-୫ରେ ଅବକାରୀ କମିଶନରଙ୍କ କ୍ଷମତା ଓ କାର୍ଯ୍ୟ ପରିସର ବିଷୟରେ ସ୍ପଷ୍ଟ ଭାବେ ଉଲ୍ଲେଖ ରହିଛି ।
- ଧାରା-୧୯ରେ ଉଭୟ ଦେଶୀ ଓ ବିଦେଶୀ ମଦର ପାଇକାରୀ ବିକ୍ରୟ କାରବାର ଲାଗି ଓଡ଼ିଶା ରାଜ୍ୟ ପାନୀୟ ନିଗମକୁ କ୍ଷମତା ଓ ଏକଚାଟିଆ କାରବାରର ସୁଯୋଗ ପ୍ରଦାନ

କରାଯାଇଛି । ମାତ୍ର ରାଜ୍ୟ ସରକାର ଅନ୍ୟ କୌଣସି ଏଜେନ୍ସିକୁ ତାହା ମଧ୍ୟ ଦେବାପାଇଁ କ୍ଷମତାପ୍ରାପ୍ତ ।

- ଧାରା-୨୧ରେ ମଦ ପ୍ରସ୍ତୁତି ଓ ଖୁଚୁରା କାରବାର ଲାଗି ଓଡ଼ିଶା ରାଜ୍ୟ ପାନୀୟ ନିଗମ ଓ ଅନ୍ୟାନ୍ୟ ନିଗମ ବା ଏଜେନ୍ସିମାନଙ୍କୁ କ୍ଷମତା ଦିଆଯାଇଛି ।
- ଧାରା-୨୮ରେ ଭିନ୍ନ ଭିନ୍ନ ଦେୟ ପ୍ରଣାଳୀର ବିଲୋପ ସାଧନ କରି ଅବକାରୀ ଶୁଳ୍କ ଓ ଦେୟ ବାବଦରେ ଗୋଟିଏ ପ୍ରକାର ମୂଲ୍ୟ ପ୍ରଚଳନ କରାଯିବାକୁ ସ୍ପଷ୍ଟ ଭାବେ କୁହାଯାଇଛି ।
- ଧାରା-୩୦ରେ ପ୍ରତିଟି ମଦ ବୋତଲ ଉପରେ ମୂଲ୍ୟର ମୁଦ୍ରଣକୁ ବାଧ୍ୟତାମୂଳକ ରଖାଯାଇଛି ।
- ଧାରା-୫୨-୭୫ରେ ଅବକାରୀ ଅପରାଧର ଦଣ୍ଡବିଧାନକୁ ଖୁବ୍ କଡ଼ାକଡ଼ି କରାଯାଇ, ଅପରାଧକୁ ଧର୍ତ୍ତବ୍ୟ ଓ ଜାମିନବିହୀନ କରାଯାଇଛି । ମଦମୃତ୍ୟୁ ଘଟଣାରେ ଆଜୀବନ କାରାଦଣ୍ଡର ବ୍ୟବସ୍ଥା ରହିଛି ।
- ଧାରା-୮୯ରେ ଅଦାଲତଙ୍କ ଆଦେଶ ବଳରେ ଅପରାଧର ଶିକାର ହୋଇଥିବା ବ୍ୟକ୍ତିଙ୍କୁ ଅପରାଧୀଠାରୁ ଆଦାୟ ହୋଇଥିବା ଅର୍ଥରେ କ୍ଷତିପୂରଣ ଦେବାର ବ୍ୟବସ୍ଥା ହୋଇଛି ।
- ଧାରା-୭୧ ଅନୁଯାୟୀ ଜବତ ହୋଇଥିବା ସଂପତ୍ତିର ବାଜ୍ୟାପ୍ତିକରଣକୁ ସରଳ କରାଯାଇଛି ।
- ଧାରା-୬୭ ଅନୁଯାୟୀ ଯେଉଁ ଅବକାରୀ ଅଧିକାରୀମାନେ ବିବାଦୀୟ ହୋଇ କ୍ଷମତାର ଅପଚୟ କରିବେ ସେମାନଙ୍କ ପାଇଁ ଦଣ୍ଡବିଧାନ କରାଯାଇଛି ।
- ଅବକାରୀ ଥାନାର ଧାରା-୮୨ ଓ ସ୍ୱତନ୍ତ୍ର ଅଦାଲତର ଧାରା-୮୭ ବଳରେ ପୋଲିସ ଥାନା ପରି ଅବକାରୀ ଥାନାମାନ ପ୍ରତିଷ୍ଠା କରାଯିବା ସଂଗେସଂଗେ ସ୍ୱତନ୍ତ୍ର ଅଦାଲତମାନଙ୍କରେ ବିଚାରାଧୀନ ମାମଲାଗୁଡ଼ିକର ବିଚାର ହେବ ।
- ଧାରା-୮୪ ଅନୁଯାୟୀ ଅବକାରୀ ଅଧିକାରୀମାନଙ୍କୁ ଅପରାଧ ଆଚରଣ ବିଧି ୧୯୭୩ ଆଇନ ବଳରେ ପୁଲିସ୍ ଅଧିକାରୀଙ୍କ ପରି କ୍ଷମତା ପ୍ରଦାନ କରାଯାଇଛି ।
- ଧାରା-୯୦ ଅନୁଯାୟୀ ରାଜ୍ୟ ସରକାର, କେତେକ କ୍ଷେତ୍ରରେ ରାଜସ୍ୱ ପର୍ଷଦ ସଦସ୍ୟଙ୍କ କ୍ଷମତାକୁ ପ୍ରତ୍ୟାହାର କରି ସମସ୍ତ ନିୟମାବଳୀ ପ୍ରଣୟନ କରି ପାରିବେ ।
- ଧାରା-୯୩ ଅନୁଯାୟୀ ରାଜ୍ୟର ସମସ୍ତ ବା କେତେକାଞ୍ଚଳରେ ନିଶା ନିବାରଣ ଆଇନକୁ କାର୍ଯ୍ୟକାରୀ କରାଯିବା ଦିଗରେ ପଦକ୍ଷେପ ନେବା ଲାଗି ବ୍ୟବସ୍ଥା ରହିଛି ।
- ଧାରା-୯୫ ଅନୁଯାୟୀ ଅବକାରୀ ରାଜସ୍ୱ ଆଦାୟ ପଦ୍ଧତିକୁ କଡ଼ାକଡ଼ି କରାଯିବାର ବ୍ୟବସ୍ଥା ରହିଛି ।
- ଧାରା-୯୯ ଅନୁଯାୟୀ ଅପରାଧୀମାନଙ୍କର ବେଆଇନ୍ ସମ୍ପତ୍ତିକୁ ବାଜ୍ୟାପ୍ତି କରାଯିବାର ବ୍ୟବସ୍ଥା ରହିଛି ।

ଚୋରା ମଦ ବେପାର ରୋକିବା ପାଇଁ ଯେ ଏହି ଆଇନ ଯୁଗାନ୍ତକାରୀ, ଏଥିରେ ସନ୍ଦେହ ନାହିଁ ।

ଡି-୧୦/୫
ୟୁନିଟ୍-୮, ଭୁବନେଶ୍ୱର-୧୨

---



# ମାଗୋ ତୁମେ ସଂପର୍କର ସେତୁ

ମିନତୀ ଷଡ଼ଙ୍ଗୀ

ଜନନୀ ଗୋ ତୁମରି ସ୍ୱାଗତେ
ସ୍ୱଚ୍ଛନୀର ତଟିନୀର ବକ୍ଷେ
ପରିମଳ ତଡ଼ାଗର ଦେହ ।
କେଦାରରେ ସବୁଜ ସୁଷମା
ପଥପ୍ରାନ୍ତ ଦିଶଇ ରୁଚିର
କାଶତଣ୍ଡୀ ଶେଫାଳୀର ହସେ
ପରିଚୟ ପ୍ରାପତ ଋତୁର ।
ପକ୍ଷୀକୁଳ ମଧୁର କୁଜନେ
ବର୍ଷା ଦୁଃଖ ହୁଅଇ ପାଶୋର
ପୁଲକିତ ପାଦପଙ୍କ ଚିତ୍ତ
ନବ କଳି, ପର୍ଣ୍ଣେ ପୂର୍ଣ୍ଣ କୋଳ ।

ବିହାୟସ ହୁଏ ବିମୋହିତ
ବସୁମାତା ଲାବଣ୍ୟ ନିରେଖି
ସଜାଏ ସେ ଆପଣାର ତନୁ
ଶୁଭ୍ରଘନେ ଶ୍ରଦ୍ଧା ତାର ମାଖି ।
ଜଳେ କଞ୍ଜ କୁମୁଦର ଶୋଭା
ସ୍ଥଳେ ନାନାବର୍ଣ୍ଣ ପୁଷ୍ପ ଦ୍ୟୁତି
ନୀଳନଭେ ତାରକାଙ୍କ ଜ୍ୟୋତି
ଅନୁପମ ଶରତର କାନ୍ତି ।
ତୁମ ପାଇଁ ଲଳିତ ସମ୍ଭାର
ସ୍ନେହ ତୁମ ଅମୃତର ଧାରା
ମାତା ତୁମେ ଜଗତ ଜନନୀ

ଅବତରୀ ଆସବାରେ ଧରା ।
ବରାଭୟେ କରାଅ ଆଶ୍ୱସ୍ତ
ସଂତାପିତ ଜଗତର ପ୍ରାଣ
ଶଙ୍କାକୁଳ ଜନତା ହୃଦୟ
ମୈତ୍ରୀ ଭାବ ହୋଇଛି ମଳିନ ।
ମାଗୋ ତୁମେ ସଂପର୍କର ସେତୁ
ବାନ୍ଧି ସୃଷ୍ଟି ଏକଇ ସୂତ୍ରରେ
ପ୍ରାଣେ ପ୍ରାଣେ ଭରିଦିଅ ଶାନ୍ତି
ପ୍ରଣିପାତ ଜଣାଏ ପୟରେ ।

ଏ.ଏଲ୍.-୬୨
ଭୀମଟାଙ୍ଗୀ, ଭୁବନେଶ୍ୱର-୨



# ମହିଷାସୁର ବଧ

ସାରଳା ଦାସ

ଏଥୁ ଅନନ୍ତରେ ଅସୁର କୁଳ ଧଂସନ
ମହିଷାଂସୁରଙ୍କୁ କହିଲେ ବହନ ।
ସ୍ୱାମି କାଳ ବିମୋଚନ ନାଶ ଗଲାକ ଅଖଳେ
ସ୍ତିରୀବୃନ୍ଦ ସେ ମାଇଲେ କୁତୁହଳେ ।
ଶୁଣି ମୃକ୍ଷାଗତ ସେ ମହିଷାସୁର ରାଏ
ଆସ୍ତାନୁ ପଡ଼ିଲା ରାଜା ନିର୍ଘାତ ଶର ପ୍ରାଏ ।
କୋଳ କରି ଧରିଲା ସେ ଦାନବ ଧୂମ୍ରଲୋଚନ
ମୁଖରେ ଜଳ ସିଞ୍ଚିଲେକ ହେଲା ଚେବନ !

ଅନେକ କ୍ରୋଧ କରଇ ସେ ମହିଷାସୁର ନୃପତି
ଆପଣାର ଶରୀର ଆପଣେ ବିକୋଡ଼ି ।
ନିଲଜ ଆତ୍ମା ମୋର ମିଳାଇଣ ଯାଉ
ଏ କଷ୍ଟ ଦେଖିବାକୁ କିମ୍ପା ରହି ଥାଉ ।
ବାବୁ କାଳ ବିମୋଚନରେ ପ୍ରାଣର ମୋର ବନ୍ଧୁ
ଜେନାବତୀ ନଗ୍ରକୁ ମୋର ଉଦିତ ପୂର୍ଣ୍ଣ ଇନ୍ଦୁ ।
ଦେହ କିମ୍ପା ରହିଛି ତୋହୋର ଅଭାବେ
ନିଶ୍ଚଏ ଜାଣିଲି ମୋର ମରଣ ପ୍ରାପତ ଏବେ ।

ଅଥବା ଯଦ୍ୟପି ବ୍ରତିବି ନିଲଜ
କାହାକୁ ଘେନି ମୁଇଁ କରିବଇଁ ରାଜ ।
ଆହୋ ଧୂମ୍ରଲୋଚନ ତ ସିନ୍ଧୋ ଉପସିନ୍ଧୋ ତିନି
ସମଏକ ପଳାଅ ଯା ବ୍ରତ ଦେହ ଘେନି ।
ଏ ଘାନ୍ତି ରଣ ଯୁଧ୍ୟ କରିବି ମୁହି ଏକା
ଛାଡ଼ିଲି ମାୟା ମୋହ ମରଣକୁ ନିଶଙ୍କା ।
ଆହୋ ଏଡ଼େ ଏଡ଼େ ଯୋଦ୍ଧାଏ ଥିଲେ ଭୁତ ଭବିଷ ଗ୍ୟାଂତା
ଏତେ ବଡ଼ ମନ୍ଦ ବୋଲି  କେହି ନୋହିଲେ କହନ୍ତା ।

ଦେବ ଦାନବ ମୁଁ ଜାଣିଲି ବାହୁବଳେ
ଦଇବକୁ ହାରିଲି ମୁଁ କର୍ମର ଅବଳେ ।
ଏହ୍ନେକ ଛନ୍ଦ ସେ ଦେବତାଙ୍କର ଅଛି
କେହି ମୋତେ ଜାଣି ନ କହିଲା ନ ଜାଣିଲି କିଛି ।
ଅପ୍ରାଭବ ନ ଚେତିଲି ମୁଁ ସେନାପତିଙ୍କର ଦର୍ପେ
ଏଥକୁ ଦଇବ ସେ ବିହିଲା ଅନୁକର୍ମେ ।

ମୁହିଁ ସେ ସବୁଙ୍କର ଦେଖିଲି ମରଣ
ଜୀବ ଧରିଅଛି ମୋହୋର ନିଲଜ ପଣ ।

କାନ୍ଦଇ ମହିଷାସୁର ଶ୍ୟରୀର ବଡ଼ ବ୍ୟଥା
ଛତ୍ରୀ କୁଳେ ସେ ଦୃସହ କର୍ମ କଥା ।
ଅଥବା ଏଡ଼େ ସଂପଦ ଯେ ଗଲା ମୋର ନାଶ
ସାମାନ୍ୟେ ହାରିଲେ ମୋତେ ନାହିଁ ଯଶ ଅପଯଶ ।
ପାମରୀ ଦୁରାନ୍ତରୀ ସ୍ତିରୀ ମାତ୍ର ଛାର
ହୀନ କର୍ମମାନେ ରହିଲେ ଏଡ଼େ ସମ୍ପଦ ମୋହୋର ।
କେ ବୋଲଇ ଅପାର କେ ବୋଲଇ ଏକା
ସ୍ତିରୀ ହୋଇ ପୁରୁଷକୁ କେମନ୍ତେ ନାହିଁ ଶଙ୍କା ।

ଆହୋ ବିଷ୍ଣୁ ଯେ ମୋହୋର ଅଟଇ ବଇରୀ
ତାହାର ଯୋଗେ କିମ୍ପା ନ ଗଲା ମୋର ଶିରୀ ।
ବିଷ୍ଣୁର ହସ୍ତେ ଯେବେ ହୁଅନ୍ତି ମୁହିଂ ବଧ
କାଳଦଣ୍ଡ କୋହେ ନୁହନ୍ତି ନା ବିରୋଧ ।
ମୁହିଂ ଯେବେ ବିଷ୍ଣୁଙ୍କୁ ପାରନ୍ତି ହାଦେ ଜିଣି
ତ୍ରୈଲୋକେ ଉଠନ୍ତା ମୋତେ ସାଧୁ ସାଧୁ ବାଣୀ ।
ପୁରୁଷେଣ ବଧ୍ୟ ବୋଲି ମାଗନ୍ତି ଯେବେ ପୂର୍ବେ
ବିଷ୍ଣୁର ଚକ୍ର ହାଦେ ପାବନ୍ତି ନା ଏବେ ।

ଏବେ ସେ ନିକଟ ହୋଇଲା ମୋର ମୃତ୍ୟୁ
ଅଦୋଷେ ନାଶ ଯାଉଛି ଏ ଦେବଙ୍କର ହେତୁ ।
କହୁଂ କହୁଂ କୋପିତ ସେ ଦାନେବ କୁଳ ଷଣ୍ଢ
ଧବଳ ପର୍ବତ ଉପରେ ନେଇ ପ୍ରହାରିଲା ଖଣ୍ଡା ।
ଆହୋ ପରୀକ୍ଷ ନଉ ଯୋଜନ ଯେବଣ ଧଉଳି ଶୟଳ
ମଏଷାଂସୁର ଖଡ଼ଗ ପଡ଼ନ୍ତେ ହୋଇଲା ବେନି ଫାଳ ।
ଆକାଶେ ଦେଖିଲେ ସମସ୍ତ ବୃନ୍ଦା ଅର୍କେ
ସାଧୁରେ ମଏଷାଂ ବୋଲି ପ୍ରଶଂସା କଲେ ଦେବ ଲୋକେ ।

ସେହି ଖଡ଼ଗ ଧରି ବୁଲାଇ ବାହିଲା ଆକାଶକୁ
ଆଜ ସେ ମାରିବି ସମସ୍ତ ଦେବତାଙ୍କୁ ।
ବ୍ରହ୍ମାର ମୁଣ୍ଡ ମୋଡ଼ିବି ଏହିକ୍ଷଣି
ଏକ ଜଣକେ ନ ଥୋଇବି ବିହନ୍ତାପଣ ପୁଣି ।

ଆହୋ ପରୀକ୍ଷ ଶୂନ୍ୟ ଭୁବନେ ଯହୁଁ ମଏଷାଂସୁର ରୂପ ଦେଖି
ଦେବତାଏ ପଳାଇଲେ ଗଗନ ଉପେଖି ।
କେଶ ବାସ ଅସମ୍ଭାଳ ହୋଇଣ ବିବୁଧେ
ସମସ୍ତେ ଶରଣ ପଶିଲେ ଯାଇଁ ଦୃଗାର ସନ୍ନିଧେ ।

ଦେବୀଙ୍କର କଷ୍ଟ ଦେଖି ସେ ଧାଇଁଲେ ନାରାୟଣୀ
ଆରେ ଆରେ ବୋଲି ଧାଇଁଲେ ଉଚ୍ଚସ୍ୱରେ ବାଣୀ ।
ଅବିଚ୍ଛନ୍ନେ ବାଣ ଯେ ବିନ୍ଧିଲା ଉପର
ଆକାଶ ମଣ୍ଡଳ ଯାକ କଲା ହାଦେ ଶର ।
ଅଶୀ ଶତ ଯୋଜନ ନବ ଶତ ଯୋଜନ ବହଳ
ଏତେ ଆକ୍ରାନ୍ତି କଲା ଶର ପୀଡ଼ା ଆକାଶ ମଣ୍ଡଳ ।
ଯାଇଁ ନ ପାଇଣ ଭାଳଇ ଦ୍ରପିଷ୍ଟ
ରୁନ୍ଧିତ ହୋଇଲା ସେ ସ୍ୱର୍ଗପୁର ବାଟ ।

ଅନ୍ଧେକ ମନ୍ତ୍ରୀଙ୍କି କହିଲା କରିବା କେବଣ ବୁଧି
ସ୍ୱର୍ଗକୁ ବାଟ ନାହିଁ ତ ହୋଇଲା ସର୍ବ ରୁନ୍ଧି ।
ଅନ୍ଧେକ ବୋଇଲା ହୋ ତୁ କହିଲେ ନ ଜାଣି
ସ୍ତିରୀ ଲିଙ୍ଗ ବୋଲି ସେ କହୁ ପୁଣି ପୁଣି ।
ତୁ ଯେ ବୋଇଲୁ ହୋ ଏ ନୋହଇ ବିଷ୍ଣୁ ନାଥେ
ପ୍ରତକ୍ଷେ ଦେଖସି ହାଦେ ଶଙ୍ଖ ଚକ୍ର ଗଦା ଗାଣ୍ଡିବ ଧନୁ ହସ୍ତେ ।
ଏହା ବିଚାରି ସେ ବିସ୍ମଏ ମନେ ପୁଣି
ପ୍ରସନେ ବିଶ୍ୱନାଥ ଅବତାର ହାଦେ ଦେଖି ନାରାୟଣୀ ।

ଏହ୍ନେକ ବିଚାରନ୍ତେ ହୋଇଲାକ ରାତି
ବାହୁଡ଼ଇ ମଏଷାଂସୁର ଆକାଶରୁ ଧାତି ।
ଶଉଚବନ୍ତ ହୋଇ ସେ ପିତାଙ୍କୁ ଲଏ କରଇ
ଗିରିବର ସାମାନ୍ୟେ ସେ ମଇଁଷି ରୂପ ଧରଇ ।
ରତ୍ନଗିରି ଶିଖରେ ବିଜୟେ ମାହେଶ୍ୱରୀ
ଯୋଗ୍ନୀ ବୃନ୍ଦ ଘେନି ସେ ମଦରା ପାନ କରି ।
ମଇଁଷି ରୂପ ଧରି ସେ ଦାନେବ ମହାବଳୀ
କଣୟ ଗିରି ପର୍ବତ ସେ ପକାଇଲା ଖୋଳି ।

ଶତେ ଯୋଜନ ପୋତା ସେ ବେନି ଯୋଜନା ସ୍ଥଳୀ
ଉଚ୍ଚର୍ଗ ବେନି ଶତ ଯୋଜନ ହସ୍ତ ଅଗୁଳି ।

କେଞ୍ଚିକରି ମହିଷାସୁର ସେ ପର୍ବତ ଉପାଡ଼ଇ
ତିଳ ମନ୍ଦା ପ୍ରାଏ କରି ସିଙ୍ଗେଣ ଘୋଟଇ ।
ସାତ ପଦ୍ମ ପନ୍ଦର ମେବକ୍ଷ କୋଟି କାନ୍ତାନୀ ଯୋଗ୍ନୀ
ଦୃଗାର ଛାମୁରେ ଖେଡ଼ କରନ୍ତି ଏତେକ ବଳ ଘେନି ।
ଦେଖ ହୋ ବଳବନ୍ତା ସେ ଦାନବ କୁଳ ରାଏ
ପର୍ବତ ସିଙ୍ଗର ମୂଳେ ଧରିଛି ମୃତିକା ଖଣ୍ଡ ପ୍ରାଏ ।
ଭୂମିରେ ହାଣିଲେ ଯେହ୍ନେ ସିଙ୍ଗରେ ଲାଗଇ ମାଟି
ସେହିମତି ପ୍ରାଏ ହୋଇଲା ରତ୍ନଗିରି ପର୍ବତ ଗୋଟି ।
କରପତ୍ର ଯୋଡ଼ି ଯେ କହଇ ମାରକମା
ମହିଷାଂସୁର ଅନ୍ଧାରି ବିଜେ କରି ଅଇଲା ଗୋ ମା ।

ଉଠିଲେ ଦେବୀମାନେ ଡାକିଲେ ବୀର ଡାକେ
ବ୍ରହ୍ମାଣ୍ଡ ଉଛୁଳିଲା ସେ ଦେବୀମାନଙ୍କର ହାକେ ।
ଅନ୍ତରୀକ୍ଷେ ମଏଷାଂସୁର ପର୍ବତ ଘେନି ଆସଇ ବେଗି
ରତ୍ନଗିରି ବେଗେ ପକାଇଲାକ ଫିଙ୍ଗି ।
ଆହୋ ମରହଟକା ବଳ ଯେ ପଶ୍ଚିମ ସଉରାଷ୍ଟ୍ରେ
ସେ ପର୍ବତ ପଡ଼ିଲା ଅସ୍କନ୍ଦ ବନର ତଟେ ।
ଆହୋ ପରୀକ୍ଷ ନବ ସହସ୍ର ଯୋଜନ ଅନ୍ତରେ
ରତ୍ନଗିରି ପର୍ବତ ପଡ଼ିଲା ଯାଇ ଏତେକ ଦୂରେ ।
ନମସ୍ତେ କାନ୍ତାୟନୀ ଗୋ ଅନାଦୀ ପରମ ଯୋଗୀ
ଭାରା ନିବାରଣ ଅର୍ଥେ ମହୁମାଂସ ଭୋଗୀ ।
ଆପାଦର କାଳେ ତୁହି ସେ ହାଦେ ରଖୁ
ଅପାର ଅରଷ୍ଟି ନାଶ କରି ଦୃଭାର ବଳ ଭଷୁ ।

ପରମ ମହେଶ୍ୱରୀ ହୋଇ ସର୍ବଲୋକ କରୁ ଚିନ୍ତା
ବୁଡ଼ନ୍ତେ ମହାଭାରା ଗୋ ତୁହି ସେ ଉଧରନ୍ତା ।
ଯାହାକୁ ଲଏ ଗୋ କରନ୍ତି ବେଦ ବ୍ରହ୍ମା
ମୁହିଁ କିସ ବର୍ଣ୍ଣିବି ଗୋ ତୋହର ମହିମା ।
ଦୃଗାକୁ ଶତ ସହସ୍ର ପ୍ରଣମ୍ୟ ମୋର ନିତ୍ୟେ
ବଦନ୍ତି ଶୁଦ୍ରମୁନି ସାରୋଳ ଦାସ ଭାବନ୍ତି ଦୃଢ଼ ଚିତ୍ତେ ।

କପିଳ ପ୍ରସାଦ
ଭୁବନେଶ୍ୱର

(ଓଡ଼ିଆ ଭାଷାରେ ସାରଳା ମହାଭାରତ ରଚନା କରି 'ଆଦିକବି' ଉପାଧି ଲାଭ କରିଥିବା ପଞ୍ଚଦଶ ଶତାବ୍ଦୀର କବି ସାରଳା ଦାସ ପ୍ରକୃତରେ ଓଡ଼ିଶାର ପ୍ରଥମ କବି ଭାବେ ମର୍ଯ୍ୟାଦିତ । ଏବର ଜଗତସିଂହପୁର ଜିଲ୍ଲା ଅନ୍ତର୍ଗତ ଝଙ୍କଡ଼ର ସାରଳା ଠାକୁରାଣୀଙ୍କ ପୀଠ ନିକଟସ୍ଥ ତେନ୍ତୁଳିପଦା ଗ୍ରାମ ତାଙ୍କର ଜନ୍ମସ୍ଥାନ । ମହାଭାରତ ରଚନା କରିସାରିବା ପରେ ସାରଳା ଦାସ 'ଚଣ୍ଡୀ ପୁରାଣ' ରଚନା କରିଥିଲେ । ଏହାକୁ 'ଚଣ୍ଡୀ ଭାଗବତ' ମଧ୍ୟ କୁହାଯାଇଥାଏ । ଉପରୋକ୍ତ କବିତାଟି 'ଚଣ୍ଡୀ ପୁରାଣ'ରୁ ଉଦ୍ଧୃତ ।) - ମୁଖ୍ୟ ସଂପାଦକ

----




# ରାଜ୍ୟରେ ବନ୍ୟା ବିଭୀଷିକା

**ପ୍ରା**କୃତିକ ବିପର୍ଯ୍ୟୟ ଓଡ଼ିଶାର ଚିର ସହଚର । ଓଡ଼ିଶାର ପିଛା ଛାଡ଼େ ନାହିଁ ବଢ଼ି, ମରୁଡ଼ି ଓ ଝଡ଼ି । ଗତ କିଛି ମାସ ତଳେ ଉତ୍ତର ଓଡ଼ିଶାର ନଦୀମାନଙ୍କରେ ନାହିଁ ନଥିବା ବନ୍ୟା ଆସି ଲୋକଙ୍କର ସାଧାରଣ ଜୀବନଯାତ୍ରାକୁ ବ୍ୟାହତ କରିଥିଲା । ଏହାପରେ ଚଳିତ ମାସରେ ଭୟଙ୍କର ବନ୍ୟା ଉପକୂଳ ଓଡ଼ିଶାରେ ତା'ର ଦାଉ ସାଧିଛି । ଏପରି ବନ୍ୟା ଆସିବ ବୋଲି କେହି କେବେ ଆଶା କରି ନଥିଲେ । ନିଜର ସୀମିତ ସମ୍ବଳ ମଧ୍ୟରେ ଶ୍ରୀ ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ରାଜ୍ୟ ସରକାର ଯଥାସମ୍ଭବ ଏପରି ଅଭୁତପୂର୍ବ ଓ ଭୟାବହ ବନ୍ୟା ସମସ୍ୟାର ମୁକାବିଲା କରି ଆସୁଥିବାବେଳେ କେନ୍ଦ୍ର ସରକାରଙ୍କର ଓଡ଼ିଶାପ୍ରତି ହତାଦର ମନୋଭାବକୁ ସାଧାରଣରେ ସମାଲୋଚନା କରାଯାଇଛି । ଅଳ୍ପଦିନ ତଳେ ବିହାରରେ ମଧ୍ୟ ଭୟାବହ ବନ୍ୟା ବିପ୍ଳାତ ଘଟିଥିଲା । ଉତ୍ତର ବିହାର ଦେଇ ପ୍ରବାହିତ ହୋଇଥିବା କୋଶି ନଦୀର ବନ୍ୟା ଯୋଗୁଁ ବିହାରର ଅଧିକାଂଶ ଅଞ୍ଚଳ ବନ୍ୟାପ୍ଲାବିତ ହେଲା । ମାତ୍ର କେଉଁ କାରଣରୁ ଏ ବନ୍ୟା ହେଲା ସେ ବିଷୟରେ ବିଶେଷଜ୍ଞମାନେ ସନ୍ଦିହାନ । ନେପାଳରୁ ପ୍ରବାହିତ ହୋଇ ବିହାରକୁ ଆସିଥିବା ଏହି ନଦୀର ଏକ ବନ୍ଧ ନେପାଳରେ ଭାଙ୍ଗି ଯିବାରୁ ଏପରି ଭୟାବହ ପରିସ୍ଥିତି ହେଲା ବୋଲି କେତେକ କହୁଥିଲେ ମଧ୍ୟ କୋଶି ନଦୀ ତା'ର ଗତିପଥ ପରିବର୍ତ୍ତନ କରିବାରୁ ଏପରି ବନ୍ୟା ବିପତ୍ତି ଦେଖାଗଲା ବୋଲି ଆଉ କେହି କେହି ମତ ଦେଇଛନ୍ତି । ତେବେ ଏପରି ଭୟଙ୍କର ବନ୍ୟାର କାରଣ ଜଣାପଡ଼ି ନଥିଲେ ହେଁ ବିହାରର ବନ୍ୟାକୁ 'ଜାତୀୟ ବିପର୍ଯ୍ୟୟ' ଭାବେ ପ୍ରଧାନମନ୍ତ୍ରୀ ଡଃ ମନମୋହନ ସିଂ ଘୋଷଣା କରିଦେଲେ ଅଥଚ ଓଡ଼ିଶାର ଏପରି ଭୟାବହ ବନ୍ୟା ପାଇଁ ପ୍ରଧାନମନ୍ତ୍ରୀ ଡଃ ସିଂଙ୍କର କାଣିଚାଏ ବି ଦରଦ ଯେପରି ନାହିଁ, ସେହିପରି ମନେ ହେଲା । ସେ ନିଜେ ତ ବନ୍ୟା ସମୟରେ ଓଡ଼ିଶା ଆସିଲେ ନାହିଁ, ବରଂ ଆମ ମୁଖ୍ୟମନ୍ତ୍ରୀଙ୍କ ଅନୁରୋଧକୁ ଗୁରୁତ୍ୱ ନଦେଇ ସେ ଦୀର୍ଘ ଦିନ ପାଇଁ ବିଦେଶ ଗସ୍ତରେ ଚାଲିଗଲେ । ଓଡ଼ିଶାର ବନ୍ୟାକୁ ଜାତୀୟ ବିପର୍ଯ୍ୟୟ ଘୋଷଣା ମଧ୍ୟ କଲେ ନାହିଁ । ବରଂ ଦିଲ୍ଲୀ ବୋମା ବିସ୍ଫୋରଣ ଘଟଣାରେ ବିବଦମାନ ହୋଇ ପଡ଼ିଥିବା କେନ୍ଦ୍ର ସ୍ୱରାଷ୍ଟ୍ର ମନ୍ତ୍ରୀ ଶ୍ରୀ ଶିବରାଜ ପାଟିଲ ନିକଟରେ ଓଡ଼ିଶା ଗସ୍ତରେ ଆସି ଆକାଶମାର୍ଗରୁ ବନ୍ୟା ପରିସ୍ଥିତି ଦେଖି ଚାଲିଗଲେ ଆଉ ଯିବା ପୂର୍ବରୁ 'ଜାତୀୟ ବିପର୍ଯ୍ୟୟ' ବୋଲି ସେପରି କିଛି ନାହିଁ ବୋଲି କହି ଦେଇ ଓଡ଼ିଶା ପାଇଁ ୫୦୦ କୋଟି ଟଙ୍କାର ସହାୟତା ଘୋଷଣା କରିଗଲେ । ମାତ୍ର ସେ ସହାୟତା କିପରି ଓ କେବେ ମିଳିବ ସେ ବିଷୟରେ କିଛି ସ୍ପଷ୍ଟ କଲେ ନାହିଁ । ଜାତୀୟ ବିପର୍ଯ୍ୟୟ ଆଇନତଃ କିଛି ନାହିଁ ବୋଲି ସେ କହିବାଦ୍ୱାରା ପ୍ରଧାନମନ୍ତ୍ରୀ ଡଃ ସିଂଙ୍କ କଥାକୁ ସେ ଯେ ପରୋକ୍ଷରେ ବିରୋଧ କରିଗଲେ ଏଥିରେ ସନ୍ଦେହ ନାହିଁ । ଉଭୟଙ୍କ କଥାରେ ତାଳମେଳ ତ ରହିଲା ନାହିଁ, ଅଥଚ ଓଡ଼ିଶାବାସୀଙ୍କ ଦୁର୍ଦ୍ଦଶା ପାଇଁ କେନ୍ଦ୍ରର ଯେପରି ଦରଦ ନାହିଁ ।

ଉଲ୍ଲେଖନୀୟ ଯେ ଗତ ଦୁଇବର୍ଷ ତଳେ ଏହି ସେପ୍ଟେମ୍ବର ମାସରେ ପ୍ରଧାନମନ୍ତ୍ରୀ ଡଃ ସିଂ ମଧ୍ୟ ବନ୍ୟା ପରିସ୍ଥିତି ପାଇଁ ନୂଆଦିଲ୍ଲୀରୁ ଆସି ଓଡ଼ିଶାରେ ଓହ୍ଲାଇ ଥିଲେ । ମାତ୍ର ପାଗ ଖରାପ ଯୋଗୁଁ ବନ୍ୟାଞ୍ଚଳ ଗସ୍ତ କରି ନପାରି ସେ ଓଡ଼ିଶାର ବନ୍ୟା ବାବଦକୁ ଦୁଇଶହ କୋଟି ଟଙ୍କା ଦେବେ ବୋଲି ଘୋଷଣା କରି ନୂଆଦିଲ୍ଲୀ ଫେରି ଯାଇଥିଲେ । ମାତ୍ର ପ୍ରକୃତରେ ମିଳିଥିଲା ୨୫ କୋଟି ଟଙ୍କା । ସେ ଟଙ୍କା ମଧ୍ୟ ଓଡ଼ିଶା ସ୍ୱତନ୍ତ୍ର ଅନୁଦାନ ଆକାରରେ ଜାତୀୟ ଆକସ୍ମିକ ପାଣ୍ଠିରୁ ପାଇଥିଲା । ଅବଶିଷ୍ଟ ୧୭୫ କୋଟି ଟଙ୍କା ଯାହା ପ୍ରଧାନମନ୍ତ୍ରୀ ଘୋଷଣା କରିଥିଲେ, ତାହା ଥିଲା ଓଡ଼ିଶାର ହକ୍ ବା ପ୍ରାପ୍ୟ । ଅନ୍ୟ ରାଜ୍ୟକୁ ମିଳୁଥିବା ଅର୍ଥରାଶି ତୁଳନାରେ ଏ ଥିଲା ଅତ୍ୟନ୍ତ ଅଳ୍ପ । କେନ୍ଦ୍ରର ଅବହେଳା ଯୋଗୁଁ ଆମ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ନିଜ ରାଜ୍ୟର ପାଣ୍ଠିରୁ ୧୦୦ କୋଟି ଟଙ୍କା ବନ୍ୟା ସହାୟତା ଲାଗି ସେତେବେଳେ ଦେଇଥିଲେ । ପୂର୍ବରୁ ମଧ୍ୟ ବନ୍ୟା ପରିସ୍ଥିତି ଲାଗି ସେହି ବର୍ଷ ୨୫୦ କୋଟି ଟଙ୍କା ମୁଖ୍ୟମନ୍ତ୍ରୀ ଦେଇ ସାରିଥିଲେ । ଏଥର ବନ୍ୟା ପରିସ୍ଥିତିର ପ୍ରାଥମିକ ଆକଳନ କରି ରାଜ୍ୟ ସରକାର ୧୫୦୦ କୋଟି ଟଙ୍କା

ଦେବାକୁ କେନ୍ଦ୍ର ନିକଟରେ ଦାବି କରିଥିଲେ, କାରଣ ବନ୍ୟାରେ ୧୮ଟି ଜିଲ୍ଲା କ୍ଷତିଗ୍ରସ୍ତ । ଚଳିତ ବନ୍ୟାରେ ୪୫୯ଟି ଘାଇ ବି ହୋଇଯାଇଛି । କେନ୍ଦ୍ର ସ୍ୱରାଷ୍ଟ୍ର ମନ୍ତ୍ରୀ ଶ୍ରୀ ପାଟିଲ ୫୦୦ କୋଟି ଟଙ୍କା ମାତ୍ର ଘୋଷଣା କରି ଗଲେ ଯାହାକି କେନ୍ଦ୍ରରୁ ଯଥାଶୀଘ୍ର ମିଳି ପାରିନାହିଁ । ମିଳିଲେ ବି ତାହା ସମୁଦ୍ରକୁ ଶଙ୍ଖେ ବୋଲି ମନେ ହେବ ।

ଗତ ୨୦୦୬ରେ କେନ୍ଦ୍ର ସରକାରଙ୍କର ଏପରି ଅବହେଳା ବିଷୟରେ ସବୁସ୍ତରରେ ସମାଲୋଚନା କରାଯାଇଥିଲା । ଓଡ଼ିଶାର ସମସ୍ତ ସମ୍ବାଦପତ୍ରସମେତ ଜାତୀୟସ୍ତରର ସମ୍ବାଦପତ୍ରଗୁଡ଼ିକ ମଧ୍ୟ କେନ୍ଦ୍ରର ଏପରି ଅବହେଳା ବିରୋଧରେ ସ୍ୱର ଉତ୍ତୋଳନ କରିବାକୁ ପଶ୍ଚାତପଦ ହୋଇ ନଥିଲେ ।

ରାଜ୍ୟ ସରକାର ହୀରାକୁଦ ବନ୍ଧସମେତ ଅନ୍ୟାନ୍ୟ ନଦୀବନ୍ଧଗୁଡ଼ିକର ଉନ୍ନତି ଓ ମରାମତି ପାଇଁ ଦୀର୍ଘ ଆଠବର୍ଷ ଧରି ଗୁରୁତ୍ୱ ଦେଇ ଆସିଛନ୍ତି । ବନ୍ୟା ନିୟନ୍ତ୍ରଣ ପାଇଁ ରାଜ୍ୟ ସରକାର ବରଂ ଅଧିକ ଯତ୍ନ ନେଇଛନ୍ତି । ୧୯୯୫-୯୬ ଆର୍ଥିକ ବର୍ଷରେ ବନ୍ୟା ନିୟନ୍ତ୍ରଣ କ୍ଷେତ୍ରରେ ୯ କୋଟି ୬୯ ଲକ୍ଷ ଟଙ୍କା ଓ ୧୯୯୬-୯୭ରେ ୧୭ କୋଟି ୧୫ ଲକ୍ଷ ଟଙ୍କା, ୧୯୯୭-୯୮ରେ ୧୮ କୋଟି ୩୧ ଲକ୍ଷ ଟଙ୍କା, ୧୯୯୮-୯୯ରେ ୧୪ କୋଟି ୫୬ ଲକ୍ଷ ଟଙ୍କା ଓ ୧୯୯୯-୨୦୦୦ରେ ୧୬ କୋଟି ୮୧ ଲକ୍ଷ ଟଙ୍କା ଖର୍ଚ୍ଚ ହୋଇଥିବା ବେଳେ ଏବର ସରକାର କ୍ଷମତାସୀନ ହେବା ପରେ ୨୦୦୦-୦୧ ଆର୍ଥିକ ବର୍ଷରେ କେବଳ ବର୍ଷକ ମଧ୍ୟରେ ୩୭ କୋଟି ୬୧ ଲକ୍ଷ ଟଙ୍କା ଖର୍ଚ୍ଚ କରିଥିଲେ । ଚଳିତ ବର୍ଷ ବଜେଟରେ ରାଜ୍ୟ ସରକାର କେବଳ ବନ୍ୟା ନିୟନ୍ତ୍ରଣ ବାବଦରେ ୪୬ କୋଟି ୩୬ ଲକ୍ଷ ଟଙ୍କା ବ୍ୟୟ ବରାଦ କରିଛନ୍ତି । ଜଣାଯାଇଛି ଯେ ୧୯୯୫ରୁ ୨୦୦୦ ମସିହା ମଧ୍ୟରେ ବନ୍ୟା ନିୟନ୍ତ୍ରଣ ପାଇଁ ଉଦ୍ଦିଷ୍ଟ ଅର୍ଥ କେବଳ ରାସ୍ତା ଓ ପୋଲର ନିର୍ମାଣ ବା ମରାମତି ବାବଦରେ ବ୍ୟୟିତ ହୋଇଥିଲା । ସେଥିଯୋଗୁଁ ଏପରି ଭୟାବହ ବନ୍ୟାର ନିୟନ୍ତ୍ରଣ ସହଜରେ କରାଯାଇ ପାରିଲା ନାହିଁ ବୋଲି କୁହାଯାଉଛି । ତଥାପି ମହାବାତ୍ୟା ପରେ ପ୍ରଥମ ବର୍ଷରେ ରାଜ୍ୟ ସରକାର ୩,୫୨୯ଟି ମହାବାତ୍ୟାଜନିତ ଘାଇକୁ ଠିକ୍ ସମୟରେ ମରାମତି କରି ରେକର୍ଡ଼ ସୃଷ୍ଟି କରିପାରିଛନ୍ତି । ମହାବାତ୍ୟା ପରେ ୨୦୦୧ରେ ମଧ୍ୟ ଭୟାବହ ବନ୍ୟା ଓଡ଼ିଶାର କେତେକାଞ୍ଚଳକୁ ଗ୍ରାସ କରିଥିଲା । ସେତେବେଳେ ବନ୍ୟା ଯୋଗୁଁ ସୃଷ୍ଟି ହୋଇଥିବା ୩୫୨ଟି ଘାଇକୁ ରାଜ୍ୟ ସରକାର ମରାମତି କରି ବନ୍ୟା ଦାଉରୁ ଲୋକଙ୍କୁ ଉଦ୍ଧାର କରି ପାରିଥିଲେ । କେନ୍ଦ୍ର ସରକାର, ବିଭିନ୍ନ ରାଜନୀତିକ ଦଳ ଓ ଜନସାଧାରଣଙ୍କ ସହଯୋଗ ମିଳିଲେ ରାଜ୍ୟ ସରକାର ବନ୍ୟା ସମସ୍ୟାର ସ୍ଥାୟୀ ପ୍ରତିକାର କରିପାରନ୍ତେ ।

## ଶାରଦୀୟ ଦୁର୍ଗାପୂଜା

ଭାରତୀୟ ସଂସ୍କୃତିରେ ଶକ୍ତିପୂଜାର ପରମ୍ପରା ପ୍ରାଚୀନ ହୋଇଥିଲେ ହେଁ କେବେଠାରୁ ଏହି ପରମ୍ପରା ଆରମ୍ଭ ହୋଇଛି, ସେ ସଂପର୍କରେ ନିର୍ଦ୍ଦିଷ୍ଟ ସୂଚନା ମିଳେ ନାହିଁ । ତଥାପି ସିନ୍ଧୁ ସଭ୍ୟତା ସମୟରେ ମାତୃ ମୂର୍ତ୍ତି ପୂଜାର ସୂଚନା ମିଳିଥାଏ । ଶରତକାଳରେ ରାମଚନ୍ଦ୍ର, ରାବଣକୁ ନିପାତ କରିବାକୁ କୁଆଡ଼େ ଦେବୀ ଦୁର୍ଗାଙ୍କର ପୂଜା ଆରମ୍ଭ କରିଥିଲେ ଆଉ ସେଥିପାଇଁ ଶାରଦୀୟ ଦୁର୍ଗାପୂଜା ହୋଇଥାଏ । ବସନ୍ତ ଋତୁରେ ବାସନ୍ତିକ ଦୁର୍ଗାପୂଜା ମଧ୍ୟ ହୋଇଥାଏ । ମାତ୍ର ଶାରଦୀୟ ଦୁର୍ଗାପୂଜାର ସାର୍ବଜନୀନତା ବାସନ୍ତିକ ଦୁର୍ଗାପୂଜା ବେଳେ ପରିଲକ୍ଷିତ ହୁଏ ନାହିଁ । ଆଶ୍ୱିନ ଶୁକ୍ଳ ପ୍ରତିପଦଠାରୁ ନଅଦିନ ବ୍ୟାପି ନବରାତ୍ର ଦୁର୍ଗାପୂଜା କରାଯାଉଥିଲେ ହେଁ ମହାସପ୍ତମୀ, ମହାଷ୍ଟମୀ, ସନ୍ଧିପୂଜା, ମହାନବମୀ ପୂଜା ଓ ଏହାପରେ ଦଶହରା ପୂଜା ମହାସମାରୋହରେ ପାଳନ କରାଯାଇଥାଏ ଓଡ଼ିଶାର ଦେବୀ ପୀଠମାନଙ୍କରେ । ବିଶିଷ୍ଟ ବ୍ୟକ୍ତିଗଣ ଏହି ଅବସରରେ କଳସପୂଜା ମଧ୍ୟ କରିଥା'ନ୍ତି । କିନ୍ତୁ ମେଢ଼ସ୍ଥିତ ମୃଣ୍ମୟୀ ଦୁର୍ଗାପୂଜାର ଆୟୋଜନ ଗୋଷ୍ଠୀଗତ ଭାବେ ଜାକଜମକରେ ହୋଇଥାଏ । ନିରାଡ଼ମ୍ବର ପୂଜାଠାରୁ ଆଡ଼ମ୍ବରପୂର୍ଣ୍ଣ ମେଢ଼ର ପ୍ରତିଯୋଗିତା ଟପି ଯାଏ । ବନ୍ୟା ସମୟରେ ବିପନ୍ନ ଲୋକଙ୍କପ୍ରତି ସହାନୁଭୂତିଶୀଳ ହେବାକୁ ଓ ନିରାଡ଼ମ୍ବର ଭାବେ ପୂଜା କରିବାକୁ ଓଡ଼ିଶାର ଭାଇ ଓ ଭଉଣୀମାନଙ୍କୁ ଅନୁରୋଧ । ଦୁର୍ଗତିନାଶିନୀ ମା' ଦୁର୍ଗା ଓଡ଼ିଶାକୁ ସକଳ ଦୁର୍ଗତିରୁ ରକ୍ଷା କରନ୍ତୁ ।

ମୁକୁନ୍ଦରାମ ମହାପାତ୍ର

# ଉତ୍କଳ ପ୍ରସଙ୍ଗ

**The Utkal Prasanga**
**September-October 2008**

୬୫ ଭାଗ ୨ୟ-୩ୟ ସଂଖ୍ୟା ଭାଦ୍ର-କାର୍ତ୍ତିକ ସେପ୍ଟେମ୍ବର-ଅକ୍ଟୋବର - ୨୦୦୮



**¨÷tyÇQf : s.୫.୦୦**

---



ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ - ୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗ, ଲୋକ ସଂପର୍କ ଭବନ, ଭୁବନେଶ୍ୱର - ୭୫୧୦୦୧

*Chief Editor : Gurukalyan Mohapatra*

ଇ-ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.orissagov.nic.in

ଫୋନ : ୦୬୭୪-୨୫୩୦୨୧୧

ସେପ୍ଟେମ୍ବର-ଅକ୍ଟୋବର ୨୦୦୮

# Óÿê

# ଜାତିର ପିତାଙ୍କୁ ଶ୍ରଦ୍ଧାଞ୍ଜଳି




୦୨.୧୦.୧୮୬୯ - ୩୦.୦୧.୧୯୪୮

# ଜନ୍ମ ମାସରେ ଶ୍ରଦ୍ଧାଞ୍ଜଳି



ସର୍ଦ୍ଦାର ବଲ୍ଲଭଭାଇ ପଟେଲ

୩୧.୧୦.୧୮୭୫ - ୧୫.୧୨.୧୯୫୦



ଜୟପ୍ରକାଶ ନାରାୟଣ

୧୧.୧୦.୧୯୦୨ - ୦୮.୧୦.୧୯୭୯



ଲାଲ ବାହାଦୂର ଶାସ୍ତ୍ରୀ

୦୨.୧୦.୧୯୦୪ - ୧୧.୦୧.୧୯୬୬